# ଭାଗବତ କଥା

(ଚତୁର୍ବିଂଶ ଖଣ୍ଡ)

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦ :

ପଣ୍ଡିତ ଉପେନ୍ଦ୍ରନାଥ ହୋତା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଚତୁର୍ବିଂଶ ଖଣ୍ଡ

ପ୍ରକାଶିକା
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ
୧୯୮୬

ମୁଦ୍ରଣ
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ

ମୂଲ୍ୟ
ବନ୍ଧାଇ : ୧୮ ଟଙ୍କା
ଅବନ୍ଧା : ୧୫ ଟଙ୍କା

# BHAGABAT KATHA

(Twentyfourth Part)

Sri Prabhudatta Brahmachari

Publisher
Srimati Annapurna Mishra
Cuttack Student's Store
Cuttack-753002

First Editoin-1986

Price
Deluxe Rs. 18.00
Popular Rs. 15.00

# ସୂଚୀ

# ଭୂମିକା

## ତ୍ୟାଗ ଓ ପରୋପକାର

ଧର୍ମାର୍ଥମପି ନେହେତ ଯାତ୍ରାର୍ଥଂ ବାଧନୋ ଧନମ୍ ।
ଅନୀହାନୀହମାନସ୍ୟ ମହାହେରିବ ବୃତ୍ତି ଦା ॥
ସନ୍ତୁଷ୍ଟସ୍ୟ ନିରୀହସ୍ୟ ସ୍ୱାତ୍ମାରାମସ୍ୟ ଯତ୍ସୁଖମ୍ ।
କୁତସ୍ତତ୍ କାମଲୋଭେନ ଧାବତୋଽର୍ଥେହୟା ଦିଶଃ ॥

( ଭା.-୭ସ୍କ ୧୫ଅ ୧୫, ୧୬ ଶ୍ଳୋ )

### ଛପ୍ପୟ

ଧର୍ମ ଶିଖାଏ, ତ୍ୟାଗ ତ୍ୟାଗ ତେ ହୋଇ ବିମଳମତ ।
ଧର୍ମ ସ୍ୱର୍ଗ କୋ ହେତୁ ଧର୍ମ ତେଂ ତ୍ୟାଗ ବଡ଼େ, ଅତ ॥
କରେ କହା ଉପକାର ଜଗତ୍ କୋ ଜୋ ହୈ ଭୋଗୀ ।
ତ୍ୟାଗୀ ସଂତ ଭକ୍ତ ଓ ହୀ ବିଜ୍ଞାନୀ ଯୋଗୀ ॥
ଜୋ ନ କର ସକେ ଦେବଗୁରୁ, ଫଁସେ ୟା ଭଉ ମହଁ ଜାସୁ ମନ ।
କରେ ଲୋକ କଲ୍ୟାଣ ସେ, ଆତ୍ମରାମ ନିରୀହ ଜନ ॥

ପ୍ରସ୍ତୁତ ଚତୁର୍ବିଂଶତମ ଖଣ୍ଡରେ ମହାରାଜ ବଳିଙ୍କ ପ୍ରସଙ୍ଗ ଆଲୋଚିତ ହେବ । ଏହାର ସାରକଥା ହେଉଛି, ବିଷୟ ସଂଗ୍ରହରେ ନୁହେଁ, ତ୍ୟାଗରେ ହିଁ ମାନବକୁ ସୁଖ ମିଳେ । ଭଗବାନ୍‌ଙ୍କ ପ୍ରସନ୍ନତା ପାଇଁ ଅକାତର ଚିତ୍ତରେ ଧନସମ୍ପତ୍ତି ତ୍ୟାଗ କରିବା ଉଚିତ । ଯେଉଁମାନେ ଭାବନ୍ତି ଧନସମ୍ପଦ ବଢ଼ିଲେ ପରୋପକାର କରିହେବ, ତେଣୁ ଧନସମ୍ପଦ ବଢ଼ାଇବା ଆବଶ୍ୟକ, ସେମାନଙ୍କ ଦୃଷ୍ଟିରେ ତ୍ୟାଗ ଅପେକ୍ଷା ଧନ ଶ୍ରେଷ୍ଠ । ସେମାନେ ଉଦାହରଣ ଦେଇ କହନ୍ତି, "ସର୍ବେ ଗୁଣାଃ କାଞ୍ଚନମାଶ୍ରୟନ୍ତି ।" ଧନ ପାଖରେ ଥିଲେ ନିଜର କିଛି ଗୁଣ ନଥିଲେ ବି ସେସବୁ

ଆପେ ଆପେ ଆସିଯିବ । କିନ୍ତୁ ଧନ ନଥିଲେ ଯେତେ ଗୁଣ ଥିଲେ ବି ସବୁ ଅବ-
ଗୁଣରେ ପରିଣତ ହୋଇଯିବ । ତେଣୁ ସ୍ୱାର୍ଥ ସିଦ୍ଧି ପାଇଁ ନ ହେଲେ ବି ପରୋପକାର
ପାଇଁ ଧନ ସଂଗ୍ରହ କରିବା ବାଞ୍ଛନୀୟ । ଅସୁର ଗୁରୁ ଶୁକ୍ରାଚାର୍ଯ୍ୟ ଏ ପ୍ରକାର ମତ-
ବାଦର ପ୍ରବର୍ତ୍ତକ । ବେଦର ପ୍ରମାଣ ଉଦ୍ଧାର କରି ସେ କହିଥିଲେ—ଏ ଶରୀର
ଅସତ୍ୟରୁ ଉତ୍ପନ୍ନ ଓ ଅନିତ୍ୟ । ତେଣୁ ଶରୀର ରକ୍ଷା ପାଇଁ ମିଛ କହିଲେ ଦୋଷ ନାହିଁ ।
ଏହା ଗୁରୁବାକ୍ୟ ହେଲେବି ମହାରାଜ ବଳି ତାହା ସ୍ୱୀକାର କରି ନଥିଲେ । କାରଣ
ତ୍ୟାଗକୁ ସେ ଭୋଗ ଅପେକ୍ଷା ଅଧିକ ଗୁରୁତ୍ୱ ଦେଇଥିଲେ । ସତ୍ୟ ରକ୍ଷା ପାଇଁ,
ଭଗବାନଙ୍କ ପାଇଁ ଧନ, ଜନ, ସ୍ୱଜନ, ବନ୍ଧୁବାନ୍ଧବ, ସ୍ତ୍ରୀ ପିଲା ଏପରିକି ନିଜ
ଶରୀରକୁ ମଧ୍ୟ ତ୍ୟାଗ କରିବା ଉଚିତ ବୋଲି ସେ ଭାବୁଥିଲେ । କପଟ ବେଶରେ
ବାମନ ରୂପରେ ବିଷ୍ଣୁଙ୍କୁ ଆସିଥିବାର ଜାଣି ମଧ୍ୟ ସେ ତିନିପାଦ ଭୂମି ହସି ହସି ତାଙ୍କୁ
ଦାନ କରିଥିଲେ । ନିଜର ସର୍ବସ୍ୱ ତ୍ୟାଗ କଲେ ମଧ୍ୟ ସେ ସତ୍ୟରୁ ବିଚ୍ୟୁତ ହୋଇ
ନଥିଲେ । ସେଥିପାଇଁ ତାଙ୍କର କୀର୍ତ୍ତି ଚିରଦିନ ପାଇଁ ରହିଲା । ସେ ଅସୁର ହୋଇ
ମଧ୍ୟ ଦେବଗଣଙ୍କ ପୂଜ୍ୟ ହେଲେ ଏବଂ ଜୀବିତ ଥାଇ ବି ସଂସାର ବନ୍ଧନରୁ ମୁକ୍ତ
ହେଲେ ।

ତ୍ୟାଗର ମହତ୍ତ୍ୱ ଅବର୍ଣ୍ଣନୀୟ । ସଂଗ୍ରହ ଓ ସଞ୍ଚୟରେ ଯାହାର ମନ ସର୍ବଦା
ବ୍ୟାପୃତ ରହେ, ସେ କୃପଣ ଏବଂ ଯେ ତ୍ୟାଗପରାୟଣ, ସେ ଉଦାର, ସର୍ବଶ୍ରେଷ୍ଠ ।
ତ୍ୟାଗ ଆଡ଼କୁ ଯାହାର ଚିତ୍ତବୃତ୍ତି ଯେତିକି ଅଗ୍ରସର ହୁଏ, ସେ ସେତିକି ଭଗବାନଙ୍କର
ନିକଟବର୍ତ୍ତୀ ହୁଏ । ଯାହାର ଦୃଷ୍ଟିରେ ଧନର ମହତ୍ତ୍ୱ ଯେତିକି ବୃଦ୍ଧି ପାଏ
ସେ ଭଗବାନଙ୍କ ପାଖରୁ ସେତିକି ଦୂରେଇ ଯାଏ । ତେଣୁ ନିଜର ଚିତ୍ତବୃତ୍ତି, ସଂଗ୍ରହ
ଓ ତ୍ୟାଗ ମଧ୍ୟରୁ କେଉଁଆଡ଼କୁ ଅଧିକ ଆଗ୍ରହୀ ହେଉଛି, ସେଥିପ୍ରତି ଦୃଷ୍ଟି ଦେବାକୁ
ପଡ଼ିବ । ଏହା ଅନୁଭବ କରିବା କଥା । ଯଦି ଅନ୍ତଃକରଣ ଅଧିକ ମଳିନ ହୋଇ
ନ ଥିବ, ତେବେ ଚିତ୍ତବୃତ୍ତି, ସଂଗ୍ରହ ବା ତ୍ୟାଗ, କେଉଁଆଡ଼କୁ ଯାଉଛି ତାହା ଆମର
ଅନ୍ତରାତ୍ମା କହିଦେବ । ଅନ୍ୟ ଆଗରେ ଆମେ ଅଭିନୟ କରିପାରୁ, ନିଜର ତାର୍କିକ
ବୁଦ୍ଧି ଦ୍ୱାରା ସତ୍ୟକୁ ଅସତ୍ୟ ସିଦ୍ଧ କରିପାରୁ ଏବଂ ନିଜର ପାପ କର୍ମକୁ ଲୁଚାଇପାରୁ,
କିନ୍ତୁ ନିଜର ଅନ୍ତରାତ୍ମା ପାଖରେ ଏସବୁ ଅଭିନୟ କି ଯୁକ୍ତି ଚାଲିବ ନାହିଁ କି କୌଣସି
କଥା ଆମେ ଲୁଚାଇ ରଖିପାରିବା ନାହିଁ । ସେଥିପାଇଁ କହନ୍ତି —"ମନ ଜାଣେ ପାପ ।
ମା' ଜାଣେ ବାପ ।" ଆମର ଅନ୍ତରାତ୍ମା ଆମର ସମସ୍ତ କର୍ମର ସାକ୍ଷୀ । କାମନା
ଚରିତାର୍ଥ କରିବା ପାଇଁ ତାକୁ ଆମେ ପରୋପକାର ବା ପରମାର୍ଥର ରୂପ
ଦେଉ ।

ଥରେ ଜଣେ ସଜ୍ଜନ କହିଲେ—ଯେତେ ମଠ, ମନ୍ଦିର ଓ ଦେବୋତ୍ତର ସମ୍ପତ୍ତି ଅଛି ସେସବୁ ନିଜ ଅଧିକାରକୁ ନେଇଆସିବା ଉଚିତ । 'କିନ୍ତୁ କାହିଁକି' ବୋଲି ପଚାରିବାରୁ ସେ କହିଲେ—ଆମେ ଅନେକ ପିଲାଙ୍କୁ ରଖିବା ଏବଂ ଦେବୋତ୍ତର ସମ୍ପତ୍ତି ଥିବା ମଠରେ ସେମାନଙ୍କୁ ଶିଷ୍ୟ ଭାବେ ରଖିଦେବା । ସୁବିଧା ଅନୁସାରେ ଶିଷ୍ୟମାନେ ମହନ୍ତଙ୍କୁ ଶେଷ କରିଦେବେ ଏବଂ ସମସ୍ତ ସମ୍ପତ୍ତି ଆମର ହୋଇଯିବ ।

ମୁଁ ପଚାରିଲି—ଧନ, ସମ୍ପତ୍ତି ପାଇ ଏହି ଶିଷ୍ୟମାନେ ବିଳାସବ୍ୟସନରେ ଲିପ୍ତ ହେବେ ନାହିଁ ଏବଂ ତୁମ ପକ୍ଷ ସମର୍ଥନ କରିବେ ବୋଲି କି ବିଶ୍ୱାସ ଅଛି ? କଥା ହେଉଛି, ଧନୀ, ସମ୍ପତ୍ତିଶାଳୀ ଲୋକମାନଙ୍କ ମଧ୍ୟରୁ କ୍ୱଚିତ୍ ଭାଗ୍ୟଶାଳୀ ଥାଆନ୍ତି, ଯେଉଁମାନଙ୍କର ଅଭିମାନ ଥାଏ ନାହିଁ । ଚୋରି, ହିଂସା, ଅସତ୍ୟ, ଦମ୍ଭ, କାମ, କ୍ରୋଧ, ଅଭିମାନ, ମଦ, ଭେଦ, ଅବିଶ୍ୱାସ, ସ୍ପର୍ଦ୍ଧା, ଭୟ, ଭ୍ରମ ଓ ଚିନ୍ତା ଆଦି ଦୋଷ ଧନ ସହିତ ସମ୍ପୃକ୍ତ । ଧନ ମିଳିଗଲେ ଇଚ୍ଛା ନଥିଲେ ବି ବିଳାସ ଧୀରେ ଧୀରେ ଅନ୍ୟପାଖକୁ ଆସିଯାଏ । ଜଣେ ଧନୀଲୋକ ଟଙ୍କା ଗଣିକରି ଥଳିରେ ରଖୁଥିଲେ । ଶୋଷ ଲାଗିବାରୁ ଥଳି ରଖିଦେଇ ପାଣି ପିଇବାକୁ ଗଲେ । ଫେରିଆସି ଦେଖିଲେ ଟଙ୍କା ଥଳି ନାହିଁ । ବହୁତ ଖୋଜାଖୋଜି କଲେ । ଅନେକ ଲୋକଙ୍କୁ ସନ୍ଦେହ କଲେ । ଏହି ସମୟରେ ଧନୀଲୋକ ଜଣକ ଦେଖିଲେ ଗୋଟିଏ ମୂଷା ବାରମ୍ବାର ବାହାରକୁ ଆସୁଛି, ପୁଣି ବିଲ ଭିତରକୁ ପଶିଯାଉଛି । ଧନୀ ଲୋକ ନିଜ ଚାକରକୁ କହିଲେ ମୂଷାଗାତକୁ ଖୋଳ । ମୂଷାଗାତ ଖୋଳିବାରୁ ଟଙ୍କା ଥଳିଟି ମିଳିଗଲା । ଚାକରଟି କହିଲା—ଆଜ୍ଞା, ଆପଣ ଜଣ ଜ୍ୟୋତିଷ ବିଦ୍ୟା ଜାଣନ୍ତି କି ? ଆପଣ କିମିତି ଜାଣିଲେ ମୂଷା ବିଲରେ ଟଙ୍କା ଥଳି ଅଛି ?

ଧନୀଲୋକ କହିଲେ—ଏଥିରେ ଜ୍ୟୋତିଷ ଜାଣିବା ଦରକାର ନାହିଁ । ମୁଁ ଆଗରୁ ଲକ୍ଷ୍ୟ କରିଛି ମୂଷାଟି ଡରି ଡରି ବିଲରୁ ବାହାରେ ଓ ଚୁପ୍ ଚାପ୍ ଗୋଟିଏ ଜାଗାରେ ରହେ । ଆଜି ତାକୁ ଡ଼ିଆଁ ଡେଇଁ କରୁଥିବାର ଦେଖି ଭାବିଲି ନିଶ୍ଚୟ ଏହା ପଇସାର କରାମତି । କେହି ବିନା ପଇସାରେ ଏପରି ଚଞ୍ଚଳ ହୁଏ ନାହିଁ ।

ମାନବର ସ୍ୱାଭାବିକ ପ୍ରବୃତ୍ତିର ଯେ ବଶୀଭୂତ ହୋଇଛି ଏ କଥାଟି ତାହାର । ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ସାଧନ ଯାହାର ଲକ୍ଷ୍ୟ ଧନ ପାଇଲେ ତା'ର ଅଭିମାନ ହେବା ସ୍ୱାଭାବିକ । କିନ୍ତୁ ମୋକ୍ଷପ୍ରାପ୍ତି ଯାହାର ଲକ୍ଷ୍ୟ, ଧନ ଲାଭକଲେ ବା ଧନ ସମ୍ପତ୍ତି, ସହିତ ସମ୍ପର୍କ ରଖିଲେ, ତାର ମଧ୍ୟ ପତନ ଘଟେ । ଧନରୂପକ ପଙ୍କ ପାଖକୁ ଗଲେ ତାର ଛିଟା ନିଶ୍ଚୟ ଦେହରେ ଲାଗିବ । ତେଣୁ ଶାସ୍ତ୍ରକାରମାନେ ଜୋର

ଦେଇ କହିଛନ୍ତି—ତସ୍ମାଦନର୍ଥମର୍ଥାଖ୍ୟଂ ଶ୍ରେୟୋଽର୍ଥୀ ଦୂରତସ୍ତ୍ୟଜେତ୍ । କାରଣ ଅର୍ଥହିଁ ଅନର୍ଥର ମୂଳ । ଏଣୁ କଲ୍ୟାଣକାଂକ୍ଷୀ ସର୍ବଦା ଧନଲିପ୍ସାଠାରୁ ଦୂରେଇ ରହିବା ବାଞ୍ଛନୀୟ । ଧନ ଆସିଗଲେ ନାନାପ୍ରକାର ସଂକଳ୍ପ, ବିକଳ୍ପ ମନରେ ଉଦୟ ହୁଏ ।

ଅଳ୍ପଦିନ ତଳର କଥା । ସେତେବେଳେ ହୃଷିକେଶ ଅଞ୍ଚଳ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ହରିଦ୍ୱାର ବିଶେଷ କିଛି ନଥିଲା । ଗଙ୍ଗାକୂଳରେ ଥିବା ପର୍ଣ୍ଣକୁଡ଼ିଆରେ ସାଧୁମାନେ ରହୁଥିଲେ । ସେଠାରେ କ୍ଷେତ୍ର ନଥିଲା କି ସାଧୁମାନଙ୍କ ଭିକ୍ଷା କରିବାର କୌଣସି ସୁବିଧା ନଥିଲା । ସେମାନେ ବଣୁଆ ବେଲ ଖାଇ ଅଥବା ଅନ୍ୟ କୌଣସି ଫଳ ମୂଳ ଖାଇ ରହୁଥିଲେ । ସେତେବେଳେ ଯେତେ ଉଚ୍ଚକୋଟୀର ସାଧୁ ଥିଲେ, ଆଜିକାଲି ସହର ବଜାର ବସି, ବସ୍ତ୍ର ଓ ଭିକ୍ଷାନ୍ନାଦିର ସୁବିଧା ହୋଇ-ଯାଇଥିଲେ ମଧ୍ୟ ପୂର୍ବପରି ଜଣେ ଉଚ୍ଚକୋଟୀର ସାଧୁଙ୍କୁ ଖୋଜି ବାହାର କରିବା କଷ୍ଟକର । ସେହି ହୃଷିକେଶ ଜଙ୍ଗଲରେ ତିନି ଚାରିଜଣ ମହାତ୍ମା ରହୁଥିଲେ । ଏଣୁ ତେଣୁ ଭିକ୍ଷା କରି ଆଣି କୁଡ଼ିଆରେ ବସି ଭଜନ କୀର୍ତ୍ତନ କରୁଥିଲେ । ସନ୍ଧ୍ୟାବେଳକୁ ସମସ୍ତେ ନଦୀକୂଳରେ ଏକତ୍ରିତ ହେଉଥିଲେ ଏବଂ କିଛି ସମୟ ମିଳାମିଶା କରି ନିଜ ନିଜ କୁଡ଼ିଆକୁ ଫେରିଯାଉଥିଲେ । ବେଳେ ବେଳେ କେତେକ ଭକ୍ତ ଗୃହସ୍ଥ ସେମାନଙ୍କୁ ଦର୍ଶନ କରିବା ପାଇଁ ଆସି ପହଞ୍ଚି ଯାଉଥିଲେ । ସେ ସମୟରେ ହରିଦ୍ୱାରଠାରୁ ହୃଷିକେଶ ଯାଏ ଘୋର ଜଙ୍ଗଲ ଥିଲା । ଯିବା ଆସିବାର ସୁବିଧା ନଥିଲା । ତଥାପି ଜିଜ୍ଞାସୁ ଗୃହସ୍ଥମାନେ ବହୁ କଷ୍ଟ ବରଣ କରି ସେଠାକୁ ଯାଉଥିଲେ ।

ଥରେ ଜଣେ ଧନୀ ବ୍ୟକ୍ତି ସେହି ସାଧୁଙ୍କ ପାଖରେ ପହଞ୍ଚିଲେ । ସାଧୁଙ୍କ ତ୍ୟାଗ, ବୈରାଗ୍ୟ ଦେଖି ସେ ଖୁସି ହୋଇଗଲେ । ଶ୍ରଦ୍ଧାବଶତଃ ବିଦାୟ ନେଇ ଯିବାବେଳେ ସାଧୁଙ୍କ ବିଛଣା ତଳେ ଏକାବନ ଟଙ୍କା ରଖିଦେଇ ଚାଲିଗଲେ । ସାଧୁ ମହାତ୍ମାଙ୍କୁ ଏକଥା କହିବା ସେ ଉଚିତ ମନେକଲେ ନାହିଁ । ମହାତ୍ମା ମଧ୍ୟ ଏ ବିଷୟରେ କିଛି ଜାଣି ନଥିଲେ । ସନ୍ଧ୍ୟାବେଳେ ବିଛଣା ଝାଡ଼ିବା ବେଳକୁ ମହାତ୍ମା ଟଙ୍କା ଦେଖିବାକୁ ପାଇଲେ । ତାଙ୍କ ମନ ଟଙ୍କାପ୍ରତି ଆକୃଷ୍ଟ ହେଲା । ସେ ବିବେକୀ ଥିଲେ, ତାଙ୍କର ଅସୁବିଧା କିଛି ନଥିଲା । ତଥାପି ଖରାପ ବିଚାର କାହିଁକି ତାଙ୍କ ମନକୁ ଆସିଲା ? ଅର୍ଥର ତ ଏକ ସ୍ୱତନ୍ତ୍ର ପ୍ରଭାବ ଅଛି । ମହାତ୍ମା ଭାବିଲେ ଗୋଟିଏ ସ୍ଥାୟୀ କୁଟୀର ନିର୍ମିତ ହେବା ଆବଶ୍ୟକ । ସେ ସମୟରେ ଏକାବନ ଟଙ୍କାରେ ଏକ ପକ୍କା ଘର ହୋଇପାରୁଥିଲା । ବର୍ଷାକାଳରେ କୁଡ଼ିଆରେ ରହିବା କଷ୍ଟକର ହୋଇ

ପଡ଼ୁଥିଲା, ବନ୍ଧପତ୍ର ନଷ୍ଟ ହେଉଥିଲା । ପୁଣି ମହାତ୍ମା ଭାବିଲେ— ପକ୍କା ଘର କରିବା ବଡ଼ଜଞ୍ଜାଳିଆ କାମ । ଜିନିଷପତ୍ର ଯୋଗାଡ଼ କରିବା, ମାସ ମାସ ସେଇ କାମରେ ମନ-ଦେବା ବଡ଼ ଅସୁବିଧାଜନକ । ନାଁ ଏ ଟଙ୍କାରେ ଅନ୍ନଛତ୍ର କରିଦେବା । କିନ୍ତୁ ଏତେ ଜିନିଷ ଆଣିବ କିଏ, ଆଉ ଖାଇବ କିଏ ? ନା ମିଠେଇ କିଣି ରଖିବା, ପ୍ରତିଦିନ ସାଧୁମାନଙ୍କୁ ଦେବା ।

ସାରା ରାତି ଏଇ ଚିନ୍ତାରେ ତାଙ୍କର କଟିଗଲା । ସକାଳେ ଉଠି ନିତ୍ୟକର୍ମ ସାରି ଧ୍ୟାନରେ ବସିଲେ । ମନ ଧ୍ୟାନରେ ଲାଗିଲା ନାହିଁ । ସନ୍ଧ୍ୟାବେଳେ ସେ ସାଧୁ-ମାନଙ୍କୁ ଏସବୁ କଥା କହିଲେ । ଜଣେ ବୟସ୍କ ସାଧୁ କହିଲେ— ତୁମେ ଏବେ ଯାଇ ସେ ଟଙ୍କା ଆଣି ଗଙ୍ଗାରେ ଫିଙ୍ଗିଦିଅ । ଟଙ୍କା ଫିଙ୍ଗିଦେଲେ ତତ୍‌ଜନିତ ସମସ୍ତ ଚିନ୍ତା ଦୂର ହେବ । ଦେଖ, ଆମେ ସବୁ ତ୍ୟାଗୀ ଲୋକ । ତ୍ୟାଗ ଆମର ଧନ । ତ୍ୟାଗକୁ ଅଧିକ ମହତ୍ତ୍ୱ ଦେବା ଆମର କର୍ତ୍ତବ୍ୟ । ଧନର ସଂସର୍ଗ ବଡ଼ ବଡ଼ ତ୍ୟାଗୀଙ୍କୁ ମଧ୍ୟ ବିଚଳିତ କରିଦିଏ । ଗୋଟିଏ କାମ ଆରମ୍ଭ କଲେ ତା' ପଛକୁ ଦ୍ୱିତୀୟ, ତା'ପରେ ତୃତୀୟ କାର୍ଯ୍ୟ ଆସିଯାଏ ଏବଂ ଅଧିକ ସଂସର୍ଗ ରହିଲେ ଆକର୍ଷଣ ଅଧିକରୁ ଅଧିକ ବଢ଼ିବ । ତେଣୁ ଯେ ତ୍ୟାଗକୁ ବ୍ରତରୂପେ ଗ୍ରହଣ କରିଛି ତା'ର ଧନ ପ୍ରବୃତ୍ତି-ଠାରୁ ଦୂରେଇ ରହିବା ଉଚିତ୍ । ଏପରିକି ପରୋପକାର ପାଇଁ ମଧ୍ୟ ଧନ ସହିତ ସମ୍ପର୍କ ରଖିବା ଉଚିତ ନୁହେଁ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ କଳାକୁ ଛୁଇଁଲେ ତାହା ନିଶ୍ଚୟ ହାତରେ ଲାଗିବ ।

ଥରେ ପୂଜ୍ୟପାଦ ଓଡ଼ିଆ ବାବାଜୀ ଗୋଟିଏ ଗପ କହୁଥିଲେ । ହୃଷି-କେଶରେ ଜଣେ ବଡ଼ ସିଦ୍ଧ ମହାତ୍ମା ଥିଲେ । ସେ ବଡ଼ ପଣ୍ଡିତ ଥିଲେ । ଲଙ୍ଗଳା ହୋଇ ରହୁଥିଲେ ଏବଂ କାହାକୁ କିଛି ନ କହି ମୌନ ଅବଲମ୍ବନ କରୁଥିଲେ । ନିଜ ହାତରେ କି ସେ ଖାଉ ନଥିଲେ । କିନ୍ତୁ ଅନ୍ୟମାନେ ତାଙ୍କୁ ଖୁଆଇ ଦେଉ-ଥିଲେ । ଜ୍ଞାନରାଜ୍ୟର ଷଷ୍ଠ ସ୍ତରରେ ସେ ପହଞ୍ଚି ଯାଇଥିଲେ ବୋଲି ଲୋକେ କହୁଥିଲେ । ହଠାତ୍ ଶୁଣାଗଲା ସେ ମହାତ୍ମାଙ୍କୁ କିଏ ଚୋରେଇ ନେଇଯାଇଛି । ଅନେକ ତାଙ୍କୁ ଖୋଜାଖୋଜି କଲେ, କିନ୍ତୁ ତାଙ୍କ ପତ୍ତା ମିଳିଲା ନାହିଁ । ସମସ୍ତେ ଭାବିଲେ ସେ ଜଳରେ ସମାଧି ଲାଭ କରିଛନ୍ତି । କେତେବର୍ଷ ପରେ ଖବର ମିଳିଲା ଯେ ସେହି ସାଧୁ ବମ୍ବେର ଜଣେ ଲୋକଙ୍କ ଘରେ ଅଛନ୍ତି । ଲୋକେ ମଧ୍ୟ ଦର୍ଶନ କଲେ । ଧନିକ ଜଣକ ଧର୍ମପ୍ରାଣ ଓ ତାଙ୍କ ପତ୍ନୀ ଭକ୍ତିମତୀ ଓ ସାଧ୍ୱୀ ଥିଲେ । ସେଠାରେ ମଧ୍ୟ ମହାତ୍ମା ଲଙ୍ଗଳା ଥିଲେ ଏବଂ ମୌନ ରହୁଥିଲେ । ଧନିକଙ୍କ ପ୍ରାସାଦର ସବା ଉପରେ ଗୋଟିଏ ଘରେ ସେ ଏକୁଟିଆ ଥିଲେ । ଧନିକ ପତ୍ନୀ ତାଙ୍କୁ ଖୁବ୍ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଏବଂ ମନ, ପ୍ରାଣ ଦେଇ ତାଙ୍କ ସେବା କରୁଥିଲେ ।

ସେବା ଏପରି ଏକ ବସ୍ତୁ ଯାହାର ଅସାଧ୍ୟ କିଛି ନାହିଁ । ସଂସାରର ବଳ ବୁଦ୍ଧି, ସାହସ, ଶ୍ରମ ତଥା ଅନ୍ୟ ଉପାୟରେ ଯେଉଁ କାର୍ଯ୍ୟ ହୋଇ ନ ପାରିବ ତାହା ସେବାଦ୍ୱାରା ସହଜରେ ସାଧିତ ହେବ । ମହାତ୍ମାଙ୍କ ମନ ଧୀରେ ଧୀରେ ଆକୃଷ୍ଟ ହେଲା । ସଂଯୋଗବଶତଃ ଧନିକଙ୍କର ଏକ ପୁଅ ପିଲା ଅବସ୍ଥାରେ ମରିଯାଇଥିଲା । ତଥାପି ତାଙ୍କ ପତ୍ନୀ ସେବା ଯତ୍ନରେ ଅବହେଳା କରୁ ନଥିଲେ । ମହାତ୍ମାଙ୍କ ହୃଦୟ ଦୟାରେ ତରଳିଗଲା । ସେ ଲକ୍ଷିତ ସଙ୍କେତଦ୍ୱାରା ତାଙ୍କୁ ଧୈର୍ଯ୍ୟ ରକ୍ଷା ପାଇଁ ଉପଦେଶ ଦେଉଥିଲେ ଏବଂ ସୁଖ ଦୁଃଖର କଥା ବୁଝିବାକୁ ଲାଗିଲେ । ଧନିକଙ୍କର ବଡ଼ ଧରଣର କାରବାର ଥିଲା । ଯଥାର୍ଥଭାବେ ଦେଖାଶୁଣା ହେଉ ନ ଥିବାରୁ ଗୁମାସ୍ତାମାନେ ବହୁ ଅର୍ଥ ଆତ୍ମସାତ୍ କରୁଥିଲେ । କିନ୍ତୁ ମହାତ୍ମା ଧୀରେ ଧୀରେ ବ୍ୟବସାୟିକତାକୁ ବୁଝିବା ଆରମ୍ଭ କଲେ । ଫଳରେ ଗୁମାସ୍ତାମାନଙ୍କ ସ୍ୱାର୍ଥରେ ବାଧା ପଡ଼ିଲା । ସେମାନେ ମହାତ୍ମାଙ୍କ ସମ୍ବନ୍ଧରେ ନ କହିବା କଥା ପ୍ରଚାର କଲେ । ଶେଷରେ ମହାତ୍ମା ରେଶମ ବସ୍ତ୍ର ପିନ୍ଧିଲେ ଏବଂ ସୁନା ରୁପାର ବାସନ ବ୍ୟବହାର କଲେ । ପରେ ଧନିକ ପତ୍ନୀକୁ ସାଙ୍ଗରେ ନେଇ ବୃନ୍ଦାବନ ଗଲେ । ମହାତ୍ମାଙ୍କର ରାଜସିକ କାରବାର ଦେଖି କେତେକ ପଚାରିଲେ—ମହାରାଜ ! ଷଷ୍ଠ ସ୍ତରର ଜ୍ଞାନ ପରେ ବି କ'ଣ ଏସବୁ ଘଟେ ?

ମହାତ୍ମା କହିଲେ—ବିଷୟ ସଂସର୍ଗର ଏହାହିଁ ପରିଣତି । ଇଚ୍ଛାକୃତଭାବେ ହେଉ ବା ଅନିଚ୍ଛାକୃତ ଭାବେ ହେଉ ଆମେ ଯାହାର ସେବା ସ୍ୱୀକାର କରିବା ତା'ର ସୁଖ ଦୁଃଖରେ ଆମକୁ ନିଶ୍ଚୟ ଭାଗ ନେବାକୁ ପଡ଼ିବ । ତେଣୁ ତ୍ୟାଗୀମାନେ ଜଣକର ଅନ୍ନ ଖାଇବା ଉଚିତ ନୁହେଁ । ମଧୁମାଛି ପରି ସେମାନେ ଜୀବିକା ଅର୍ଜନ କରିବା ଉଚିତ । ମୋର ନିଶ୍ଚୟ କୌଣସି ପ୍ରାରବ୍ଧ ଥିଲା ଯାହାଦ୍ୱାରା ମୁଁ ପୁଣି ପ୍ରବୃତ୍ତିର ବଶବର୍ତ୍ତୀ ହେଲି ।

ଏ ଘଟଣାକୁ ପ୍ରାରବ୍ଧ କୁହ, ବା ପ୍ରମୋଦ କୁହ, ଏହା ଭାଗ୍ୟର ଖେଳ । କାରଣ, କେହି କେବେ ନିଜର ଅପକୀର୍ତ୍ତି, ଅପଯଶ, ଅଧୋଗତି ବା ଅବନତି ଇଚ୍ଛା କରେ ନାହିଁ । ଧନୀ ହେବାପାଇଁ କିଏ ଇଚ୍ଛା କରେ ନାହିଁ ? କିନ୍ତୁ ପରେ କୌଣସି ବିଷୟରେ ଆସକ୍ତି ଆସିଗଲେ ବାସନା ଅପରିହାର୍ଯ୍ୟ ହୋଇପଡ଼େ । ସେହି ବାସନାର ପରିପୂର୍ତ୍ତି ପାଇଁ ଇଚ୍ଛା ନଥିଲେ ମଧ୍ୟ ନିଜର ପ୍ରତିକୂଳ କାର୍ଯ୍ୟ କରିବାକୁ ପଡ଼େ । ସେଥିପାଇଁ ଶାସ୍ତ୍ରକାରମାନେ ମର୍ମସ୍ପର୍ଶୀ ଭାଷାରେ କହିଛନ୍ତି —

ନିଃସଙ୍ଗତା ମୁକ୍ତିପଦଂ ଯତୀନାଂ ସଙ୍ଗାଦଶେଷାଃ ପ୍ରଭବନ୍ତି ଦୋଷାଃ ।
ଆରୂଢ଼ଯୋଗୋଽପି ନିପାତ୍ୟତେଽଧଃ ସଂଗେନ ଯୋଗୀ କିମୁତାଳ୍ପବୁଦ୍ଧିଃ ॥

ମୁକ୍ତ ଅଭିଳାଷୀ ଯତିଗଣ ଆସକ୍ତ ରହିତ ହେବା ବାଞ୍ଛନୀୟ । ସଙ୍ଗ ଦୋଷରେ ଯୋଗାରୂଢ଼ ମହାତ୍ମାମାନଙ୍କର ମଧ୍ୟ ପତନ ଘଟେ । ତେଣୁ ଯେଉଁମାନେ ବିଷୟର କୀଟ, ବାସନାର ଦାସ, ସେମାନଙ୍କର କି ଯେ ଅବସ୍ଥା ଘଟେ, ତାହା କହିବାର ଆବଶ୍ୟକତା ନାହିଁ । ଲୋକେ କହନ୍ତି—ଆପଣଙ୍କର କ'ଣ ଅଛି ? ଆପଣ ତ ଯାହା କରୁଛନ୍ତି ସବୁ ପରୋପକାର ପାଇଁ, ଲୋକକଲ୍ୟାଣ ସାଧନ ପାଇଁ କରୁଛନ୍ତି । ଦେବା ନେବା ସହିତ ଆପଣଙ୍କର ସମ୍ପର୍କ କଣ ?

ଦେବା ନେବା କାର୍ଯ୍ୟ ଟଙ୍କା ସହିତ ସଂପୃକ୍ତ । ଲୋକେ ପଦ, ପ୍ରତିଷ୍ଠା, ଯଶ, କୀର୍ତ୍ତି, ନାମ, ପ୍ରସିଦ୍ଧି ପାଇଁ କ'ଣ କ'ଣ ନ କରୁଛନ୍ତି ? ଆମପରି ଲୋକ, ଯେ ନିଜର ମଧ୍ୟ ଉପକାର କରିନାହିଁ, ସେ ପରୋପକାର କଣ କରିବ ? ଆମେ ଆତ୍ମ-ଗୋପନ କରିବା ପାଇଁ ପରୋପକାର ପରଦାର ଅନ୍ତରାଳରେ ଦିନରାତି କେବଳ ସଂଗ୍ରହ ଓ ପ୍ରତିଷ୍ଠା ଚିନ୍ତାରେ ମଗ୍ନ ରହିଛୁ । ଆମେ କ'ଣ ପରୋପକାର କରିପାରିବା ଏହି ଚିନ୍ତା ମଧ୍ୟରେ ? ନିଷ୍କାମଭାବେ ପରୋପକାର କଲେ ତାହା ଲୋକଦୃଷ୍ଟିରେ ନିକୃଷ୍ଟ କାର୍ଯ୍ୟରୂପେ ପରିଗଣିତ ହୁଏ । ତେଣୁ ସର୍ବୋତ୍କୃଷ୍ଟ ସାଧନା ହେଉଛି ତ୍ୟାଗ । ତ୍ୟାଗରେ ହିଁ ଅମୃତତ୍ୱ ଲାଭ ହୁଏ ।

ଥରେ ଜଣେ ଶିଷ୍ୟ ଜନୈକ ସଦ୍‌ଗୁରୁଙ୍କ ପାଖକୁ ଯାଇ ବିନୀତ ଭାବେ କହିଲା—ପ୍ରଭୋ ! ମୋତେ ମୋକ୍ଷମାର୍ଗର ଉପଦେଶ ଦିଅନ୍ତୁ ।

ଗୁରୁ କହିଲେ—ତୁ ମୋତେ ଭୁଲିଯା । କିନ୍ତୁ ଶିଷ୍ୟ କହିଲା—ଗୁରୁଦେବ ! ଏହା ତ ମୁଁ କରିପାରିବି ନାହିଁ । ତାପରେ ଗୁରୁ କହିଲେ—ଠିକ୍ ଅଛି । ତୁ ନିଜେ ନିଜକୁ ଭୁଲିଯା । ଶିଷ୍ୟ କହିଲା—ପ୍ରଭୋ ! ଏହା ବି ମୋ ଶକ୍ତିର ବାହାରେ ।

ଗୁରୁ କହିଲେ—ଠିକ୍ ଅଛି । ତୁ ଯଦି ଏହି କାମ ଦୁଇଟି କରି ନ ପାରିବୁ ତେବେ ପରୋପକାର କରିବୁ ଯା । କିନ୍ତୁ ମନେରଖ, କେବେହେଲେ ମନରେ ଭାବିବୁ ନାହିଁ ଯେ, ମୁଁ ଅମୁକ ଲୋକର ଉପକାର କରିଛି । ମୋ' ଦ୍ୱାରା ଅମୁକର ଉପକାର ହେଲା । ସବୁବେଳେ ଭାବିବୁ ଯେ, ଆତ୍ମଶୁଦ୍ଧି ପାଇଁ ମୁଁ ଏ ସାଧନା କରୁଛି ।

ବାସ୍ତବତଃ ପରୋପକାର ଦ୍ୱାରାହିଁ ସଂସାର ଦୁଃଖରୁ ମୁକ୍ତି ମିଳେ । କିନ୍ତୁ ମନରେ ଯଦି ଏହି ଭାବନା ଆସିଲା ଯେ, ମୁଁ ଏଠାରୁ ଚାଲିଗଲେ ଆଉ କେହି ଏ କାମ କରିପାରିବେ ନାହିଁ । ମୋଦ୍ୱାରା ଅନେକଙ୍କର ଉପକାର ହେଉଛି । ମୁଁ କେତେକ ଲୋକଙ୍କୁ ପ୍ରତିପାଳନ କରୁଛି, ତେବେ ସବୁକିଛି ନିଷ୍ଫଳ ହୋଇଗଲା । ଏହି ଭାବନାଦ୍ୱାରା ସଂସାର ବନ୍ଧନ କଟିବା ପରିବର୍ତ୍ତେ ଦୃଢ଼ ହୋଇଯିବ । ଏହା

ଉପରେ ଅନେକ ପଚାରନ୍ତି—ଆପଣ ଜାଣିଶୁଣି ବହି ଛପାଇବାରେ କାହିଁକି ସମସ୍ତ କଷ୍ଟ ଉଠାଉଛନ୍ତି । ଏସବୁ ଛାଡ଼ି କେବଳ ହରିନାମ ଭଜନରେ ସମସ୍ତ କଷ୍ଟ ଉଠାଉ ନାହାନ୍ତି କାହିଁକି ?

ଏକ ଉଦାହରଣ ମାଧ୍ୟମରେ ଏହାର ଉତ୍ତର ଦିଆଯାଇପାରେ । ଦେହେରାଦୁନ୍ ଜିଲାରେ ଭୋଜପୁର ନାମରେ ଏକ ଗାଁ ଅଛି । ହୃଷିକେଶରୁ ଓ ରାୟପୁରରୁ ସେଠାକୁ ଯିବା ପାଇଁ ବାଟ ଅଛି । ଗାଁଟି ଏକ ବଡ଼ କେନାଲ କୂଳରେ । ବେଶ୍ ସ୍ୱାସ୍ଥ୍ୟକର ସ୍ଥାନ । ଜଣେ ଗୃହସ୍ଥ ସେଠାରେ ଏକ ଘର ତିଆରି କରୁଥିଲେ । ସେହି ସମୟରେ ଜଣେ ମହାତ୍ମା ଆସି ସେଠାରେ ପହଞ୍ଚିଲେ ଆଉ କହିଲେ ମୁଁ ତୁମର କାମରେ ଯୋଗଦେବି, ଏଇଠି କାମ କରିବି । ଗୃହସ୍ଥ ଯେତେ ମନାକଲେ ମଧ୍ୟ ସେ ମାନିଲେ ନାହିଁ । ଶେଷରେ ରାଜମିସ୍ତ୍ରୀ କହିଲେ—ଠିକ୍ ଅଛି, ଆପଣ ଖାଲି ମାଟି ଯୋଗାଇଦିଅନ୍ତୁ । ମହାତ୍ମା ସାରାଦିନ ସେଇକାମ କରି ସନ୍ଧ୍ୟାବେଳକୁ ଥକି ପଡ଼ିଲେ । ଯାହା ମଜୁରି ମିଳିଲା ସେଥିରେ ସୁଜି, ଘିଅ, ଚିନି ଆଣି ହାଲୁଆ କଲେ । ହାଲୁଆ ପ୍ରସ୍ତୁତ ହୋଇଯିବା ପରେ ସେଥିରେ ମାଟି ମିଶାଇଦେଲେ ଏବଂ ଖାଇଲେ । ମାଟିମିଶା ସୁଜି କ'ଣ ଖାଇହେବ ? ଦୁଇ ଚାରିଥର ପାଟିକୁ ନେଇ ପୁଣି କାଢ଼ିପକାଇଲେ । ଶେଷରେ ଦୁଇ ଗାଲରେ ଚାପୁଡ଼ା ମାରି କହିଲେ—ଖା ପାପୀ ଖା । ନେ, ଏ ହାଲୁଆ ଖା ।

ଏହି ଦୃଶ୍ୟ ଦେଖିବାପାଇଁ ସେଠାରେ ଅନେକ ଲୋକ ଜମିଗଲେ । ମହାତ୍ମାଙ୍କର ଏପରି ପାଗଳାମି ଦେଖି ଲୋକେ ପଚାରିଲେ—ମହାରାଜ ! କଥା କଣ ? ଆପଣ ହାଲୁଆରେ ମାଟି ମିଶାଇ ଜବରଦସ୍ତ ପାଟିରେ ପୂରାଉଛନ୍ତି କାହିଁକି ?

ମହାତ୍ମା କହିଲେ—ଏକ ନିର୍ଜନ କୁଡ଼ିଆରେ ମୁଁ ଭଜନ କରୁଥିଲି । ଗାଁରୁ ଭିକ୍ଷା କରି ଯାହା ପାଉଥିଲି ସେଥିରେ ଚଳିଯାଉଥିଲି । ହରି ଭଜନରେ ଲାଗିଥିଲି । ଦିନେ ମନହେଲା ହାଲୁଆ ଖାଇବାକୁ । ଏ କାମନାକୁ ମୁଁ ପାରୁପର୍ଯ୍ୟନ୍ତ ଚପେଇ ରଖିବା ପାଇଁ ଚେଷ୍ଟା କଲି, କିନ୍ତୁ ସଫଳ ହୋଇପାରିଲି ନାହିଁ । ମନକୁ ବହୁତ ବୁଝାଇଲି, କିନ୍ତୁ ମନ ବୁଝିଲା ନାହିଁ । ତେଣୁ ନିରୁପାୟ ହୋଇ କହିଲି ହଉଟିରେ ମନ, ଚାଲ । ହାଲୁଆ ଖାଇବା ପାଇଁ ବହୁତ ପରିଶ୍ରମ କରିବାକୁ ପଡ଼ିବ । ଆଜି ସାରାଦିନ ପରିଶ୍ରମ କଲି । ମନକୁ କହିଲି କହ, ଆଉଦିନେ ହାଲୁଆ ଖାଇବାକୁ କହିବୁ କି ? ପରିଶ୍ରମଲବ୍ଧ ଧନରେ ହାଲୁଆ କଲି । ମାଟି କାଦୁଅ ଯୋଗାଇ ମୋତେ ହାଲୁଆ ମିଳିଲା । ତେଣୁ ହାଲୁଆରେ କାଦୁଅ ମିଶାଇ ଦେଲି । ଏବେ ସେହି ହାଲୁଆ ଖୁଆଇବାରୁ ସେ

ଖାଉନାହଁ । ନାକ ଟେକୁଛ । ତେଣୁ ଯେ ପର୍ଯ୍ୟନ୍ତ ମନ ହାଲୁଆ ଆଉ ଖାଇବ ନାହିଁ ବୋଲି ନ କହୁଛି ସେ ପର୍ଯ୍ୟନ୍ତ ଏହିପରି ପାଟିରେ ପୂରାଇବ । ମନବୋଧ ହୋଇଯାଉ, ଏକ ଛୋଟ ବାସନାକୁ ପୂରଣ କରିବା କେତେଦୂର କଷ୍ଟକର ତାହା ସେ ବୁଝୁ ।

ମହାତ୍ମାଙ୍କ କଥା ଶୁଣି ଲୋକେ କହିଲେ —ଏହାତ ସ୍ୱାଦୁର ପ୍ରତିକୂଳ ?

ମହାତ୍ମା ପୁଣି କହିଲେ—ମନରେ ଅନୁକୂଳ ଖାଦ୍ୟ ଯୋଗାଇଲେ ବାସନା ବୃଦ୍ଧି ପାଇବ ସିନା କମିବ ନାହିଁ । ତେଣୁ ପ୍ରତିକୂଳ ବ୍ୟବସ୍ଥାଦ୍ୱାରା ମନ ଜାଣିପାରିବ ବାସନା ପୂରଣ କରିବା କେତେ କଷ୍ଟକର, ପ୍ରତିକୂଳ ସ୍ୱାଦୁଯୁକ୍ତ ବସ୍ତୁ ଖାଇବା କେତେ ଦୁଃଖଦାୟକ ।

ଏ କଥା ଠିକ୍ । ମୋ ମନର ଇଚ୍ଛା ବହି ଲେଖିବା । ବହି ଲେଖିବା ମୋ' ପ୍ରକୃତିର ଅନୁକୂଳ ମାର୍ଗ । ଏଥିରେ ମୋତେ ଟିକିଏ ହେଲେ ପରିଶ୍ରମ କରିବାକୁ ପଡ଼ୁନାହିଁ । କିନ୍ତୁ ବହି ପ୍ରକାଶ କରିବା ଓ ପ୍ରଚାର କରିବା ମୋ ପ୍ରକୃତିର ପ୍ରତିକୂଳ । ତେଣୁ ଜବରଦସ୍ତ ମନକୁ ସେହି କାମରେ ଲଗାଇଛି । ଏଥିରେ କି କଷ୍ଟ, କେତେ ଅସୁବିଧା ତାହା ମନ ବୁଝିଯାଉ । ଏତେ କଥା ହୋଇସାରିଥିଲେ ମଧ୍ୟ ମନ ବୁଝୁନି । ବାରମ୍ବାର ସେ କହୁଛି ୧୦ ' ପୂର୍ଣ୍ଣକର । ହଉ କର, ନିଜ କରଣିର ଫଳ ଭୋଗକର । ଯାହା ବୁଣିବ ତାହା ପାଇବ । ନିଆଁ ଖାଇଲେ ଅଙ୍ଗାର ହଗିବ । ତେଣୁ ଇଚ୍ଛା ନ ଥିଲେବି, ପ୍ରକୃତିର ପ୍ରତିକୂଳ କାର୍ଯ୍ୟ ହେଲେ ବି ମୋତେ ମୁଣ୍ଡରେ ମାଟି ବୋଝ ବହି ଗ୍ଭଲିବାକୁ ପଡ଼ୁଛି । ପ୍ରବୃତ୍ତି ବଢ଼ିବା ସଙ୍ଗେ ସଙ୍ଗେ ଅସୁବିଧା ମଧ୍ୟ ବଢ଼ୁଛି ।

ମଣିଷ ଭାବେ, ମୋତେ ଅମୁକ ଜିନିଷ ମିଳିଗଲେ ମୋର ଅସୁବିଧା ଦୂର ହୁଅନ୍ତା । କିନ୍ତୁ ସେଇ ବସ୍ତୁଟି ମିଳିଗଲା ପରେ ଦ୍ୱିତୀୟ ଜିନିଷ ପାଇଁ ଆକାଂକ୍ଷା ଜାଗ୍ରତ ହୁଏ । ଆକାଂକ୍ଷାର କୌଣସି ସୀମା ନାହିଁ । ଗୋଟିଏ ଅସୁବିଧା ଦୂର ହେବା ମାତ୍ରେ ପୁଣି ନୂଆ ଅସୁବିଧା ଆସି ପହଞ୍ଚିଯାଏ । ଏପର୍ଯ୍ୟନ୍ତ ପ୍ରେସ୍ ନ ଥିବାରୁ ଅସୁବିଧା ହେଉଥିଲା । ପ୍ରେସ ଆସିଯିବା ପରେ ଅମୁକ ଜିନିଷ ଆଣ, ସମୁକ ଜିନିଷ ଦରକାର । କାଗଜ ନାହିଁ, କାଳି ନାହିଁ, ଲୋକ ନାହିଁ, ଏମିତି ନାହିଁ ସବୁ ଗୋଟିକ ପରେ ଗୋଟିଏ ଆସିବାକୁ ଲାଗିଲା । ଭଗବାନ୍ କେତେଦିନ ଏଥିରେ ବାନ୍ଧି ରଖିବେ ସେ କଥା ତାଙ୍କୁହିଁ ଜଣା । କିନ୍ତୁ ପ୍ରବୃତ୍ତିଠାରୁ ନିବୃତ୍ତି ଶ୍ରେଷ୍ଠ ଓ ପରୋପକାରଠାରୁ ତ୍ୟାଗ-ମୟ ଜୀବନ ଶ୍ରେୟସ୍କର । ଏହି ଧାରଣା ଯେ ପର୍ଯ୍ୟନ୍ତ ଅଛି ସେ ପର୍ଯ୍ୟନ୍ତ କିଛିନା କିଛି ଆଶା ରହିଛି । ଯେଉଁଦିନ ଏ ଧାରଣା ମୋର ତୁଟିଯିବ ସେହିଦିନଠାରୁ ପୁଣି ଚୌରାଶି ଚକ୍ର ମୋ ପାଇଁ ଥୁଆ ହୋଇରହିଛି ।

ପାଠକମାନଙ୍କୁ ମୋର ବିନୀତ ନିବେଦନ, ଭଗବାନ୍‌ଙ୍କ ନାମ ସ୍ମରଣରେ ଜୀବନ ମୋର କଟିଯାଉ, ତାହାହିଁ ସେମାନେ କାମନା କରନ୍ତୁ । କିନ୍ତୁ ଆଜିକାଲି ତାହା ହେଉ ନାହିଁ, ଏହାହିଁ ଦୁଃଖର କଥା । ଦେଖାଯାଉ, ପ୍ରଭୁ କେତେଦିନ ଯାଏ ଏଇ ଅବସ୍ଥାରେ ରଖୁଛନ୍ତି । କେବେ ପ୍ରଭୁଙ୍କ ଦୟାମାନ ପ୍ରତୀକ୍ଷାରେ ସମସ୍ତ ଚିନ୍ତାରୁ ମୁକ୍ତ ହେବ, ଆଉ କେବେ ଜୀବନକୁ ପ୍ରାରବ୍‌ଧ ଉପରେ ଛାଡ଼ିଦେଇ ମନ, ପ୍ରାଣ, ଓ ହୃଦୟରେ ନିରନ୍ତର ଭଗବତ୍ ନାମ କୀର୍ତ୍ତନରେ ସମସ୍ତ କଟାଇବି ତାହା ତାଙ୍କୁ ହିଁ ଜଣା । ହେ ପ୍ରଭୋ ! କେବେ ଆପଣଙ୍କ ପାଦପଦ୍ମ ଲାଭ କରିବି ?

ତତ୍ତେଽନୁକମ୍ପାଂ ସୁସମୀକ୍ଷ୍ୟମାଣୋ
ଭୁଞ୍ଜାନ ଏବାତ୍ମକୃତଂ ବିପାକମ୍ ।
ହୃଦ୍‌ବାଗ୍ ବପୁର୍ଭି ର୍ବିଦଧନ୍ନମସ୍ତେ
ଜୀବେତ୍ ଯୋ ମୁକ୍ତିପଦେ ସ ଦାୟଭାକ୍ ।।

## ଛପ୍‌ପୟ

କବ ଅଚ୍ୟୁତ ଅଖିଳେଶ ଦାସ କହିକେଁ ଅପନାଓଗେ ।
କବ ନିତ ନିରଖିତ ରହେଁ ନନ୍ଦନନ୍ଦନ ଢ଼ୁଣ୍ଢ ଜାଓଗେ ।।
କବ ମନ ବାନୀ କରମ ସଫଲ ତୌ ହରି କୁଁ ପୋସେଁ ।
କବ ସବ ତଜି ପରପଞ୍ଚ ଭାଗ୍ୟ କେ ରହେଁ ଭରୋସେଁ ।।
ନିରଖେ ହରି କୋ ହାଥ କବ, ସବ କର୍ମନି ମହଁ ଭ୍ରମ ସତତ ।
କବ ହରି ସୁମରନ ଭଜନ ମହଁ, ରହେଁ ନିରନ୍ତର ନିତ ନିରତ ।।

ସଙ୍କୀର୍ତ୍ତନ ଭବନ
ଝୁସି ( ପ୍ରୟାଗ )
ବୈଶାଖ ଶୁ-୪-୨୦୦୬

ବିନୀତ
ପ୍ରଭୁଦତ୍ତ



# ବାମନଙ୍କ ଦୁଇପାଦ

କ୍ଷିତିଂ ପଦୈକେନ ବଳେର୍ବିଚକ୍ରମେ
ନଭଃ ଶରୀରେଣ ଦିଶଶ୍ଚ ବାହୁଭିଃ ।
ପଦଂ ଦ୍ୱିତୀୟଂ କ୍ରମତସ୍ତ୍ରିବିଷ୍ଟପଂ
ନ ବୈ ତୃତୀୟାୟ ତଦୀୟ ମ ଣ୍ୱପି ॥

( ଭା:-୮-୨୦-୩୩, ୩୪ )

## ଛପ୍‌ପୟ

ଫୁଲୀ ଜନୁ କନ୍ନେର ଅଷ୍ଟ କର ଶସ୍ତ୍ର ବିରାଜୈଂ ।
ଅଙ୍ଗଦ କୁଣ୍ଡଳ ମୁକୁଟ ମେଖଳା ଅଙ୍ଗନ ଭ୍ରାଜୈ ॥
ଭ୍ରମର ନିକର ଗୁଞ୍ଜାୟମାନ ବନମାଳା ସୁନ୍ଦର ।
ମଧୁ ଲୋଲୁପ ମଧୁ ପିୟେଁ ଗାନ କର ମାଦକ ମଧୁକର ॥
ଲମ୍ବ ତଡ଼ଙ୍ଗେ ବିଶ୍ୱମୟ, ବନେ ବିଷ୍ଣୁ ବାମନ ଛଲୀ ।
ଜବ ନାପେ ପଗ ତୈଁ ମହୀ, ସୋ ଶୋଭା ଅତଇ ଭଲୀ ॥

ପ୍ରଥମେ ଯେଉଁ ବେଶ ଯେ ଧାରଣ କରେ, କାର୍ଯ୍ୟସିଦ୍ଧି ହେବାଯାଏ ତାହା ସେ ରକ୍ଷାକରେ । କାର୍ଯ୍ୟ ସିଦ୍ଧ ହେବାପରେ ସେ ତା'ର ଯଥାର୍ଥ ରୂପ ପ୍ରକାଶ କରେ । ମଣିଷର ଆକୃତିରୁ ତା' ପ୍ରକୃତିର ପରିଚୟ ମିଳେ । ପ୍ରକୃତି ଓ ଭାବ ଅନୁସାରେ ମଣିଷର ଆକୃତି ଗଠିତ ହୁଏ । ତେଣୁ କପଟ ବେଶ ଅଧିକ ସମୟ ଲୁଚି ରହେ ନାହିଁ, ଯଥାସମୟରେ ତାହା ଜଣାପଡ଼ିଯାଏ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ବିଶ୍ୱରୂପ ଧାରଣ କରିବା ପରେ ଭଗବାନ୍ ବାମନଙ୍କ ହାତରେ ଯେଉଁ ଦଣ୍ଡ, କମଣ୍ଡଳୁ ଆଦି ବ୍ରହ୍ମଚର୍ଯ୍ୟ ଯୋଗ୍ୟ ବସ୍ତୁ ଥିଲା ସେଗୁଡ଼ିକ ବୃଦ୍ଧିଲାଭ ନ କରି କେବଳ ତାଙ୍କର ସ୍ୱରୂପ ବୃଦ୍ଧି ପାଇଥିଲା ।

ଆକାର ବୃଦ୍ଧି ସହିତ ତାଙ୍କର ଅଙ୍ଗ, ପ୍ରତ୍ୟଙ୍ଗ, ଉପାଙ୍ଗ ଆଦି ବଢ଼ିଥିଲା । ବାଙ୍ଗିଆ ବାମନରୁ ସେ ବିରାଟ ହୋଇଗଲେ । ଶ୍ରେଷ୍ଠରୁ ବଡ଼, ବ୍ରହ୍ମଗୃହିରୁ ସେ ବିଶ୍ୱଗୃହି ପାଲଟିଗଲେ ।

ଭଗବାନ୍ କପଟ ବେଶ ତ୍ୟାଗକରି ଯେତେବେଳେ ନିଜର ପ୍ରକୃତ ରୂପ ଗ୍ରହଣ କଲେ, ସେତେବେଳେ ତାଙ୍କର ଆୟୁଧ ଓ ପାର୍ଷଦଗଣ ଉପସ୍ଥିତ ହୋଇ-ଗଲେ । ସର୍ବପ୍ରଥମେ ତାଙ୍କର ପରମପ୍ରିୟ ଅସ୍ତ୍ର ସୁଦର୍ଶନ ଚକ୍ର ଆସିଲା । ତା'ର ତେଜ ଥିଲା ଅସହ୍ୟ । ତା'ର ଜ୍ୟୋତିରେ ଦଶଦିଗ ଆଲୋକିତ ହୋଇଗଲା । ଚକ୍ର ଯଥା-ସ୍ଥାନରେ ଭଗବାନ୍‌ଙ୍କ ହାତରେ ଶୋଭା ପାଇଲା । ଭଗବାନ୍ ଚତୁର୍ଭୁଜ ନ ହୋଇ ଅଷ୍ଟଭୁଜ ହେଲେ । କ୍ରମଶଃ ଆୟୁଧଗଣ ଆସି ହାତରେ ଶୋଭିତ ହେଲେ । ଚକ୍ର ପରେ ଶାର୍ଙ୍ଗ ଧନୁ ଆସିଲା ଯାହା ଜଳଧର ମେଘ ସଦୃଶ ଦେଖାଯାଉଥିଲା । ଏହାପରେ ଅସୁରମାନଙ୍କ ମନରେ ଭୟ ସୃଷ୍ଟି କରୁଥିବା ପାଞ୍ଚଜନ୍ୟ ଶଙ୍ଖ ଆସିଲା । ପ୍ରବଳ ବେଗରେ ଆସିଲା କୌମୋଦକୀ ଗଦା । ତା'ପରେ ଆସିଲା ଚନ୍ଦ୍ରମା ତୁଲ୍ୟ ଚର୍ମ ନିର୍ମିତ ଢାଲ ଏବଂ ବିଦ୍ୟାଧର ନାମକ ଅସୁରର ଉଦର ଭେଦ କରିଥିବା ଖଡ୍‌ଗ । ତା' ସହିତ ତୂଣୀର ଓ ଲୀଳା ପଦ୍ମ ମଧ୍ୟ ଆସିଲା । ଏହିପରି ଶଙ୍ଖ, ଚକ୍ର, ଗଦା, ପଦ୍ମ, ଢାଲ, ଖଡ୍‌ଗ, ଧନୁ ଓ ବାଣ ଏହି ଅଷ୍ଟ ଆୟୁଧ ଭଗବାନଙ୍କ ଶ୍ରୀହସ୍ତରେ ଶୋଭିତ ହେଲା ।

ଭଗବାନ୍‌ଙ୍କ ପ୍ରିୟ ପାର୍ଷଦଗଣ ତଥା ଅଷ୍ଟଲୋକପାଳ ଯେତେବେଳେ ଦେଖିଲେ ଭଗବାନ୍ ନିଜରୂପ ଧାରଣ ପୂର୍ବକ ଅହିଂସରେ ଶୋଭିତ ହୋଇଗଲେ, ସେମାନେ ଆସି ଉପସ୍ଥିତ ହୋଇଗଲେ । ସେତେବେଳେ ପ୍ରଭୁ ଅପୂର୍ବ ଶୋଭାରେ ଅଦ୍ଭୁତ ଦେଖାଯାଉଥାନ୍ତି । ପାର୍ଷଦବର୍ଗ ଓ ଲୋକପାଳଗଣ ଚାରିପାଖରେ ଘେରି ରହିଥାନ୍ତି । ପ୍ରଭୁଙ୍କ ମସ୍ତକ ଶୋଭିତ ମୁକୁଟର ଆଭା ଚାରିଆଡ଼େ ଖେଳି ଯାଉଥାଏ । ଅଷ୍ଟବାହୁରେ ସୁବର୍ଣ୍ଣ ଅଙ୍ଗଦ, କର୍ଣ୍ଣରେ ଶୋଭିତ ମକରାକୃତି କୁଣ୍ଡଳ, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଉପରେ ଥିବା କୌସ୍ତୁଭମଣି ପ୍ରଭୃତି ଭଗବାନଙ୍କ ଦିବ୍ୟଶୋଭାକୁ ଦ୍ୱିଗୁଣିତ କରୁଥାଏ । ପ୍ରଭୁଙ୍କ କଟୀଦେଶରେ ମନୋହର ମେଖଳା ଶୋଭା ପାଉଥିଲା । ନଟବର ତନୁରେ ପରିହିତ ପୀତପଟ ବିଜୁଳିର ଚମକକୁ ତିରସ୍କୃତ କରୁଥିଲା । ବକ୍ଷସ୍ଥଳରେ ପଞ୍ଚପଲ୍ଲବ ଓ ପୁଷ୍ପରେ ଗ୍ରଥିତ ବନମାଳା ଇନ୍ଦ୍ରଧନୁର ଗର୍ବକୁ ଖର୍ବ କରୁଥିଲା । ବନମାଳା ଗ୍ରଥିତ ପୁଷ୍ପର ମଧୁପାନ ପାଇଁ ମତ୍ତ ଭ୍ରମରଗଣ କଳ-ଗୁଞ୍ଜନ କରି ଘୂରି ବୁଲୁଥିଲେ । ମନେହେଉଥିଲା, ଭ୍ରମର ଗୁଞ୍ଜନ ମାଧ୍ୟମରେ ବନମାଳା ଦୋହଲି ଦୋହଲି ଯେପରି ସଙ୍ଗୀତ ଗାନ କରୁଛି ଏବଂ ଭ୍ରମରଗଣ ସଙ୍ଗୀତ ରସିକମାନଙ୍କ ପରି ମୁଣ୍ଡ ହଲାଇ ଅଭିନନ୍ଦନ ଜଣାଉଅଛନ୍ତି ।

କପଟବଟୁ, ବାମନ, ବିଷ୍ଣୁ ବିରାଟ ବେଶ ଧାରଣକରି ବଳିରାଜାଙ୍କୁ କହିଲେ —"ରାଜନ୍ ! ଏବେ ତୁମେ ମୋର ଯଥାର୍ଥ ରୂପ ଦେଖିଲ ତ ? ତୁମେ କହିଲେ ମୁଁ ତିନପାଦ ଭୂମି ମାପିବି ।"

କୌଣସି ପ୍ରକାର ବ୍ୟଗ୍ରତା ପ୍ରକାଶ ନ କରି ମହାରାଜା ବଳି କହିଲେ— "ପ୍ରଭୋ ! ଆପଣ ମାପନ୍ତୁ । ଏ ତିନଲୋକର ମୁଁ ଅଧୀଶ୍ୱର । ଆପଣ ନିଜ ଇଚ୍ଛା ଅନୁସାରେ ଆକାର ବଢ଼ାଇ ଦାନ ଗ୍ରହଣ କରନ୍ତୁ ।"

ଭଗବାନ୍ ହସି ହସି କହିଲେ—"ଯଦି ପୂରି ନ ହେବ ?"

ବଳି ସାହସର ସହିତ କହିଲେ—"ତେବେ ଆଉ କଣ ହେବ ? ଆପଣ ମାପନ୍ତୁ । ଆପଣ ହାରୁଛନ୍ତି କି ମୁଁ ହାରୁଛି ଦେଖିବା ।"

ଏହାଶୁଣି ବିରାଟ ବପୁଧାରୀ ବାମନ ଗୋଟିଏ ପାଦରେ ସପ୍ତପାତାଳ ସହିତ ସମଗ୍ର ପୃଥିବୀକୁ ମାପିନେଲେ । ବିଶାଳ ଶରୀରରେ ସମଗ୍ର ଆକାଶ, ଆଠ ହାତରେ ଅଷ୍ଟଦିଗକୁ ଆବୃତ କରିବା ପରେ ଦ୍ୱିତୀୟ ପାଦରେ ସ୍ୱର୍ଗକୁ ମାପିଲେ । ସ୍ୱର୍ଗର ସୀମା କମିଯିବାରୁ ପାଦର ଅବଶିଷ୍ଟ ସ୍ଥାନ ପୂରଣ ପାଇଁ ମହର୍ଲୋକ, ଜନଲୋକ, ତପୋଲୋକ ଓ ସତ୍ୟଲୋକକୁ ଆବୃତ କଲେ । କିନ୍ତୁ ନଖଟିଏ ରଖିବା ପାଇଁ ସ୍ଥାନ ଆବଶ୍ୟକ ପଡ଼ିବାରୁ ସେ ବ୍ରହ୍ମଲୋକକୁ ନଖରେ ଭେଦକଲେ । ଦୁଇପାଦରେ ଭଗବାନ୍ ସମଗ୍ର ଊର୍ଦ୍ଧ୍ୱଭାଗ ଓ ଅଧୋଭାଗକୁ ମାପିନେଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ ଯେତେବେଳେ ନିଜର ପବିତ୍ର ପାଦପଦ୍ମରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ବ୍ୟାପିଗଲେ ସେତେବେଳେ ବ୍ରହ୍ମାଙ୍କ ଆନନ୍ଦର ସୀମା ରହିଲା ନାହିଁ । ଯେଉଁ ପଦପାଇଁ ଯୋଗୀଗଣ ନିରନ୍ତର ଧ୍ୟାନ କରନ୍ତି, ଯାହାକୁ ଧ୍ୟାନ କଲେ ଭବବନ୍ଧନ ତୁଟିଯାଏ, ସେହି ପାଦ ହିଁ ବ୍ରହ୍ମ-ଲୋକରେ ଉପନୀତ । ନିଜର ଭାଗ୍ୟକୁ ପ୍ରଶଂସା କରି ଚତୁର୍ମୁଖ ସେହି ପାଦପଦ୍ମକୁ ପୂଜା କରିବା ପାଇଁ ପ୍ରସ୍ତୁତ ହେଲେ ।"

## ଛପ୍‌ପୟ

ସାଗର କାନନ ଶୈଳ, ନଦୀ ନଦ ସର ନିର୍ଝରିନୀ ।
ସାତ ଭୂମି ପାତାଳ ସହିତ ସବରୀ ୟହ ଧରନୀ ।।
ବଳ କୀ କହଁ ଲଗି ଭୂମି ନାପି ବାମନ ନେ ଲୀହ୍ନୀ ।
ଫୈଲଓ୍ୱେ ପଗ ବିଶଦ ପାଦ ଅନ୍ତର୍ଗତ କୀହ୍ନୀ ।।
କାୟା ତେଁ ଆକାଶକୁଁ, ଅଷ୍ଟ କରନ ତେଂ ଅଷ୍ଟ ଦିଶି ।
ଗୟୋ ଦ୍ୱିତୀୟ ପଦ ସ୍ୱର୍ଗ ମହଂ, ଜନ, ତପ, ସତ୍ୟହୁ ମେ ପ୍ରବିଶି ।।

●

# ବିଷ୍ଣୁପଦୀ ଗଙ୍ଗାଙ୍କ ଆବିର୍ଭାବ

ଧାତୁ କମଣ୍ଡଳୁଜଳଂ ତଦୁରୁକ୍ରମସ୍ୟ
ପାଦାବନେଜନ ପବିତ୍ରତୟା ନରେନ୍ଦ୍ର ।
ସ୍ୱର୍ଧୁନ୍ୟଭୂନ୍ନଭସି ସା ପତତୀ ନିମାର୍ଷ୍ଟି
ଲୋକତ୍ରୟଂ ଭଗବତୋ ବିଶଦେବ କୀର୍ତ୍ତିଃ ॥
( ଭା-୮-୧୧-୪ )

**ଛପ୍ପୟ**

ଫୋର୍‌ୟୋ ଅଣ୍ଡକଟାହ ଚରନ ନଖ ପାର ଗୟୋ ଜବ ।
ଓ ହୀ ସଲିଲ କୀ ଧାର କମଣ୍ଡଲୁ ବିଧି ଧାରୀ ତବ ॥
ବିଷ୍ଣୁପଦୀ ପୁନି ଭଇଁ ପଖାରେ ପଦ ଶ୍ରୀହରି କେ ।
ଶ୍ରୀଗଙ୍ଗାଜୀ ଚଲୀଁ ଭୂମି ପେ ବହୀଁ ଉତରି କେ ॥
ଶତ ଯୋଜନ ପେ ବୈଠିକେ, ଜେ ଗଙ୍ଗା କହହିଁ ।
ତେ ନର ପାବେଁ ପରମ ପଦ, ଭୂଖେ ନଙ୍ଗେ ନହିଁ ରହହିଁ ॥

ଏହି ବିଶ୍ୱବ୍ରହ୍ମାଣ୍ଡ, ବ୍ୟାପକ ପ୍ରଭୁଙ୍କ ଗୋଟିଏ ପାଦରେ ରହିଛି । ଅନ୍ୟ ତିନିପାଦକୁ ଦିବ୍ୟ ରୂପେ ବର୍ଣ୍ଣନା କରାଯାଇଛି । ପ୍ରଭୁ ଯେତେବେଳେ ଅବତାର ଗ୍ରହଣ କରନ୍ତି, ଧରାଧାମରେ ଅବତୀର୍ଣ୍ଣ ହୁଅନ୍ତି ସେତେବେଳେ ତାଙ୍କର ଦୁଇପାଦ ଥାଏ । ଦୁଇପାଦରେ ସେ ବ୍ରହ୍ମାଣ୍ଡକୁ ଆବୃତ କରନ୍ତି ଏବଂ ଲୋକକଲ୍ୟାଣ ପାଇଁ ନିଜ ଦିବ୍ୟ ପାଦରୁ ଗଙ୍ଗାଙ୍କୁ ଅବତରିତ କରନ୍ତି । ଦ୍ରବୀଭୂତ ବ୍ରହ୍ମହିଁ ଗଙ୍ଗା । ବ୍ରହ୍ମ ନିରାକାର ରୂପ ଧାରଣ କରିଥାନ୍ତି । ଘନୀଭୂତ ବ୍ରହ୍ମ ଦ୍ରବୀଭୂତ ହୋଇ ଜଳରୂପ ଗ୍ରହଣ କରନ୍ତି । ଅନ୍ୟ ଅବତାର ରୂପରେ ଅବତୀର୍ଣ୍ଣ ହେଲା ପରି ବ୍ରହ୍ମ, ସତ୍ୟଲୋକରୁ ଜଳ ରୂପରେ ଅବତୀର୍ଣ୍ଣ ହୋଇ ସମସ୍ତ ଲୋକଙ୍କୁ ପବିତ୍ର କରୁଛନ୍ତି । ସେହି ଦ୍ରବୀଭୂତ ବ୍ରହ୍ମର ନାମ ଗଙ୍ଗା । ବିଷ୍ଣୁପଦ ପ୍ରକ୍ଷାଳନରୁ ସୃଷ୍ଟି ହୋଇଥିବାରୁ ଏହା ବ୍ରହ୍ମପଦୀ, ବିଷ୍ଣୁପଦୀ

ନାମରେ ଅଭିହିତ । ସୁରଲୋକରେ ଏହାକୁ ସୁରସରିତ୍ କୁହାଯାଏ । ତ୍ରିଭୁବନତାରଣୀ, ତରଳ ତରଙ୍ଗ ସମନ୍ୱିତା ସ୍ୱର୍ଧୁନୀ ଗଙ୍ଗା ପାପୀମାନଙ୍କ ପାପତାପ ପ୍ରକ୍ଷାଳନ କରି ଅଦ୍ୟାବଧି ପୃଥିବୀରେ ସର୍ବଦୁଃଖହାରୀ ଭଗବାନ୍ ବାମନ ଓ ବଳିଙ୍କ ବିମଳ କୀର୍ତ୍ତିର ପ୍ରତୀକ ରୂପେ ପ୍ରବାହିତ ହେଉଛନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରଭୁ ଯେତେବେଳେ ତାଙ୍କ ଦୁଇ-ପାଦରେ ପୃଥିବୀ ଓ ଊର୍ଦ୍ଧ୍ୱଲୋକକୁ ଆବୃତ କଲେ ସେତେବେଳେ ଦ୍ୱିତୀୟ ପାଦ ବୃଦ୍ଧା ଆଙ୍ଗୁଳିର କିଛି ଅଂଶ ବଙ୍କା ହୋଇ ରହିଲା । ଭଗବାନ ଆଙ୍ଗୁଳିକୁ ସିଧା କରିବାମାତ୍ରେ ବ୍ରହ୍ମାଣ୍ଡର ଆବରଣ ଫାଟିଗଲା । ଏହି ବ୍ରହ୍ମାଣ୍ଡ ପଛରେ ପ୍ରକୃତିର ଅଷ୍ଟ ଆବରଣ ରହିଛି । ପ୍ରଥମେ ସୂକ୍ଷ୍ମ ପୃଥିବୀର ଆବରଣ, ଦ୍ୱିତୀୟରେ ଜଳ ଆବରଣକୁ ବିଷ୍ଣୁଙ୍କ ଅଙ୍ଗୁଳି ଭେଦ କରିବାରୁ ସେଠାରେ ଏକ ବିଶୁଦ୍ଧ ଜଳଧାରା ପ୍ରବାହିତ ହେଲା । ସେହି ଜଳକୁ ପବିତ୍ରତମ ଜଳ ବୋଲି ଭାବି ଚତୁର୍ମୁଖ ବ୍ରହ୍ମା ତାହାକୁ ନିଜ କମଣ୍ଡଳୁରେ ରଖିଦେଲେ ।"

ପ୍ରଭୁଙ୍କ ପବିତ୍ର ପାଦ ବ୍ରହ୍ମଲୋକରେ ପହଞ୍ଚିବାର ଦେଖି ବ୍ରହ୍ମା ସେହି ପାଦକୁ ପୂଜା କରିବା ପାଇଁ ପୂଜାସାମଗ୍ରୀ ଏକତ୍ରିତ କଲେ । ଆମେ ଯେତେବେଳେ ଗଙ୍ଗାକୁ ପୂଜାକରୁଁ ସେତେବେଳେ ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଆଦି ପାଇଁ ସେହି ଗଙ୍ଗାଜଳକୁ ବ୍ୟବହାର କରୁଁ । ବ୍ରହ୍ମା ସେହିପରି ବ୍ରହ୍ମାଣ୍ଡ ଭେଦନରୁ ନିର୍ଗତ ଦିବ୍ୟ-ଜଳଧାରା ଦ୍ୱାରା ପ୍ରଭୁଙ୍କ ଦ୍ୱିତୀୟ ପାଦକୁ ପୂଜାକଲେ ।

ଏହାଶୁଣି ଶୌନକ ପଚାରିଲେ—"ଭଗବନ୍ ! ବ୍ରହ୍ମାଣ୍ଡ ଭେଦ କରିବାରୁ ଜଳ ବାହାରିଲା । ଏହାର ରହସ୍ୟ ବୁଝିହେଲା ନାହିଁ । ଆପଣ ବିଷୟଟି ସ୍ପଷ୍ଟକରି କହନ୍ତୁ ।"

ମହର୍ଷି ସୂତ କହିଲେ—'ମହାରାଜ ! ଅଧୋଭାଗରେ ଅତଳ, ବିତଳ,ସୁତଳ ତଳାତଳ, ମହାତଳ, ରସାତଳ ଓ ପାତାଳ ଏପରି ସାତୋଟି ଲୋକ ଏବଂ ଊର୍ଦ୍ଧ୍ୱ-ଭାଗରେ ଭୂ, ଭୁବ, ସ୍ୱର୍ଗ, ମହ, ଜନ, ତପ ଓ ସତ୍ୟ ନାମରେ ସାତୋଟି ଲୋକ ଅଛି । ଏହି ଉଭୟକୁ ନେଇ ଚତୁର୍ଦ୍ଦଶ ଭୁବନ ପରିକଳ୍ପିତ ହୋଇଛି । ଏହାକୁହିଁ ବ୍ରହ୍ମାଣ୍ଡ କୁହାଯାଏ । ଏଗୁଡ଼ିକ ଅଣ୍ଡା ଆକାରରେ ଅବସ୍ଥିତ । ବ୍ରହ୍ମାଙ୍କ ଅଣ୍ଡା ହୋଇ-ଥିବାରୁ ଏହାକୁ ବ୍ରହ୍ମାଣ୍ଡ କୁହାଯାଏ । ଏହି ବ୍ରହ୍ମାଣ୍ଡର ବହିର୍ଭାଗରେ ଦଶଗୁଣ ସୂକ୍ଷ୍ମ ପୃଥିବୀର ଆବରଣ ରହିଛି । ଅର୍ଥାତ୍ ପୃଥିବୀର ଅତି ସୂକ୍ଷ୍ମରୂପ ବ୍ରହ୍ମାଣ୍ଡର ଚାରି-ପାଖରେ ଦଶଟି ସ୍ତରରେ ଆବୃତ ହୋଇଛି । ତା'ପରେ ଜଳର ସୂକ୍ଷ୍ମ ଆବରଣ

ଦଶଗୁଣ ରହିଛି । ଏହି କ୍ରମରେ ଅଗ୍ନିଦେବଙ୍କର ତେଜ, ବାୟୁ, ଆକାଶ, ଅହଂତତ୍ତ୍ୱ, ମହତ୍ତତ୍ତ୍ୱ ଓ ସର୍ବଶେଷରେ ପ୍ରକୃତିତତ୍ତ୍ୱର ଆବରଣ ଅଛି । ଏସବୁକୁ ନେଇ ପୂର୍ଣ୍ଣ ବ୍ରହ୍ମାଣ୍ଡ ପରିକଳ୍ପିତ । ଏହିପରି ଅସଂଖ୍ୟ ବ୍ରହ୍ମାଣ୍ଡ ଅଛି । ବିଶ୍ୱକୁ ଅସଂଖ୍ୟ ବ୍ରହ୍ମାଣ୍ଡର ଆଧାର କୁହାଯାଏ । ଏଥିରେ ବ୍ରହ୍ମାଙ୍କଠାରୁ ଆରମ୍ଭ କରି ପିମ୍ପୁଡ଼ି ପର୍ଯ୍ୟନ୍ତ ସମସ୍ତେ ଅଛନ୍ତି । ବ୍ରହ୍ମାଣ୍ଡ ଏକ ବାତାପି ଫଳ ପରି । ବାହାରକୁ ଗୋଟିଏ ଦେଖା ଯାଉଥିଲେ ମଧ୍ୟ ଚୋପା ଛଡ଼ାଇଦେଲେ ସେଥିରେ ଅସଂଖ୍ୟ ଖୋସା ଥିବାର ଦେଖାଯାଏ । ସେହିପରି ଅସଂଖ୍ୟ ବାତାପି ଗୋଟିଏ ଗଛରେ ଫଳଥାଏ ଏବଂ ସୃଷ୍ଟିରେ ଅସଂଖ୍ୟ ବାତାପି ବୃକ୍ଷ ଥିବାର ଦେଖାଯାଏ । ଠିକ୍ ସେହିପରି ବିଶ୍ୱରେ ଅସଂଖ୍ୟ ବ୍ରହ୍ମାଣ୍ଡ ବିଦ୍ୟମାନ, ତାହାର କଳନା ଓ ବର୍ଣ୍ଣନା ଅସମ୍ଭବ ।

ଲୀଳା ରଚନା ପାଇଁ ଭଗବାନ୍ ବାମନ ହୁଅନ୍ତି, ପୁଣି ବିରାଟ ବପୁ ଧାରଣ କରନ୍ତି । ତାଙ୍କଠାରେ କୌଣସି ଭେଦ ବା ଶ୍ରେଷ୍ଠ ବଡ଼ ଭାବନା ନାହିଁ । ଜୀବ-ଜଗତର କଲ୍ୟାଣ ପାଇଁ ସେ ପାଦ ଟିକିଏ ବଢ଼ାଇ ଦେବାରୁ ତାହା ସତ୍ୟଲୋକ ଅତିକ୍ରମ କରି ବ୍ରହ୍ମାଣ୍ଡକୁ ଭେଦକଲା ଏବଂ ପାପ ତାପ ବିନାଶ ପାଇଁ ସେଠାରୁ ପବିତ୍ର ଜଳଧାରା ବହିଆସିଲା ପୃଥିବୀକୁ । "କିନ୍ତୁ ବ୍ରହ୍ମାଙ୍କ କମଣ୍ଡଳରୁ ଏହା ପୃଥିବୀକୁ କିପରି ବହିଆସିଲା' ବୋଲି ମୁନି ଶୌନକ ପଚାରିବାରୁ ମହର୍ଷି ସୂତ କହିଲେ—ହିଁ ସେଇକଥା ତ ଭଗବାନ୍ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଥିଲେ ।"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଭଗବାନଙ୍କ ପଦାରବିନ୍ଦକୁ ଦେଖି ବ୍ରହ୍ମା ଖୁସି ହୋଇଗଲେ । ପାଦର ତଳଭାଗ ପଦ୍ମଫୁଲର ପାଖୁଡ଼ା ପରି ଅରୁଣବର୍ଣ୍ଣ ଦେଖା ଯାଉଛି । ନଖ ରୂପକ ଚନ୍ଦ୍ରର ଆଲୋକରେ ବ୍ରହ୍ମଲୋକର ଆଭା ମଳିନ ପଡ଼ିଯାଇଛି । ବ୍ରହ୍ମା ଉଠିପଡ଼ିଲେ ସମ୍ଭ୍ରମରେ । ତ୍ରିବିକ୍ରମ ପ୍ରଭୁଙ୍କ ପାଦ ବ୍ରହ୍ମଲୋକରେ ପହଞ୍ଚି ଯାଇ-ଥିବାର ସମ୍ବାଦ ଚାରିଆଡ଼େ ପ୍ରଚାରିତ ହୋଇଗଲା । ବ୍ରହ୍ମାଙ୍କ ମାନସ ପୁତ୍ର ମରୀଚ୍ୟାଦି ଋଷିଗଣ ଶୁଣିବାମାତ୍ରେ ଆସି ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ । ବ୍ରହ୍ମାଙ୍କ ସଭାରେ ବିରାଜମାନ ଥିବା ସନକାଦି ଊର୍ଦ୍ଧ୍ୱରେତା, ନୈଷ୍ଠିକ ବ୍ରହ୍ମଚାରୀଗଣ, ଯୋଗୀଜନ ତଥା ମୂର୍ତ୍ତିମାନ୍ ବେଦ, ଉପବେଦ, ଯମ, ନିୟମ, ତର୍କ, ଇତିହାସ, ବେଦାଙ୍ଗ, ପୁରାଣ, ସଂହିତା ତଥା ଜ୍ଞାନାଗ୍ନିଦଗ୍ଧକର୍ମା ପୁରୁଷଗଣ ଭଗବତ୍ ପଦାରବିନ୍ଦ ନିକଟରେ ଉପସ୍ଥିତ ହେଲେ ଏବଂ ପ୍ରଣାମ ଜଣାଇ ସ୍ତୁତିପାଠ କରିବାକୁ ଲାଗିଲେ ।

ବ୍ରହ୍ମା କମଣ୍ଡଳରୁ ସେହି ଦିବ୍ୟ ଜଳରେ ଗନ୍ଧ, ପୁଷ୍ପ, ତୁଳସୀ ପକାଇ ବିଷ୍ଣୁପଦକୁ ଧୋଇଦେଲେ । ପ୍ରଭୁଙ୍କ ପାଦରେଣୁ ଓ ତୁଳସୀ ମଞ୍ଜରୀର ଦିବ୍ୟ ଗନ୍ଧ ବହନ କରି ସେହି ଜଳ ପାଦପଦ୍ମର ନିମ୍ନଭାଗକୁ ବହି ଚାଲିଲା । ସମସ୍ତେ ସେହି

ଚରଣାମୃତ ଶିରରେ ଧାରଣ କଲେ । ପବିତ୍ର ଜଳର ଅବିଚ୍ଛିନ୍ନ ପ୍ରବାହ ବ୍ରହ୍ମଲୋକ ଅତିକ୍ରମ କରି ତପ, ଜନ, ମହର୍ଲୋକ ଦେଇ ସ୍ୱର୍ଗରେ ପହଞ୍ଚିଲା । ବିଷ୍ଣୁ ପାଦାଗ୍ର-ସମ୍ଭୂତା ସେହି ଜଳଧାରା ସ୍ୱର୍ଗରେ ମନ୍ଦାକିନୀ, ପାତାଳରେ ଭୋଗବତୀ ଓ ପୃଥିବୀରେ ଗଙ୍ଗା ନାମରେ ବିଖ୍ୟାତ ହେଲା ।

ଶୌନକ ପଚାରିଲେ—"ହେ ସୂତ ! ଆମେ ଶୁଣିଥିଲୁ ମହାରାଜ ଭଗୀରଥ ଗଙ୍ଗାଙ୍କୁ ଆଣିଥିଲେ । ଆପଣ କହୁଛନ୍ତି ବିରାଟ ବାମନଙ୍କ ଦ୍ୱିତୀୟ ପାଦାଙ୍ଗୁଷ୍ଠ ବ୍ରହ୍ମାଣ୍ଡକୁ ଭେଦ କରିବାରୁ ଗଙ୍ଗା ବ୍ରହ୍ମାଙ୍କ କମଣ୍ଡଳୁକୁ ଆସିଲେ ଏବଂ ପାଦ ପ୍ରକ୍ଷାଳନ କରିବା ପରେ ପୃଥିବୀକୁ ବହିଆସିଲେ ଏବଂ ସେହି ପବିତ୍ର ଧାରା ଗଙ୍ଗା ନାମରେ ଅଭିହିତ ହେଲା । ଏହା କିପରି, କେତେଦୂର ସଙ୍ଗତିପୂର୍ଣ୍ଣ ହେଉଛି, ତାହା ବୁଝାଇ ଦିଅନ୍ତୁ ।"

ମହର୍ଷି ସୂତ କହିଲେ—ଭଗବାନ୍ ! ଗଙ୍ଗାଙ୍କ ସ୍ଥିତି ନିତ୍ୟ, ସନାତନ । ତାହା ନ ହୋଇ ଯଦି ତାଙ୍କୁ ଭଗୀରଥ ଆଣିଥାନ୍ତେ ତେବେ ମହାରାଜ ହରିଶ୍ଚନ୍ଦ୍ରଙ୍କ ସମୟରେ ସେ କାଶୀରେ କିପରି ଥାଆନ୍ତେ । ମହାରାଜ ହରିଶ୍ଚନ୍ଦ୍ର ତ ଭଗୀରଥଙ୍କର ବହୁ ପୂର୍ବବର୍ତ୍ତୀ । ମନୁଙ୍କ ପୁତ୍ର ଇକ୍ଷ୍ୱାକୁ ଥିଲେ । ତାଙ୍କଠାରୁ ଯଥାକ୍ରମେ ବିକୁକ୍ଷି, ପୁରଞ୍ଜୟ, କକୁତ୍‌ସ୍ଥ, ଅନେନା, ପୃଥୁ, ବିଶ୍ୱରନ୍ଧି, ଚନ୍ଦ୍ର, ଯୁବନାଶ୍ୱ, ଶାବସ୍ତ, କୁବଳ-ୟାଶ୍ୱ, ହର୍ଯ୍ୟଶ୍ୱ, ନିକୁମ୍ଭ, ବହଣାଶ୍ୱ, କୃଶାଶ୍ୱ, ସେନଜିତ, ଯୁବନାଶ୍ୱ, ମାନ୍ଧାତା ପୁରୁକୁତ୍ସ, ତ୍ରସଦସ୍ୟୁ, ଅନରଣ୍ୟ, ହର୍ଯ୍ୟଶ୍ୱ, ତ୍ରିବନ୍ଧନ, ତ୍ରିଶଙ୍କୁ ଆଦି ଜନ୍ମଗ୍ରହଣ କରିଥିଲେ । ମହାରାଜ ହରିଶ୍ଚନ୍ଦ୍ର ଥିଲେ ତ୍ରିଶଙ୍କୁଙ୍କ ପୁତ୍ର । ହରିଶ୍ଚନ୍ଦ୍ରଙ୍କଠାରୁ ରୋହିତାଶ୍ୱ, ହରିତ, ବିଜୟ, ଭରୁକ, ବୃକ, ବାହୁକ, ସଗର, ଅସମଞ୍ଜସ, ଅଂଶୁମାନ୍ ଦିଲୀପ ଜନ୍ମହେଲେ । ଦିଲୀପଙ୍କ ପୁତ୍ର ହେଲେ ମହାରାଜ ଭଗୀରଥ । ତାଙ୍କର ନାମ ଅନୁସାରେ ଭଗବତୀ ଗଙ୍ଗା ଭାଗୀରଥୀ ନାମରେ ଅଭିହିତା । ମହାରାଜ ହରିଶ୍ଚନ୍ଦ୍ରଙ୍କ ଦ୍ୱାଦଶ ପୁରୁଷ ପୂର୍ବରୁ ବି ଗଙ୍ଗା ଥିଲେ ।

ଭଗବତୀ ବିଷ୍ଣୁପଦୀ ବଦ୍ରୀନାରାୟଣଙ୍କ ପାଦ ପ୍ରକ୍ଷାଳନ କରି ଅଳକନନ୍ଦା ନାମରେ ପ୍ରଥମେ ପ୍ରବାହିତା ହୋଇ କୌଣସି ଏକ ସ୍ଥାନରେ ସମୁଦ୍ରରେ ପଡ଼ିଥିଲେ । ସଗରଙ୍କ ଷାଠିଏ ହଜାର ପୁତ୍ର ଦକ୍ଷିଣ ସାଗର ତୀରରେ ଭସ୍ମ ହୋଇଥିଲେ । ଗଙ୍ଗାଙ୍କୁ ସେଠାକୁ ନେବା ଆବଶ୍ୟକ ପଡ଼ିଲା । ତେଣୁ ଭଗୀରଥ ଗଙ୍ଗୋତ୍ରୀରେ ବସି ତପସ୍ୟା କଲେ । ସେଠାରୁ ଗଙ୍ଗାଙ୍କର ଏକ ନବୀନ ଧାରା ପ୍ରବାହିତ ହେଲା । ତା'ର ନାମ ରହିଲା ଭାଗୀରଥୀ ଗଙ୍ଗା । ସେହି ଧାରା ପ୍ରୟାଗଠାରେ ଭଗବତୀ ଅଳକନନ୍ଦାଙ୍କ ସହିତ ମିଶିଗଲା ଏବଂ ସମୁଦ୍ର ପାଖରେ ଭାଗୀରଥୀ ପୁଣି ଅଲଗା ହୋଇ ସଗର ପୁତ୍ରମାନଙ୍କୁ

ଉଦ୍ଧାର କରିବା ନିମିତ୍ତ ପୃଥକ ନଦୀରୂପେ ବହିଗଲା ଓ ସମୁଦ୍ରରେ ମିଶିଗଲା । ମିଳନ ସ୍ଥାନଟି ଗଙ୍ଗା ସାଗର ନାମରେ ଅଭିହିତ ହେଲା । ଉତ୍ତରାଖଣ୍ଡରେ ଏବେବି ଭାଗୀରଥୀ ଗଙ୍ଗା ଓ ଅଳକନନ୍ଦାଙ୍କର ଦୁଇଟି ପୃଥକ୍ ଧାରା ପ୍ରବାହିତ ହେଉଛି ଏବଂ ଉଭୟଙ୍କର ଦେବପ୍ରୟାଗଠାରେ ମିଳନ ଘଟିଛି । ଏଣୁ ବିଷ୍ଣୁପଦୀ ଓ ଭାଗୀରଥୀ ପୃଥକ୍ ହେଲେ ବି ମୂଳତଃ ଏକ । ସନାତନ ବିଷ୍ଣୁଙ୍କ ପରି ଗଙ୍ଗା ମଧ୍ୟ ସନାତନ । ସେଥିରେ ଆଗ ପଛ ବିଚାର କରିବାର ପ୍ରଶ୍ନ ଉଠୁନାହିଁ ।

ହେ ମୁନିଗଣ ! ବ୍ରହ୍ମଲୋକରେ ବିଷ୍ଣୁଙ୍କ ପାଦ ପୂଜାକରି ବ୍ରହ୍ମା ସନ୍ତୁଷ୍ଟ ହେଲେ । ଭଗବତୀ ବିଷ୍ଣୁପଦୀଙ୍କର ଆବିର୍ଭାବ ଘଟିଲା । ତ୍ରିଲୋକପାବନୀ ଗଙ୍ଗା ଆକାଶରେ ଆକାଶ ରୂପରେ ବ୍ୟାପ୍ତ ହୋଇ ରହିଲେ । ଭଗବତୀ ଗଙ୍ଗାଙ୍କର ଅନେକ ରୂପ ଅଛି । ଗଙ୍ଗାଙ୍କୁ ବିଷ୍ଣୁପାଦାଗ୍ର ସମ୍ଭୂତା ବୋଲି କେତେକ କହୁଥିବାବେଳେ, ଆଉ କେତେକ କହନ୍ତି ନାରଦଙ୍କ ବୀଣା ଧ୍ୱନି ଶୁଣି ଭଗବାନ ଦ୍ରବୀଭୂତ ହୋଇ ଜଳରୂପରେ ବହିଯାଇ ଥିଲେ । ବ୍ରହ୍ମା ସେହି ଜଳକୁ କମଣ୍ଡଳୁରେ ସଞ୍ଚୟ କରିଥିଲେ ଏବଂ ସେହି କମଣ୍ଡଳୁରୁ ପ୍ରବାହିତ ହୋଇ ସେ ତ୍ରିଲୋକତାରିଣୀ ଗଙ୍ଗା ନାମରେ ପରିଚିତା ହେଲେ । ସେଥିପାଇଁ ଗଙ୍ଗାଙ୍କୁ ବ୍ରହ୍ମଦ୍ରବ କୁହାଯାଏ । ଗଙ୍ଗା ଓ ଭଗବାନଙ୍କ ମଧ୍ୟରେ ଅଭେଦ ସମ୍ପର୍କ ରହିଛି । ପ୍ରଭୁଙ୍କ ପବିତ୍ର ପାଦପଦ୍ମ ପରି ଗଙ୍ଗାଜଳ ସମସ୍ତ ଅଶୁଭନାଶକ ଓ ପରମ ପଦ ପ୍ରାପ୍ତିରେ ସହାୟକ । ତେଣୁ ଗଙ୍ଗାଙ୍କ ନାମ ସ୍ମରଣମାତ୍ରେ ପାପତାପ କ୍ଷୟ ହୋଇଯାଏ ବୋଲି ପ୍ରସିଦ୍ଧି ରହିଛି ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଭଗବାନ୍ ବାମନ ଦୁଇପାଦରେ ସମଗ୍ର ବ୍ରହ୍ମାଣ୍ଡକୁ ମାପିନେଇ ନିଜ ଆକାରକୁ ପୁନଃ ସଙ୍କୁଚିତ କରିଦେଲେ । ପୁଣି ସେ ନିଜର ପ୍ରାକୃତ ରୂପରେ ବିରାଜିତ ହେଲେ ।

## ଛପ୍ପୟ

ଜଗ ଜନନୀ ମାଁ ଅଙ୍ଗ ଅଙ୍ଗ ସୁଖ କା ସରସାୱେଁ ।
ମନ ପୁଲକିତ ପୟପାନ ଲହର ଲଖି ହିୟ ହରସାୱେଁ ।।
ପାପ ପହାଡ଼ ଢ଼ହ ୟ୍ୟ ପୁଣ୍ୟ କୋ ପୋତ ପଠାୱେଁ ।
ତାପୈ ଚଢ଼ି ମାଁ ! ଭକ୍ତ ସହଜ ଭବଜଧି ତର ଜାୱେଁ ।।
ପ୍ରଭୁପଦ ରଜ ତୁଳସୀ ସହିତ, ବ୍ରହ୍ମ କମଣ୍ଡଳୁ ତେଁ ନିକସି ।
ସବ ସ୍ୱର୍ଗନ ପାବନ କରତ, ଗିରି ଭୂ, ପୁନି ଜଳନିଧି ପ୍ରବିଶି ।।

# ବାମନଙ୍କ ଉପରେ
# ଅସୁରମାନଙ୍କ କ୍ରୋଧ

ଅନେନ ଯାଚମାନେନ ଶତ୍ରୁଣା ବଟୁରୂପିଣା ।
ସର୍ବସ୍ୱଂ ନୋ ହୃତଂ ଭର୍ତ୍ତୁର୍ନ୍ୟସ୍ତଦଣ୍ଡସ୍ୟ ବର୍ହିଷି ॥
ତସ୍ମାଦସ୍ୟ ବଧୋ ଧର୍ମୋ ଭର୍ତ୍ତୁଃ ଶୁଶ୍ରୂଷଣଂ ଚ ନଃ ।
ଇତ୍ୟାୟୁଧାନି ଜଗୃହୁର୍ବଲେରନୁଚରା ଅସୁରାଃ ॥

(ଭା:-୮-୨୧-୧୧, ୧୩)

## ଛପ୍ପୟ

ଦ୍ୱୈ ଡଗନ୍ତେଁ ଜଗ ନାପି ବନେ ପୁନ-ହର ବଟୁ ବାଳକ ।
ଲଖି ଛଳ ସବଇ ଦୈତ୍ୟ ଭୟେ କ୍ରୋଧିତ ପୁରପାଳକ ॥
ମାରୌ, ଯୁହ ଦ୍ୱିଜ ନାହିଁ ବସ୍ତୁ ଛଲୟୋ ଅସୁରବର ।
ସ୍ୱାମୀ କୂଁ ଛଲ ଠଗି ସବହିଁ ସମ୍ପତ୍ତି ହମାରୀ ॥
ଜୀବନ ଜାନ ନ ପାଇ ଜିହ, ଅବ ଯମପୁର କୋ ମଗ ଗହୈ ।
କ୍ରୋଧିତ ଅସୁରନ ତେଁ ବହୁଁସ, ମହା ମନସ୍ୱୀ ବଲି କହୈ ॥

ପ୍ରଭୁଙ୍କ ସୁଖରେ ଯେ ସୁଖୀ ହୁଏ, ଦୁଃଖରେ ଦୁଃଖୀ ହୁଏ, ତାକୁ ପ୍ରକୃତ ସେବକ କହନ୍ତି । ଯୋଗ୍ୟ ସେବକ ପ୍ରଭୁଙ୍କ ହାନିଲାଭକୁ ନିଜର ହାନିଲାଭ ବୋଲି ଗ୍ରହଣ କରେ, ପ୍ରଭୁଙ୍କ ହିତପାଇଁ ନିଜ ପ୍ରାଣର ମୋହ ପରିତ୍ୟାଗ କରେ, ସ୍ୱାମୀଙ୍କ ଶତ୍ରୁକୁ ନିଜର ଶତ୍ରୁ ବୋଲି ବିଚାର କରେ । ପ୍ରକୃତ ସେବକର ସ୍ୱଭାବ ଏହିପରି ହୋଇଥାଏ ।

ଶ୍ରୀ ଶୁକଦେବ କହିଲେ – "ହେ ରାଜନ୍ ! ଦୁଇପାଦ ଭୂମି ସ୍ୱୀକାର କରିବା ପରେ ପ୍ରଭୁ ବାମନ ପୂର୍ବରୂପ ଧାରଣ କରି କହିଲେ—ବଳିରାଜା ! ତୁମେ ତ ମୋତେ ତିନିପାଦ ଭୂମି ଦାନ କରିଛ । ଦୁଇପାଦ ବି ମୋର ପୂରି ହେଲାନାହିଁ । ସେ ଯାହାହେଉ ଏବେ ତୃତୀୟ ପାଦ ପାଇଁ କି ବ୍ୟବସ୍ଥା କରୁଛ କୁହ ।"

ମହାରାଜ ବଳି ଲଜ୍ଜିତ ହୋଇ ଠିଆ ହୋଇଥିଲେ । ସର୍ବତ୍ର ପ୍ରଚାରିତ ହୋଇଗଲା ଯେ, ବାମନ କପଟରେ ବଳିର ସର୍ବସ୍ୱ ଅପହରଣ କରିନେଲେ । ବ୍ରହ୍ମା ନିଜର ସଙ୍ଗୋପାଙ୍ଗ ନେଇ ପହଞ୍ଚିଲେ । ଲୋକପାଳମାନେ ଓ ଲୁଚି ରହିଥିବା ଦେବତାମାନେ ଆତ୍ମପ୍ରକାଶ କଲେ । ସମସ୍ତେ ଜଳ, ଫଳ, ଫୁଲ, ମାଳା, ଗନ୍ଧ, ଅକ୍ଷତ, ଧୂପ, ଦୀପ, ଲଜା ଆଦି ଆଣି ଭଗବାନ୍‌ଙ୍କୁ ପୂଜା କଲେ, ତାଙ୍କର ମହିମାଗାନ କଲେ, ଚରଣାମୃତ ପାନକଲେ ଭକ୍ତିଭାଗୀରଥୀରେ ସ୍ନାନ କଲେ । ମଧୁର ପଦାବଳୀ ଗାନକଲେ, ବାରମ୍ବାର ଜୟଘୋଷ କଲେ, ଗନ୍ଧର୍ବମାନେ ବିବିଧ ବାଦ୍ୟ ବଜାଇଲେ, ଅପ୍‌ସରାମାନେ ନୃତ୍ୟ କଲେ । ଶଙ୍ଖ, ଦୁନ୍ଦୁଭି ଶବ୍ଦରେ ଦଶଦିଗ ପୂର୍ଣ୍ଣ ହୋଇଗଲା । ଦ୍ରୁତ ଗତିଶୀଳ ଜାମ୍ବବାନ୍ ଭେରୀ ବଜାଇ ଚାରିଆଡ଼େ ଘୋଷଣା କଲେ ଯେ, ଭଗବାନ୍ ବାମନ ଏବେ ପୃଥିବୀରେ ସ୍ୱାମୀ ହେଲେ । ବ୍ରହ୍ମାଙ୍କ ଆଦେଶରେ ଜଗତ୍ ପାଳିତ ହେବ । ବଳୀ ଆଉ ରାଜା ହୋଇ ନାହାନ୍ତି । ତିନିଲୋକ ଦୈତ୍ୟ ସୁତଙ୍କ ଆଧି-ପତ୍ୟରୁ ମୁକ୍ତ ହେଲା । ଏହି ଘୋଷଣା ଖୁବ୍ ଅଳ୍ପ ସମୟ ମଧ୍ୟରେ ପ୍ରଚାରିତ ହୋଇଗଲା ।

ଭଗବାନ ବଳି ଖୁବ୍ ଶାନ୍ତଥିଲେ । ଭଗବାନ୍‌ଙ୍କ ଲୀଳା ଦେଖି ସେ ମନେ ମନେ ଆନନ୍ଦଲାଭ କରୁଥିଲେ । ସେ ଭଗବାନ୍‌ଙ୍କ ଲୀଳାକୁ ବୁଝିବା ପାଇଁ ଚେଷ୍ଟା କରୁଥିଲେ । କିନ୍ତୁ ତାଙ୍କ କର୍ମଚାରୀ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପରସ୍ପର କୁହାକୁହି ହେଉଥିଲେ ଯେ, ଏ ବ୍ରାହ୍ମଣ ଠକ, ମାୟାବୀ ଓ ବହୁରୂପୀ । ଏ ବଟୁର ଦାନ ନେବା ଇଚ୍ଛା ନାହିଁ । ପ୍ରକୃତରେ ଏ ହେଉଛନ୍ତି ବିଷ୍ଣୁ । ଯେ ସ୍ୱଭାବତଃ ଅସୁର-ବିଦ୍ୱେଷୀ । ଏହି ମାୟାବୀ ଇଚ୍ଛା ଅନୁସାରେ ରୂପ ଧାରଣ କରନ୍ତି । କେବେବେଳେ ମାଛ ତ କେତେବେଳେ କୂର୍ମ, କେଉଁଠି ଶୂକର ତ କେଉଁଠି ସିଂହ । ଏବେ ବ୍ରାହ୍ମଣ ବେଶରେ ଆସିଛନ୍ତି । ଏହି ବେଶରେ ଦେବତାଙ୍କ କାର୍ଯ୍ୟ ସିଦ୍ଧ କରିବେ । କପଟରେ ଏ ଆମର ପ୍ରଭୁଙ୍କ ସର୍ବସ୍ୱ ଛଡ଼ାଇ ନେଇ ଇନ୍ଦ୍ରକୁ ଦେବେ ।

ଦ୍ୱିତୀୟ ଅନୁଚର କହିଲା—ଆମର ପ୍ରଭୁ ତ ସରଳ ବ୍ୟକ୍ତି । ଏହାର ଛନ୍ଦ ମନ୍ଦକୁ ବୁଝି ପାରିଲେ ନାହିଁ । ତୃତୀୟ ଅନୁଚର କହିଲା—ବୁଝି ପାରିଲେ ବି କଣ କରିବେ ? ଯୁଦ୍ଧ କରିପାରିବେ ନାହିଁ, କାରଣ ଯଜ୍ଞରେ ଦୀକ୍ଷିତ ହୋଇଥିବା ବ୍ୟକ୍ତି କ୍ରୋଧ କରିବା, ଅସ୍ତ୍ରଶସ୍ତ୍ର ଧାରଣ କରିବା ଉଚିତ ନୁହେଁ । ଏ ବ୍ୟକ୍ତି ବାମନ ରୂପରେ ମାଗିବା ପାଇଁ ଯଜ୍ଞସ୍ଥଳରେ ଆସି ପହଞ୍ଚିଲେ । ମହାରାଜ ବଳି ଧର୍ମାତ୍ମା ହୋଇଥିବାରୁ ତାଙ୍କୁ ମନା କରିପାରିଲେ ନାହିଁ । ପ୍ରାର୍ଥୀକୁ ସେ ବିମୁଖ କରନ୍ତି ନାହିଁ । ବିଶେଷ କରି ବ୍ରାହ୍ମଣମାନଙ୍କୁ ସେ ଅଧିକ ଭକ୍ତି କରନ୍ତି । ବ୍ରାହ୍ମଣମାନଙ୍କ ପାଇଁ ସେ ସବୁକିଛି

କରିପାରିବେ । ଏହି କପଟୀ ବ୍ରାହ୍ମଣ ଏଣୁତେଣୁ ଦୁଇ ଗୁରିପଦ କଥାବାର୍ତ୍ତା ହୋଇ ମହାରାଜାଙ୍କୁ ପ୍ରତିଜ୍ଞାବଦ୍ଧ କରାଇନେଲା । ମହାରାଜ ଜଣେ ସତ୍ୟବାଦୀ, ପ୍ରାଣ ବନ୍ଧ-ମସ୍ତରେ ପ୍ରତିଜ୍ଞା ପାଳନ କରନ୍ତି । କିନ୍ତୁ ଏ ବଟୁବ୍ରାହ୍ମଣ କପଟ କରିଛି । ଯଜ୍ଞରେ ଦୀକ୍ଷିତ ମହାରାଜଙ୍କୁ ନିଜର କପଟ ଜାଲରେ ଛନ୍ଦି ପକାଇଛି । ମୋ' ମତରେ ଏହି ବ୍ରାହ୍ମଣଙ୍କୁ ଯଥାର୍ଥ ଶିକ୍ଷା ଦିଆଯିବା ଉଚିତ ।

ଚତୁର୍ଥ ଅନୁଚର କହିଲା—ଆରେ, ଏହାଙ୍କୁ ଅବିଳମ୍ବେ ଯମପୁର ପଠାଇ-ଦେବା ଆବଶ୍ୟକ । 'ମୂଳ ମାଇଲେ ଯିବ ସରି । ଦେବଙ୍କ ସଙ୍ଗେ କମ୍ପା କଲି ।' ବାମନ ନ ରହିଲେ ଆଉ କିଏ ଦୁଇପାଦ ବା ତିନିପାଦ ଭୂମି ମାଗିବ ? ପଞ୍ଚମ ଅନୁଚର କହିଲା—ବନ୍ଧୁଗଣ ! ଆପଣମାନେ ଠିକ୍ କହୁଛନ୍ତି । ଆଜିପର୍ଯ୍ୟନ୍ତ ଆମ୍ଭେ-ମାନେ ପ୍ରଭୁଙ୍କ ଲୁଣ ଖାଉଛୁ, ତାହା ପରିଶୋଧ କରିବାର ଏହାହିଁ ଉପଯୁକ୍ତ ସମୟ । ଯେଉଁ ପ୍ରଭୁ ଅନ୍ନ ବସ୍ତ୍ର ଦେଇ ସେବକମାନଙ୍କୁ ପାଳନ କରନ୍ତି ଆବଶ୍ୟକ ବେଳେ ତାଙ୍କୁ ସେମାନେ ସାହାଯ୍ୟ କରନ୍ତି । ତେଣୁ ମହାରାଜଙ୍କ ଋଣରୁ ମୁକ୍ତ ହେବାପାଇଁ ଏହାହିଁ ପ୍ରକୃଷ୍ଟ ସମୟ । ଏହି ବଟୁକୁ ସଂସାରରୁ ବିଦାୟ କରିଦିଅ ।

ଏହିପରି ପରସ୍ପର ମଧ୍ୟରେ ଆଲୋଚନା କରି ସେବକମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ସେମାନେ ଯେ ଯାହାର ଅସ୍ତ୍ର ଶସ୍ତ୍ର ଧରି ବାମନଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଧାରା ଶ୍ରାବଣର ବାରିଧାରା ପରି ବାମନଙ୍କ ଉପରେ ଅସ୍ତ୍ରଶସ୍ତ୍ର ବୃଷ୍ଟି ହେବାକୁ ଲାଗିଲା । ସେବକମାନେ ସ୍ୱାମୀଭକ୍ତି ପ୍ରଦର୍ଶନ ନିମନ୍ତେ ଶୂଳ, ପଟ୍ଟିଶ ଆଦି ନେଇ ଯୁଦ୍ଧ କରୁଥିଲେ ମଧ୍ୟ ମହାରାଜ ବଳି ଏପରି ଯୁଦ୍ଧ ଇଚ୍ଛାକରୁ-ନଥିଲେ । ବାମନ ବେଶଧାରୀ ବିଷ୍ଣୁଙ୍କ ଉପରେ ଅସ୍ତ୍ର ଶସ୍ତ୍ର ନିକ୍ଷେପ କରିବା ପାଇଁ ତାଙ୍କର ଟିକିଏ ଇଚ୍ଛା ନଥିଲା । ସେବକମାନେ ପ୍ରଭୁଙ୍କର ଅଭିପ୍ରାୟ ନ ଜାଣି ଧୃଷ୍ଟତା ପ୍ରଦର୍ଶନ କରୁଥିଲେ । ଭଗବାନ୍‌ଙ୍କ ପାଖରେ ଥିବା ନନ୍ଦ, ସୁନନ୍ଦ, ଜୟ, ବିଜୟ, ଅନ୍ୟ ପାରିଷଦବର୍ଗ ଅସୁରମାନଙ୍କୁ ପ୍ରତିରୋଧ କଲେ । ଉଭୟ ପକ୍ଷରୁ ଘମାଘୋଟ ଯୁଦ୍ଧ ଆରମ୍ଭ ହେଲା । ଅସୁର ସେନାପତି ବିପ୍ରଚିତ୍ତି, ରାହୁ, କାଳନେମିଙ୍କ ସହିତ ଦଶସହସ୍ର ହସ୍ତୀବଳ ବିଶିଷ୍ଟ ନନ୍ଦ, ସୁନନ୍ଦ, ଜୟ, ବିଜୟ, କୁମୁଦାକ୍ଷ, ବିଶ୍ୱ-କ୍ସେନ, ଗରୁଡ଼, ଜୟନ୍ତ, ଶ୍ରୁତଦେବ, ପୁଷ୍ପଦନ୍ତ, ସାତ୍ତ୍ୱତ ଆଦି ଯୁଦ୍ଧ କରୁଥିଲେ । ଦେବଗଣ ଅସୁରମାନଙ୍କୁ ଛିନଛତ୍ର କରି ପକାଇଲେ ।

ଦେବଗଣ ଓ ଅସୁରଗଣଙ୍କ ମଧ୍ୟରେ ଯୁଦ୍ଧ ହେବାର ଦେଖି ମହାରାଜ ବଳି ଶୀଘ୍ର ସେଠାକୁ ଯାଇ ନିଜ ସେନାପତିମାନଙ୍କୁ ସମ୍ବୋଧନ କରି କହିଲେ—"ହେ ସେନାପତିଗଣ ! ମୋ' କଥା ଶୁଣ, ତୁମ୍ଭେମାନେ କାହିଁକି ଏପରି ଗଣ୍ଡଗୋଳ

ଆରମ୍ଭ କଲ ? ଦେଖ, ଯୁଦ୍ଧପାଇଁ ସମୟ ଅଛି । କେହି ଦୁର୍ବଳ କି ସବଳ ନୁହେଁ । ସମୟ ସବଳକୁ ଦୁର୍ବଳ ଓ ଦୁର୍ବଳକୁ ସବଳ କରିଦିଏ । ସମୟ ଅନୁକୂଳ ହେଲେ ଅନାୟାସରେ କାର୍ଯ୍ୟ ସିଦ୍ଧ ହୁଏ । କିନ୍ତୁ ସମୟ ପ୍ରତିକୂଳ ହେଲେ ଯେତେ ଯତ୍ନ କଲେ ମଧ୍ୟ ପରାଜିତ ହେବାକୁ ପଡ଼େ । ବର୍ତ୍ତମାନ ସମୟ ଆମର ଅନୁକୂଳ ନୁହେଁ । ତେଣୁ ଯୁଦ୍ଧରେ ଲାଭ କିଛି ହେବନାହିଁ ।

ବୃତ୍ରଚକ୍ରି କ୍ରୋଧାନ୍ୱିତ ହୋଇ କହିଲା –"ପ୍ରଭୋ ! ଆମେ ବଳପ୍ରୟୋଗ କରି ବନ୍ଧୁ ପାରିଷଦବର୍ଗଙ୍କୁ ଏଠାରୁ ବାହାର କରିଦେବୁ ।"

ମହାରାଜ ବଳି ଗମ୍ଭୀର ହୋଇ କହିଲେ—"ଆରେ, ବଳ ସବୁଠି, ସବୁ ସମୟରେ କାମ ଦଏନାହିଁ । ସେଥିପାଇଁ ମଧ୍ୟ ଉପଯୁକ୍ତ ସମୟ, ଅବସର ଆବଶ୍ୟକ । କାଳହିଁ ପ୍ରାଣୀମାନଙ୍କୁ ସୁଖ ବା ଦୁଃଖ ଦିଏ । ପୁରୁଷାର୍ଥ ବଳରେ କେହି କେବେ କାଳକୁ ଜୟ କରିପାରେ ନାହିଁ । ସମୟ ଥିଲା, ଯେତେବେଳେ ଦେବତାମାନେ ଆମ ନା ଶୁଣିବାମାତ୍ରେ ଭୟରେ ସ୍ୱର୍ଗ ସମ୍ପତ୍ତି ଛାଡ଼ି ପଳାଇ ଯାଉଥିଲେ । ଆଜିବି ସେହି କାଳ ଆସିଛି ଯେତେବେଳେ ଦେବତାମାନେ ଗୃହ-ପାଖରେ ଘେରି ଯାଇ ମୋତେ ଘୃଣା ଦୃଷ୍ଟିରେ ଦେଖୁଛନ୍ତି, ମୋର ଅବସ୍ଥା ଦେଖି ହସୁଛନ୍ତି ।"

ସେନାପତି ରାହୁ କହିଲା –"ମହାରାଜ ! କପଟୀ ସହିତ କପଟ ଆଚରଣ କରିବା ଉଚିତ । ଆମେ ଆମର ବଳରେ ନ ପାରିଲେ ମାୟାବୀମାନଙ୍କ ସହିତ ପରାମର୍ଶ କରି ଏମାନଙ୍କ ସହିତ ମାୟାଯୁଦ୍ଧ କରିବା । ଦୁର୍ଗ ଭିତରେ ରହି ଏମାନଙ୍କୁ ମାରିଦେବା । ବଡ଼ ବଡ଼ ଅଭିଚାରିକମାନଙ୍କୁ ଡକାଇ ଏମାନଙ୍କ ଉପରେ ତନ୍ତ୍ର, ମନ୍ତ୍ର, ମାରଣ, ମୋହନ, ଉଚ୍ଚାଟନ ଆଦି ପ୍ରୟୋଗ କରିବା । ଏମାନଙ୍କ ଖାଦ୍ୟ, ପେୟରେ ଏପରି ଔଷଧି ମିଶାଇଦେବା ଯାହାଦ୍ୱାରା ବିନା ଯୁଦ୍ଧରେ ସେମାନେ ଆପେ ଆପେ ମୃତ୍ୟୁବରଣ କରିବେ । ନୋହିଲେ ସାମ, ଦାନ ଆଦିଦ୍ୱାରା ସେମାନଙ୍କୁ ବଶୀଭୂତ କରିନେବା ।"

ମହାରାଜ ବଳି ହସି ହସି କହିଲେ—"ଭାଇ, ଏସବୁ ସମୟ ଅନୁକୂଳ ଥିଲେ ହିଁ ସଫଳ ହେବ । କିନ୍ତୁ ସମୟ ପ୍ରତିକୂଳ ହେଲେ ବଳ, ମନ୍ତ୍ରୀ, ବୁଦ୍ଧି, ଦୁର୍ଗ, ମନ୍ତ୍ର, ଔଷଧି, ସାମ, ଦାନ, ଭେଦ, ଦଣ୍ଡ ସବୁ ନିଷ୍ଫଳ ହୋଇଯିବ । ବିଧାତା ପ୍ରତିକୂଳ ହେଲେ ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଯିବ ।"

ସେନାପତି ରାହୁ କହିଲା –"ମହାରାଜ ! ଏମାନେ କଣ ଦେବତା ଆଉ ବନ୍ଧୁଙ୍କ ପାରିଷଦ ? ଆମେ ଏମାନଙ୍କୁ ତ କେତେଥର ଯୁଦ୍ଧରେ ହରେଇ ଦେଇଛୁ । ସେମାନେ ଯୁଦ୍ଧରେ ପରାଜିତ ହୋଇ ପଳାଇ ଯାଇଛନ୍ତି । ଆମେ ତାଙ୍କୁ ବହୁଦୂର ଘଉଡ଼ାଇ ନେଇଛୁ ।"

ମହାରାଜ ବଳି କହିଲେ—"ଯେତେବେଳେ ସେମାନେ ପଳାଇ ଯାଇଥିଲେ ସେ ସମୟ ଅଲଗା ସମୟ ଥିଲା । ଆମପାଇଁ ସେ ସମୟ ଥିଲା ଅନୁକୂଳ । ମୁଁ ଜାଣେ ତୁମେ ଏମାନଙ୍କୁ ପରାଜିତ କରିଥିଲ, କିନ୍ତୁ ଆଜି ଆଉ ସେମାନଙ୍କୁ ଜୟ କରିପାରିବ ନାହିଁ । ଆଜି ଭଗବାନ୍ ଆମର ପ୍ରତିକୂଳ ହୋଇଛନ୍ତି । ତାହା ହୋଇ ନଥିଲେ ଯେ ସର୍ବଦା ଆମର ମଙ୍ଗଳ କାମନା କରନ୍ତି ସେହି ଗୁରୁଦେବ ଆଜି ଆମଠାରୁ ଦୂରେଇଗଲେ କାହିଁକି ? ଆମକୁ ଐଶ୍ୱର୍ଯ୍ୟହୀନ ହେବାପାଇଁ ଅଭିଶାପ ଦେଲେ କାହିଁକି ? ଯେ ଶତ ଅଶ୍ୱମେଧ ଯଜ୍ଞ କରାଇ ମୋତେ ଇନ୍ଦ୍ରପଦରେ ଅଭିଷିକ୍ତ କରାଇବାକୁ ଯତ୍ନଶୀଳ ଥିଲେ, ସେ ଆଜି ଆମର ପତନ ପାଇଁ ଅଭିଶାପ ଦେଲେ କାହିଁକି ? ତେଣୁ ଅଯଥା ଯୁଦ୍ଧ କରିବା ଉଚିତ ନୁହେଁ । କାଳର ଗତିକୁ ଲକ୍ଷ୍ୟକର । ଆମର ଅନୁକୂଳ ସମୟ ଯେତେବେଳେ ଆସିବ ସେତେବେଳେ ଯୁଦ୍ଧ କରିବ । ସେତେବେଳେ ତୁମେ ବିଜୟୀ ହେବ ।"

ଅସୁରଗଣ ପଚାରିଲେ—"ପ୍ରଭୋ ! ଏବେ ଆମର କର୍ତ୍ତବ୍ୟ କଣ ?"

ମହାରାଜ ବଳି କହିଲେ—"ବର୍ତ୍ତମାନ ଭଗବାନ୍ ଆମକୁ ଯେଉଁଠି ରଖିବେ ଆମକୁ ସେହିଠାରେ ରହିବାକୁ ପଡ଼ିବ । ବର୍ତ୍ତମାନ ଯୁଦ୍ଧ ବନ୍ଦକର । ଏବେ ଆଉ ଏ ପୃଥିବୀରେ ରହିବା ପାଇଁ ଆମର ଅଧିକାର ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଅସୁରଗଣ ସତ୍ୟବ୍ରତ, ଦୃଢ଼ପ୍ରତିଜ୍ଞ, ଜ୍ଞାନୀ ପ୍ରଭୁଙ୍କର ଆଦେଶ ଅନୁସାରେ ଯୁଦ୍ଧରୁ ନିବୃତ୍ତ ହେଲେ । ବିଷ୍ଣୁ ପାର୍ଷଦବର୍ଗଙ୍କ ଅସ୍ତ୍ର ଶସ୍ତ୍ର ପ୍ରହାରରେ ଦୈତ୍ୟଗଣ କ୍ଷତବିକ୍ଷତ ହୋଇ ପଡ଼ିଥିଲେ । ଅନେକ ଅସୁର ସେତେବେଳକୁ ରସାତଳଗାମୀ ହୋଇ ସାରିଥିଲେ । ଆଉ କେତେକ ମହାରାଜ ବଳିଙ୍କ ପାଖରେ ରହି ଯାଇଥିଲେ ।"

## ଛପ୍ପୟ

ଅରେ, ଅସୁରଗନ ! ବାତ ସୁନୋ, ମତ ଶସ୍ତ୍ର ଚଲାଓ ।
ଅସମୟ ଲଖି ତୁମ ତୁରତ ଲୌଟି ରନତେଂ ସବ ଆଓ ।।
ସମୟ ସବଳ ହୀ କରେ କରେ ଦୁର୍ବଲ ଓ୍ୱହ ଭାଈ ।
କାଳ ଜନିତ ୟହ ବିପତି, ଅସୁର କୁଳପେ ଅବ ଆଈ ।।
ମନ୍ତ୍ର ବୁଦ୍ଧି ଅରୁ ଦୁର୍ଗ ବଲ, ଅବ ନ କାମ କଛୁ କରିଂଗେ ।
ବନ ବିରାଟ ବଟୁ ବିପ୍ରବର, ସରବସୁ ହରସବେ ହରିଂଗେ ।।

# ବଳି-ବନ୍ଧନ

ଅଥ ତାର୍କ୍ଷ୍ୟସୁତସ୍ତା ଜ୍ଞାତ୍ୱା ବିରାଟ୍ ପ୍ରଭୁଚିକୀର୍ଷିତମ୍ ।
ବବନ୍ଧ ବାରୁଣୈଃ ପାଶୈର୍ବଳିଂ ସୌତ୍ୟେଽହନି କ୍ରତୌ ।।
ହାହାକାରୋ ମହାନାସୀଦ୍ ରୋଦସ୍ୟୋଃ ସର୍ବତୋ ଦିଶମ୍
ଗୃହ୍ୟମାଣେଽସୁରପତୌ ବିଷ୍ଣୁନା ପ୍ରଭବିଷ୍ଣୁନା ।

(ଭା-୮-୨୧-୨୬; ୨୭)

**ଛପ୍ପୟ**

ସୁନକେଁ ବଲି କୀ ବାତ ଲୌଟି ସୁରପୁର ସବ ଆୟେ ।
ବାଦ ବିବାଦ ନ ବଢେ ଅସୁର ପାତାଲ ପଠାୟେ ।।
ଅଚ୍ୟୁତ ଆଶୟ ସମୁଝି ଗରୁଡ଼ ବଲି ବାନ୍ଧେ ବରବସ ।
ଜଗମହଁ ହାହାକାର ମଚେୟୋ ହରି ଛୀନେୟୋ ସରବସ ।।
ଚଲତ ଖଉ ବଲ ନହିଁ ଭୟେ, ହର୍‌ୟୋ ବିଷ୍ଣୁନେ ଭୁବନ ଧନ ।
ଲଖି ଲଜ୍ଜିତ ବଲି ତେଁ ବିହଁସି, ବଟୁ ବାମନ ବୋଲେ ବଚନ ।।

ବନ୍ଧନ ହେଉଛି ଦୁଃଖର କାରଣ । ବନ୍ଧନ ଯଦି ସତ୍ୟାଶ୍ରିତ ହୋଇଥିବ ତେବେ ସୁଖଦ ଓ ଆତ୍ମସନ୍ତୋଷକର ହୋଇଥାଏ । ସଂସାରରେ ସତ୍ୟ, ଧର୍ମ ପାଇଁ ଯେଉଁ ଦୁଃଖ ବରଣ କରିବାକୁ ପଡ଼େ ତାହା ଯଦି ପ୍ରକୃତରେ ଦୁଃଖ ହୋଇଥାନ୍ତା ତାହା ତେବେ ଯୁଧିଷ୍ଠିର, ହରିଶ୍ଚନ୍ଦ୍ର, ଶିବି, ଦଧୀଚି ଆଦି ମହର୍ଷି, ରାଜର୍ଷିଗଣ ଏତେ ଦୁଃଖ ବରଣ କରିବାର କାରଣ କଣ ? ଅବଧକୁଳ ମଣ୍ଡନ ଦୂର୍ବାଦଳ ଶ୍ୟାମ ଭଗବାନ ଶ୍ରୀରାମ କରୁଣା ବିଗଳିତ ହୋଇ ଦୁଃଖର ନଦୀ ବୁହାଇଥିଲେ କାହିଁକି ? କମଳ କୋମଳ ପାଦରେ କଣ୍ଟକିତ ବନଭୂମିରେ ଘୂରି ବୁଲୁଥିଲେ କାହିଁକି ? ଏସବୁ ଦୁଃଖ ସେମାନଙ୍କ ପକ୍ଷରେ ଦୁଃଖକର ନ ଥିଲା । କାରଣ ଧର୍ମର ପ୍ରତିଷ୍ଠା ଓ ସତ୍ୟରକ୍ଷା ପାଇଁ ସହିବାକୁ ପଡ଼ୁଥିବା ଦୁଃଖରୁ ଏକପ୍ରକାର ଅଲୌକିକ ଆନନ୍ଦ ମିଳେ, ଯାହା ସହିତ ଯଶକୀର୍ତ୍ତି, ପାରଲୌକିକ ସୁଖ ଓ ସନ୍ତୋଷ ସନ୍ନିହିତ ଅଛି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବାମନ ଭଗବାନ ବିରାଟ ବପୁ ଧାରଣ କରି ଦୁଇପାଦରେ ସମସ୍ତ ଲୋକକୁ ମାପିନେବା ପରେ ପୁଣି ପୂର୍ବରୂପ ଧାରଣ କଲେ । ବିଷ୍ଣୁ ପାରିଷଦବର୍ଗଙ୍କ ସହିତ ଯୁଦ୍ଧ କରୁଥିବା ଅସୁରମାନେ ବଳିଙ୍କ ଆଦେଶରେ ପାତାଳପୁରକୁ ଚାଲିଗଲେ । ଭଗବାନ୍ ବାମନ ଆଖିର ସଙ୍କେତରେ ବାହନ ଗରୁଡ଼କୁ ଆଦେଶ ଦେଲେ—ଏବେ ବଳିକୁ ବରୁଣ ପାଶରେ ବନ୍ଧନ କର । ଗରୁଡ଼ ଥିଲେ ପକ୍ଷୀ ସ୍ୱଭାବର, ତାଙ୍କର ଦୟା ମାୟା ଆସିବ କେଉଁଠୁ ? ଭଗବାନଙ୍କ ସଙ୍କେତ ପାଇବାମାତ୍ରେ ସେ ମହାଯଶସ୍ୱୀ ପରମଜ୍ଞାନୀ ମହାରାଜ ବଳିଙ୍କୁ ବରୁଣ-ପାଶରେ ବାନ୍ଧି ପକାଇଲେ ।

ବିଧିର କି ବିଡ଼ମ୍ବନା, ଯେ ଏ ପର୍ଯ୍ୟନ୍ତ ତ୍ରିଭୁବନର ଶାସକ ଥିଲା, ଯାହାର ନାମ ଶୁଣିବାମାତ୍ରେ ଇନ୍ଦ୍ରାଦି ଦେବଗଣ ଭୟରେ ଥରୁଥିଲେ, ଯାହାର ଆଦେଶ ବେଦ ବାକ୍ୟ ପରି ପାଳିତ ହେଉଥିଲା, ଯାହାର ସେବାରେ ହଜାର ହଜାର ସୁରସୁନ୍ଦରୀ ନିଯୁକ୍ତ ଥିଲେ ସେ ଆଜି ସର୍ବସମକ୍ଷରେ ବନ୍ଦୀ ଅବସ୍ଥାରେ ଠିଆ ହୋଇଛନ୍ତି । ସେଦିନ ଥିଲା ଯଜ୍ଞର ପୂର୍ଣ୍ଣାହୁତି ଦିନ । ଦେବତା, ଋତ୍ୱିକ୍, ସଭାସଦମାନଙ୍କ ସହିତ ଯଜମାନ ସେଦିନ ସୋମପାନ କରନ୍ତି । ସୋମାଭିଷବ ଦିନଟି ପଶୁଯଜ୍ଞ ଓ ସୋମ-ଯଜ୍ଞର ସର୍ବଶ୍ରେଷ୍ଠ ଦିନ । ସେହିଦିନ ଧର୍ମାତ୍ମା ବଳି ବନ୍ଦୀହେଲେ । ବନ୍ଧନରେ ପଡ଼ିବା ପରେ ମହାରାଜ ବଳି ଶ୍ରୀହୀନ ହୋଇ ପଡ଼ିଥିଲେ । ସର୍ବସ୍ୱ ହରାଇଥିଲେ ମଧ୍ୟ ଉଦାର କୀର୍ତ୍ତି, ସ୍ଥିତପ୍ରଜ୍ଞ, ଜ୍ଞାନୀ, ବିରୋଚନ ସୁତ ବଳି ଅବିଚଳିତ ଭାବରେ ଠିଆ ହୋଇଥିଲେ । ବାମନ ସମସ୍ତ ପ୍ରକାର ଉଦ୍ୟମ ଚଳାଇ ମଧ୍ୟ ତାଙ୍କୁ ଧର୍ମଭ୍ରଷ୍ଟ କରିପାରିଲେ ନାହିଁ ।

ଭଗବାନ୍ ବାମନ ହସି ହସି କହିଲେ—"ମହାରାଜ ! ତୁମେ ଦାନୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଦାନୀ । ତୁମେ ମୋତେ ତିନିପାଦ ଭୂମି ଦେବାପାଇଁ ସଙ୍କଳ୍ପ କରିଥିଲ ?"

ହାତଯୋଡ଼ି ବଳି କହିଲେ—"ପ୍ରଭୋ ! ମୁଁ ତ ଏପର୍ଯ୍ୟନ୍ତ ମନାକରି ନାହିଁ । ମୁଁ ମୋର ପ୍ରତିଜ୍ଞାରେ ଏବେ ବି ସ୍ଥିର ରହିଛି ।"

କପଟୀ ବାମନ କହିଲେ—"ତେବେ ପ୍ରତିଜ୍ଞା ତୁମର ପୂରଣ କର । ସୂର୍ଯ୍ୟତାପ ଯେଉଁ ପର୍ଯ୍ୟନ୍ତ ପଡ଼ୁଛି, ଯେ ପର୍ଯ୍ୟନ୍ତ ଗ୍ରହ, ନକ୍ଷତ୍ର ଓ ଚନ୍ଦ୍ର ପ୍ରକାଶିତ ହେଉଛନ୍ତି, ମେଘ ଯେଉଁଠି ବୃଷ୍ଟି କରୁଛି ସେ ପର୍ଯ୍ୟନ୍ତ ତୁମେ ପୃଥିବୀର ସ୍ୱାମୀ ଓ ଅଧିପତି ହୋଇଛ । ତନ୍ମଧ୍ୟରେ ଯେତେ ଲୋକ ଅଛନ୍ତି, ସେ ସବୁ ଉପରେ ତୁମର ଶାସନ ଅଛି । ତୁମେ ପ୍ରତ୍ୟକ୍ଷଭାବେ ଦେଖିଲ ମୁଁ ଗୋଟିଏ ପାଦରେ ସମଗ୍ର ପୃଥିବୀ, ଶରୀର ଦ୍ୱାରା

ଆକାଶ ଓ ହାତଦ୍ୱାରା ଅନ୍ତରୀକ୍ଷ ମାପିନେଲି । ଦ୍ୱିତୀୟ ପାଦରେ ସ୍ୱର୍ଗାଦି ଉର୍ଦ୍ଧ୍ୱଲୋକକୁ ଅଧିକାର କଲି । ତୁମର ସମସ୍ତ ରାଜ୍ୟ ମୋର ଦୁଇପାଦରେ ଶେଷ ହୋଇଗଲା । ବର୍ତ୍ତମାନ ତୃତୀୟ ପାଦ ପାଇଁ ତୁମେ ଋଣୀ ହେଲ । ଏବେ ଆଉ ଦାତା ଓ ଗ୍ରହୀତାର ସମ୍ପର୍କ ରହିଲା ନାହିଁ । ତୁମେ ମୋର ବନ୍ଦୀ ଅଛ, ମୋର ଋଣ ପରିଶୋଧ କର । ମୋର ତୃତୀୟ ପଦ ପାଇଁ ସ୍ଥାନଦେଲେ ମୁଁ ତୁମକୁ ଛାଡ଼ିଦେବି, ନୋହିଲେ ତୁମେ ପ୍ରତିଜ୍ଞା ଭଙ୍ଗକଲ ବୋଲି ସ୍ୱୀକାର କରିଯାଅ ।”

ମହାରାଜ ବଳି କହିଲେ—“ପ୍ରଭୋ ! ମୁଁ ପ୍ରତିଜ୍ଞା ଭଙ୍ଗ କରିବି ନାହିଁ । ମୁଁ ତ ଦେବାପାଇଁ ମନା କରିନାହିଁ ।”

ବାମନ କହିଲେ—“ପ୍ରତିଜ୍ଞା ଭଙ୍ଗ ଆଉ କାହାକୁ କହନ୍ତି ? ମୁଁ ତୁମକୁ ମାଗିଲି, ତୁମେ ଦେବାପାଇଁ ସଂକଳ୍ପ କଲ ମାତ୍ର ଯାହା ଦେବାକଥା ସେଥିରୁ କମ୍ ଦାନ ଦେଲ । ଏହାଦ୍ୱାରା ବିଶ୍ୱାସ ଭଙ୍ଗ ହେଲାନାହିଁ କି ? ଯେ ନିଜର ପ୍ରତିଜ୍ଞା-ପାଳନ କରେନାହିଁ ତାକୁ ନରକ ଯାତନା ଭୋଗ କରିବାକୁ ପଡ଼େ । ବର୍ତ୍ତମାନ ମୋର ତୃତୀୟ ପାଦ ପାଇଁ ସ୍ଥାନ ଦିଅ, ନୋହିଲେ ନରକ ଭୋଗକର । ମୁଁ ଯାହା କହୁଛି ତାହା ଠିକ୍ ବା ଭୁଲ୍ ତୁମର ଗୁରୁଙ୍କୁ ପଚାରି ବୁଝିନିଅ ।”

ବଳି କହିଲେ—“ପ୍ରଭୋ ! ଗୁରୁଙ୍କୁ ଆଉ ପଚାରିବି କଣ ? ସେ ବହୁପୂର୍ବରୁ ସବୁକଥା କହିଦେଇଛନ୍ତି । ଆପଣଙ୍କ କଥା ମୋତେ ବୁଝାଇ ସାରିଛନ୍ତି ଏବଂ ଆପଣଙ୍କ ଯଥାର୍ଥ ରୂପ ବିଷୟରେ ଦିଗ୍‌ଦର୍ଶନ ଦେଇଛନ୍ତି । କିନ୍ତୁ ମୁଁ କେବେହେଲେ ମୋ' ପ୍ରତିଜ୍ଞାରୁ ବିଚଳିତ ହେବା ଉଚିତ ମନେ କରୁନାହିଁ ।”

ଭଗବାନ୍ ବାମନ ହସି ହସି ବ୍ୟଙ୍ଗକରି କହିଲେ—“ମହାରାଜ ! ତୁମେ ଜଣେ ଶ୍ରେଷ୍ଠ ଦାନୀ । ତୁମେ ଯଦି ଉଚିତ ମନେ କରୁନାହଁ ତେବେ ତା'ର ଫଳ ଭୋଗକର । ପ୍ରଥମେ ତୁମେ ନିଜକୁ ସର୍ବଶ୍ରେଷ୍ଠ ଶକ୍ତିଶାଳୀ ଓ ସମୃଦ୍ଧିଶାଳୀ ବୋଲି ଭାବୁଥିଲ । ମାତ୍ର ତିନପାଦ ଭୂମି ଦେବାପାଇଁ ବାରମ୍ବାର ଘୋଷଣା କଲ । ଏବେ ମୁଣ୍ଡ ତଳକୁ କରୁଛ କାହିଁକି ? ତୁମ ପ୍ରତିଜ୍ଞା ଆଉ ଅଧିକ ବିଳମ୍ବ ନକରି ପୂର୍ଣ୍ଣକର । ପ୍ରତିଜ୍ଞା ପୂରଣ ନକଲେ ତୁମେ ଜଣେ ବିଶ୍ୱାସଘାତକ ବୋଲି ପ୍ରମାଣିତ ହେବ । ତୁମେ ମୋତେ ପ୍ରତିଶ୍ରୁତି ଦେଇ ତାହା ପୂର୍ଣ୍ଣ କରିପାରୁ ନାହଁ । ତେଣୁ କିଛିକାଳ ପାଇଁ ଅଧୋଭୁବନରେ ବାସକର । ପୃଥିବୀର ନିମ୍ନ ଭାଗରେ ଥିବା ନରକରେ ତୁମର କାଳ ଅତିବାହିତ ହେଉ । ବହୁକାଳ ପର୍ଯ୍ୟନ୍ତ ତୁମେ ସ୍ୱର୍ଗସୁଖ ଭୋଗ କରିସାରିଛ ।

ବର୍ତ୍ତମାନ, ସ୍ୱର୍ଗଠାରୁ ଆରମ୍ଭ କରି ପୃଥିବୀ ପର୍ଯ୍ୟନ୍ତ ସମସ୍ତ ଭୂମି ମୋତେ ଦାନ କରିବା ପରେ ଦୟାକରି ମୁଁ ତୁମକୁ ଯେଉଁଠି ସ୍ଥାନ ଦେବି, ତୁମେ ସେଠାକୁ ଯାଇ ବନ୍ଧୁ ସ୍ୱଜନଙ୍କ ସହିତ ରହିବ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ ବାମନ ବଳିଙ୍କୁ କ୍ରୋଧାନ୍ୱିତ କରିବାପାଇଁ ଏହିପରି କଠୋର ବାକ୍ୟମାନ କହିବାକୁ ଲାଗିଲେ ଓ ନାନା ଭାବରେ ଧିକ୍କାର କଲେ । ବଳିର ମନୋଭାବ ପରୀକ୍ଷା କରିବା ପାଇଁ ପ୍ରଭୁ ବାମନ ସମସ୍ତ ପ୍ରକାର କଠୋର ବ୍ୟବହାର ପ୍ରଦର୍ଶନ, କଠୋର ବଚନ ଓ ବାରମ୍ବାର ତିରସ୍କାର କଲେମଧ୍ୟ ମହାରାଜ ବଳି ସତ୍ୟପଥରୁ ବିଚ୍ୟୁତ ହେଲେନାହିଁ କି କ୍ରୋଧ ପ୍ରକାଶ କଲେ ନାହିଁ । ସେ ନିଜ ପ୍ରତିଜ୍ଞାରେ ଦୃଢ଼ହୋଇ ରହିଲେ । ଅସୁରରାଜ, ମନସ୍ୱୀ ବଳି ଗମ୍ଭୀର ଭାବେ ଭଗବାନ୍ ବାମନଙ୍କୁ ଉତ୍ତର ଦେବାପାଇଁ ପ୍ରସ୍ତୁତ ହେଲେ ।"

## ଛପ୍ପୟ

ହେ ଦାନବ ମେଁ ଶ୍ରେଷ୍ଠ ! ତିନ ପଗ ପୃଥ୍ୱୀ ଦୀନ୍ହୀ ।
ପ୍ରଥମ ପାଦ ତେଁ ସ୍ୱର୍ଗ ଦ୍ୱିତୀୟ ତେଁ ଭୂ ସବ ଲୀନ୍ହୀ ।।
ତୀସର ପଗ କେ ହେତୁ ଅବନି କହୁ ଅନତ ବତାଓ ।
କରୋ ପ୍ରତିଜ୍ଞା ପୂର୍ଣ୍ଣ ନହୀ ନରକନ ମହଁ ଜାଓ ।।
ଦାନ ପ୍ରତିଜ୍ଞା ପ୍ରଥମ କରି, ପୁନି ପୂରୀ ଜେ ନହିଁ କରହିଁ ।
ତେ ପାପୀ ପାମର ପୁରୁଷ, ସବ ନରକନି କେ ଦୁଃଖ ସହହିଁ ।।



# ମହାରାଜ ବଳିଙ୍କ ବିନୟ

ଯଦ୍ୟୁତ୍ତମ ଶ୍ଳୋକ ଭବାନ୍ ମମେରିତମ୍
ବଚୋ ବ୍ୟଳୀକଂ ସୁରବର୍ଯ୍ୟ ମନ୍ୟତେ।
କରୋମ୍ୟୃତଂ ତନ୍ନ ଭବେତ୍ ପ୍ରଲମ୍ଭନମ୍
ପଦଂ ତୃତୀୟଂ କୁରୁ ଶୀର୍ଷ୍ଣି ମେ ନିଜମ୍ ॥

( ଭାଗ : ୮ । ୨୨ । ୨ )

## ଛପ୍ପୟ

କନକ ସରସ ବଳ ବହୁତ ଦୁଃସହ ଦୁଃଖ ଅନଳ ତପାୟେ ।
ପର ନ ବ୍ୟଥିତ ବଳ ଭୟେ ମନସ୍ୱୀ ନାହିଁ ଘବରାୟେ ॥
ବୋଲେ ହେ ବିଶ୍ୱେଶ ! ସତ୍ୟ ତେଁ ନହିଁ ମୁଖ ମୋରୁଁ ।
ନୀଚ ପୈର କୀ କରୀ ପ୍ରତିଜ୍ଞା ତାହି ନ ତୋରୁଁ ॥
ଶୀସର ପଗ ସମ ଧିର ଧରେ, ବିନା ବାତ ବଟୁ ଚ୍ୟୌଁ ଲଡ଼ୈ ।
ଦାନ ବସ୍ତୁ କୀ ଅପେକ୍ଷା, ଦାତା ତୋ ସବ ବିଧି ବଡ଼ୌ ॥

ବିପଦ କାଳରେ ଧୈର୍ଯ୍ୟର ପରୀକ୍ଷା ହୁଏ । ସାଧାରଣତଃ ସମସ୍ତେ ଧୈର୍ଯ୍ୟବାନ୍ ମନେ ହୁଅନ୍ତି । କିନ୍ତୁ ଘୋର ସଙ୍କଟ ଆସିଲେ ମଧ୍ୟ ଯେଉଁମାନେ ଆଦୌ ବିଚଳିତ ହୁଅନ୍ତି ନାହିଁ ସେହିମାନେ ପ୍ରକୃତରେ ଧୀର । ଅପମାନିତ ହେଲେମଧ୍ୟ ଯେଉଁମାନେ କ୍ରୋଧ ପ୍ରକାଶ କରନ୍ତି ନାହିଁ, ସେମାନଙ୍କୁ ସହିଷ୍ଣୁ କୁହାଯାଏ । ଥରେ ଜଣେ ମହାତ୍ମା ଭିକ୍ଷାକରିବା ପାଇଁ ଯାଇ ଜଣେ ଲୋକ ପାଖରେ ପହଞ୍ଚିଲେ । ସେ ଲୋକଟି ମହାତ୍ମାଙ୍କୁ ଦେଖି କହିଲା — ତୁମେତ ବେଶ୍ ଗୋଲ୍‌ଗାଲ୍ ଦେଖାଯାଉଛ, ତୁମକୁ ଭିକ-ମାଗିବାରେ ଲଜ୍ଜା ଲାଗୁନାହିଁ । ଏହାଶୁଣି ମହାତ୍ମା ଫେରି ଯାଉଥିଲେ । ପୁଣି ସେ ଲୋକଟି ତାଙ୍କୁ ଡାକିଲା ଓ କହିଲା—ଆରେ, ତୋ' ବୋପା କଣ ଏଠି ଜମା ରଖିଛନ୍ତି ଯେ ତୁ ପୁଣି ଫେରିଆସିଲୁ ? ପରିଶ୍ରମତ କରିବାକୁ ପଡ଼ୁନାହିଁ । ଖାଇ ପିଇ ମଣାଣି

କୁକୁର ପରି ମୋଟା ହୋଇଛୁ । ଯା, ନିକଳ ଯା ଏଠାରୁ । ମହାତ୍ମା ଏହା ଶୁଣି ପୁଣି ଫେରିଗଲେ । ସେ ଲୋକଟି ତାଙ୍କୁ ପୁଣି ଡ଼ାକିଲା ଓ ଫେରାଇଦେଲା । ଶେଷରେ ଲୋକଟି ମହାତ୍ମାଙ୍କ ପାଦତଳେ ପଡ଼ି କହିଲା—ପ୍ରଭୋ ! ଆପଣଙ୍କ ସହ୍ୟଶକ୍ତିକୁ ଧନ୍ୟବାଦ । ମୁଁ ଏତେ ଅପମାନ ଦେଲେ ମଧ୍ୟ ଆପଣ ନିର୍ବିକାର ଭାବରେ ସବୁ ସହିଗଲେ ।

ମହାତ୍ମା କହିଲେ– "ଭାଇ ! ମୋ'ର କେତେ ବା ସହିବା ଶକ୍ତି ଅଛି ? କୁକୁରଟିଏ ରୋଟି ଖଣ୍ଡିଏ ପାଇଁ ମୋ'ଠାରୁ ଅଧିକ ସହୁଥା'ରୁଛି । ସହିଷ୍ଣୁ ଥିଲେ ମହାରାଜ ହରିଶ୍ଚନ୍ଦ୍ର । ସେ ନିଜର ସର୍ବସ୍ୱ ଦାନ କରିଦେଇ ଦକ୍ଷିଣା ଦେଇ ନପାରି ବିଶ୍ୱାମିତ୍ରଙ୍କଠାରୁ ମାଡ଼ ଖାଇଥିଲେ । ନିଜର ପ୍ରାଣପ୍ରିୟା ପତ୍ନୀକୁ ଜଣେ ବ୍ରାହ୍ମଣକୁ ବିକି ଦେଇଥିଲେ । ନିଜର ଶ୍ରେଷ୍ଠ ପୁଅକୁ ମଧ୍ୟ ବିକିଥିଲେ ଏବଂ ନିଜକୁ ବିକ୍ରୟ କରି ଚଣ୍ଡାଳବୃତ୍ତି ଗ୍ରହଣ କରିଥିଲେ । ତଥାପି ସେ ବିଶ୍ୱାମିତ୍ରଙ୍କଠାରୁ ମାଡ଼ ଖାଇଥିଲେ ଏବଂ ପଦେ କିଛି ନକହି ସବୁ ସହିଥିଲେ । ଭିକାରୀକୁ ଭିକ୍ଷାଦେଇ ତା' ପାଖରୁ ନିର୍ଯ୍ୟାତନା ଭୋଗ କରିବା ଉଦାହରଣ ବିରଳ । ସେ ଦୃଷ୍ଟିରୁ ମହାରାଜ ବଳି, ହରିଶ୍ଚନ୍ଦ୍ର, ଜଣେ ଦୁଇଜଣ ମାତ୍ର ଏ ସଂସାରର ଆଦର୍ଶ ସ୍ଥାନୀୟ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବଟୁବେଶୀ ବାମନ ବିରାଟ ରୂପହୋଇ ମହାରାଜ ବଳିଙ୍କ ସର୍ବସ୍ୱ ଅପହରଣ କରିନେଲେ । ଦୁଇପାଦରେ ତା'ର ସମସ୍ତ ରାଜ୍ୟ ମାପିନେଲେ । ଆଉ ପାଦେ ଭୂମି ନେବାପାଇଁ ଅଡ଼ି ବସିଲେ । ନେବାର ଲୋଭ ପରିତ୍ୟାଗ କଲେ ନାହିଁ । ଟିକିଏ ହେଲେ ଦୟା ବି ଦେଖେଇଲେ ନାହିଁ । ଆଉ ତ କିଛି ନାହିଁ, ତେଣୁ ଆଉ ପାଦେ ଭୂମି ନେବାପାଇଁ ଜିଦ୍ ନକରି ବଳିକୁ କ୍ଷମା କରି- ଦେଇଥିଲେ ହୋଇଥାନ୍ତା । କିନ୍ତୁ ସେ ବଳିକୁ ବିଶୁଦ୍ଧ କରିବା ପାଇଁ ବ୍ୟଗ୍ର ଥିଲେ । ଗରୁଡ଼ଦ୍ୱାରା ବାନ୍ଧିପକାଇ ପ୍ରଭୁ ଅନେକ କଠୋର କଥା କହି ତାଙ୍କୁ ତିରସ୍କାର କଲେ । ସେ ବ୍ୟଗ୍ର ଥିଲେ ବଳି କିଛି କହନ୍ତୁ । ବଳିରାଜ କହିଲେ ପ୍ରଭୋ । ମୋ' ପାଖରେ ତ ଆଉକିଛି ନାହିଁ । ମୁଁ କଣ କରିବି ?"

ମହାରାଜ ବଳୀ ଥିଲେ ଧୀର, ବୀର, ଜ୍ଞାନୀ, ଯଶସ୍ୱୀ, ମନସ୍ୱୀ ଓ ସ୍ଥିତପ୍ରଜ୍ଞ । ତେଣୁ ପ୍ରଭୁ ବାମନଙ୍କର ସମସ୍ତ ପ୍ରକାର କଠୋର ବାକ୍ୟ ଶୁଣି ଓ ତିରସ୍କାର ସହି ମଧ୍ୟ ଟିକିଏ ହେଲେ ବିଚଳିତ ହେଲେନାହିଁ । ପ୍ରଭୁଙ୍କୁ ଉତ୍ତର ଦେବାକୁ ଯାଇ ମହାରାଜ ବଳି କହିବାକୁ ଆରମ୍ଭ କଲେ—"ପ୍ରଭୋ ! ଆପଣଙ୍କ ପବିତ୍ର କୀର୍ତ୍ତି ବିଶ୍ୱବ୍ରହ୍ମାଣ୍ଡରେ ପରିବ୍ୟାପ୍ତ । ବିଷ୍ଣୁରୂପେ ଆପଣ କି କି କୌତୁକ ନ କରିଛନ୍ତି ? କେତେ କେତେ ବିଚିତ୍ର ବେଶ ଆପଣ ଧାରଣ କରିଛନ୍ତି । ସଂସାରରେ ସମସ୍ତେ

ଆପଣଙ୍କ ଯଶକୀର୍ତ୍ତିକୁ ଜାଣନ୍ତି । ଆପଣ ହେଲେ ଇନ୍ଦ୍ରଙ୍କ ସାନଭାଇ ମାତ୍ର ସବୁ ଦେବତାଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ ହେଲେ । ମୁଁ ତିନିପାଦ ଭୂମି ଦେବବୋଲି କହିଛି—ଏହିକଥା ମୋତେ ବାରମ୍ବାର କାହିଁକି କହୁଛନ୍ତି ? ମୁଁ ଏବେ ବି କହୁଛି ତିନିପାଦ ଭୂମି ନିଶ୍ଚୟ ଦେବି ଏବଂ ସଙ୍ଗେ ସଙ୍ଗେ ଦେବି ।"

ବଟୁବାମନ ହସି ହସି କହିଲେ—"ଏବେ ଆଉ କିମିତି ଦେବ । ତୁମର ଯାହାଥିଲା ସବୁତ ମୋତେ ଦେଇସାରିଛ । ବର୍ତ୍ତମାନ ତୃତୀୟ ପାଦପାଇଁ ବ୍ରହ୍ମାଣ୍ଡ ବାହାରେ କେଉଁଠି ତୁମେ ଭୂମି ସୃଷ୍ଟି କରିବ ?"

ମହାରାଜ ବଳି କହିଲେ—"ପ୍ରଭୁ ! ଜଣେ ଦିଏ ଓ ଜଣେ ନିଏ । ଦାନପାଇଁ ଏକ ବସ୍ତୁ ଥାଏ । ଆମେ ଗୋଦାନ ଦେଉଛୁ ଗୋଦାନ ସହିତ ଦାତାଙ୍କ ନିଜକୁ ଦାନ କରିଦିଏ ନାହିଁ । ସେହିପରି ମୋର ପୃଥିବୀ ମୁଁ ଦାନ କରିଛି, କିନ୍ତୁ ମୁଁ ନିଜେ ଏପର୍ଯ୍ୟନ୍ତ ରହିଛି । ଆପଣ ତୃତୀୟ ପାଦ ମୋ' ମୁଣ୍ଡରେ ରଖନ୍ତୁ । ମୋତେ ଆପଣଙ୍କର କ୍ରୀତଦାସ କରିନିଅନ୍ତୁ ।"

ବାମନ କହିଲେ—"ମହାରାଜ ! ବଡ଼ ବିନୟ ବଚନ କହୁଛ । କଣ ଡରିଗଲ କି ?"

ଦୃଢ଼ତାର ସହିତ ମହାରାଜ ବଳି କହିଲେ—ଭଗବନ୍ ! ଆପଣ ଡରିଯିବା କଥା କହୁଛନ୍ତି ଏବଂ ବାରମ୍ବାର ମୋତେ ନରକର ଭୟ ଦେଖାଉଛନ୍ତି । କିନ୍ତୁ ମୋର ନରକ ପ୍ରତି ଚିକିଏ ହେଲେ ଭୟନାହିଁ । ମୋ' ପକ୍ଷରେ ସ୍ୱର୍ଗ ଓ ନର୍କ ସମାନ । ଆପଣ କହୁଛନ୍ତି—ତୁ ରାଜା ନୁହଁ । ରାଜାର କଣ ଦେଖା ଥାଏ କି ? ସାଧାରଣ ପୁରୁଷ ଯେତିକି ଖାଏ ରାଜାବି ସେତିକି ଖାଏ । ଅନ୍ୟମାନଙ୍କ ପରି ରାଜା ମଧ୍ୟ ଦେହକୁ ବସ୍ତ୍ରରେ ଆବୃତ୍ତ କରନ୍ତି । ରାଜାଙ୍କୁ ଉଠାଇବା ପାଇଁ ଯେଉଁ ଭେଷ୍ଟା ବା:ନେଜ ତାହା ସମସ୍ତେ ଶୁଣନ୍ତି । ଦିନେ ରାଜ୍ୟଚ୍ୟୁତ ହୋଇ ମୋତେ ଗାଧପରି ବୁଲିଯାଉଥିଲି । ସେତେବେଳେ ମୋତେ ଦେଖି ଇନ୍ଦ୍ର ହସିଥିଲେ । ଆଜି ଇନ୍ଦ୍ର ବି ମୋ' ପରି ବୁଲୁଛନ୍ତି । ରଥର ପହି ତଳ ଉପର ହେଲାପରି ରାଜପଦର ଅବସ୍ଥା । ତେଣୁ ପଦଚ୍ୟୁତ ହେବାରେ ମୋର ଟିକିଏ ହେଲେ ଦୁଃଖ ନାହିଁ । ଗରୁଡ଼ ଦ୍ୱାରା ଆପଣ ମୋତେ ବରୁଣ ପାଶରେ ବାନ୍ଧି ପକାଇଲେ । ସେଥିରେ ମୋର କ୍ଷତି କଣ ହେଲା ? ଆପଣ କହୁଛନ୍ତି—ମୁଁ ତୋ'ର ସର୍ବସ୍ୱ ନେବି । ତୋତେ ଅଶେଷ ଦୁଃଖ ଦେବି । ତୋତେ ନର୍କକୁ ପଠାଇ ଦେବି । ହେଉ, ଆପଣଙ୍କ ଇଚ୍ଛା । ଯେଉଁଠାକୁ ପଠାଇବେ ପଠାନ୍ତୁ । ସେଥିରେ ମୋର ଭୟ କରିବାର କିଛି ନାହିଁ । କିନ୍ତୁ ଗୋଟିଏ

ବିପତ୍ତିରେ ଭସ୍ମ ଅଛୁ, ତାହା ହେଉଛି, ପ୍ରହ୍ଲାଦର ନାତି ସଙ୍କଳ୍ପ କରି ମଧ୍ୟ ବଟୁବାମନଙ୍କୁ ତିନିପାଦ ଭୂମି ମାତ୍ର ଦେଇପାରିଲା ନାହିଁ ବୋଲି ଲୋକେ ନ କହନ୍ତୁ । ବ୍ରାହ୍ମଣ ସମ୍ପର୍କରେ ଘଟିବା ଅପକୀର୍ତ୍ତି ପ୍ରତି ମୋର ବିଶେଷ ଭୟ ।

ମନରେ ପ୍ରସନ୍ନ ହେଲେ ମଧ୍ୟ ଉପରକୁ ରୁକ୍ଷଭାବ ଫୁଟାଇ ବାମନ କହିଲେ—"ଦୈତ୍ୟରାଜ ! ମୁଁ ତୁମର ଐଶ୍ୱର୍ଯ୍ୟକୁ ନଷ୍ଟକରି ମଧ୍ୟ ଶାନ୍ତ ହେବି ନାହିଁ । ଦାନ ପୂରିକଲେ ମଧ୍ୟ କଠିନତମ ଦଣ୍ଡ ଦେବି ।"

ମହାରାଜ ବଳି ହସି ହସି କହିଲେ—"ପ୍ରଭୋ ! ଆପଣ କଣ କହିବାପାଇଁ ଚାହୁଁଛନ୍ତି କହନ୍ତୁ । ମୁଁ ଶୁଣିବାପାଇଁ ପ୍ରସ୍ତୁତ । ଦଣ୍ଡ ଦେଉନାହାନ୍ତି କାହିଁକି ? ଆପଣଙ୍କ ଦଣ୍ଡ ପାଇଲେ ମୁଁ ନିଜକୁ ଭାଗ୍ୟବାନ୍ ମନେକରିବି । ଆପଣଙ୍କ ପରି ପୂଜ୍ୟ-ତମଙ୍କଠାରୁ ଦଣ୍ଡ ଭୋଗକରିବା ସୌଭାଗ୍ୟର କଥା । ହେ ବିଶ୍ୱମ୍ଭର ! ଭାଗ୍ୟଶାଳୀ ପୁରୁଷହିଁ ବଡ଼ ଲୋକଙ୍କଠାରୁ ଦଣ୍ଡପାଏ । ସହିଷ୍ଣୁ, ପାପୀ, ଅସଦାଚାରୀମାନେ ଗୁରୁଜନଙ୍କ ଦଣ୍ଡରୁ ବଞ୍ଚିତ ରହନ୍ତି । ମୋହବଶତଃ ମାତା, ପିତା, ଭାଇ, ବନ୍ଧୁ, ମିତ୍ରମାନେ ଜାଣି ଜାଣି ଦଣ୍ଡଦିଅନ୍ତି ନାହିଁ । ସର୍ବଦା ହିତାକାଂକ୍ଷୀ, ସର୍ବଦ୍ୱାରାରେ ଶିକ୍ଷାଦାନକାରୀ, ପରମାର୍ଥ ପଥପ୍ରଦର୍ଶକ ଗୁରୁହିଁ କେବଳ ଯଥାର୍ଥ ଦଣ୍ଡ ଦିଅନ୍ତି । ଆମପରି ଅସୁରମାନଙ୍କର ଆପଣ ଗୁରୁ ନୁହନ୍ତି ପରମଗୁରୁ ।

ଭଗବାନ୍ ବାମନ କହିଲେ—"ତୁମର ଗୁରୁ ତ ଶୁକ୍ରାଚାର୍ଯ୍ୟ । ମୁଁ କେବେ ତୁମକୁ ଦୀକ୍ଷା ଦେଲି ?"

ମହାରାଜ ବଳି କହିଲେ—"ପ୍ରଭୋ ! କାନରେ ମନ୍ତ୍ରଦୀକ୍ଷା ଦେବା ବ୍ୟକ୍ତିହିଁ କ'ଣ କେବଳ ଗୁରୁହୁଏ ? ଦୀକ୍ଷାଗୁରୁଙ୍କ ପରି ଶିକ୍ଷାଗୁରୁ ମଧ୍ୟ ଅଛନ୍ତି । ଆପଣ ପ୍ରତ୍ୟକ୍ଷଭାବେ ମୋତେ ଦୀକ୍ଷାଦେଇ ନଥିଲେ ମଧ୍ୟ ପରୋକ୍ଷଭାବେ ଆପଣତ ଆମ୍ଭମାନଙ୍କର ପରମ ଗୁରୁ ।"

ଭଗବାନ ବାମନ ପଚାରିଲେ—"ଗୁରୁର କାମ କ'ଣ ଜୀବନ ଦାନ ଦେବା ନା ଜୀବନରୁ ମାରିଦେବା ?

ମହାରାଜ ବଳି କହିଲେ—"ପ୍ରଭୋ ! ଆପଣ ମାରିଦେଇ ମଧ୍ୟ ଜୀବନ ଦାନ କରନ୍ତି । ଆପଣଙ୍କ କ୍ରୋଧ ମଧ୍ୟ ବରଦାନ ସ୍ୱରୂପ କାର୍ଯ୍ୟକରେ । ଆମର କଲ୍ୟାଣ ପାଇଁ ଆପଣ ଆମର ଐଶ୍ୱର୍ଯ୍ୟ ବିନାଶ କରନ୍ତି । ନାନାପ୍ରକାର ସୁଖ ସମ୍ଭୋଗରେ ମଦୋନ୍ମତ୍ତ ହୋଇ ଅସୁରମାନେ ଅହଙ୍କାରବଶତଃ ଅନ୍ଧ ହୋଇଯାଆନ୍ତି । ଆପଣ

ଐଶ୍ୱର୍ଯ୍ୟ ବିନାଶ ରୂପକ ଅଞ୍ଜନ ଦେଇ ଆମର ଆଖି ଖୋଲନ୍ତି । ଆମର ବୁଦ୍ଧିକୁ ପ୍ରକୃତିସ୍ଥ କରନ୍ତି । ଯେଉଁ ଦୈତ୍ୟମାନେ ଆପଣଙ୍କ ସହିତ ଶତ୍ରୁତା ଆଚରଣ କରିଛନ୍ତି ସେମାନେ ସଂସାରରେ ପ୍ରସିଦ୍ଧି ଲାଭ କରିଛନ୍ତି ଏବଂ ଆପଣଙ୍କ ହାତରେ ମୃତ୍ୟୁ-ବରଣ କରି ଦୁର୍ଲଭ ପଦର ଅଧିକାରୀ ହୋଇଛନ୍ତି । ମୁନି, ଋଷିମାନେ ହଜାର ହଜାର ବର୍ଷ ତପସ୍ୟା କରି ଯେଉଁ ପଦ ସହଜରେ ପାଇ ପାରନ୍ତି ନାହିଁ, ସେହି ପଦ ଆପଣ ବିଦ୍ରୋହୀ ଅସୁରମାନଙ୍କୁ ଅକୁଣ୍ଠ ଚିତ୍ତରେ ପ୍ରଦାନ କରିଛନ୍ତି । ଯୁଦ୍ଧରେ ଜୟ କଲେ ରାଜ୍ୟ ଓ ମୃତ୍ୟୁବରଣ କଲେ ମୋକ୍ଷ ମିଳିଯାଉଛି ସହଜରେ । ଶ୍ରେଷ୍ଠ ଲୋକଠାରୁ ସମ୍ମାନ ପାଇବା ଅପେକ୍ଷା ବଡ଼ ଲୋକଦ୍ୱାରା ପରାଜିତ ହେବା, ଅପମାନିତ ହେବା ବରଂ ଶ୍ରେୟସ୍କର । ଏଣୁ ମୋତେ ବାନ୍ଧି ପକାଇବା ଦ୍ୱାରା ମୋର ଲଜ୍ଜାଜାତ ହେଉ ନାହିଁ କି ସର୍ବସ୍ୱ ଅପହରଣ କରିନେଲେ ମଧ୍ୟ ଦୁଃଖଜାତ ହେଉନାହିଁ । ଅନ୍ୟ କାହାରିଦ୍ୱାରା ଏହା ଘଟିଥିଲେ ନିଶ୍ଚୟ ଲଜ୍ଜା ଲାଗିଥାନ୍ତା, କିନ୍ତୁ ଆପଣ ତ ମୋର ଆତ୍ମୀୟ ।

ବଟୁବାମନ ହସି ହସି ପଚାରିଲେ—"ମୋ' ସହିତ ତୁମର ସମ୍ପର୍କ କଣ ?"

ଦୃଢ଼ତାର ସହିତ ମହାରାଜ ବଳି କହିଲେ—"ଭଗବନ୍ ! ଆପଣଙ୍କ ସହିତ ମୋର ସମ୍ପର୍କ ଅତି ଘନିଷ୍ଠ । ମୋର ପିତାମହ ପୁଣ୍ୟଶ୍ଳୋକ ପ୍ରହ୍ଲାଦ ଆପଣଙ୍କର ସ୍ୱଜନ ଓ ପ୍ରିୟତମ ଭକ୍ତ । ଆପଣ ତାଙ୍କର ପ୍ରଭୁ ହେଲେ ମୋର ପ୍ରଭୁଙ୍କର ପ୍ରଭୁ ହେଉଛନ୍ତି । ଆପଣ ମୋର ପୂଜ୍ୟଙ୍କ ପୂଜନୀୟ । ଆପଣଙ୍କ ଭକ୍ତରୂପେ ପ୍ରହ୍ଲାଦ ସାରା ସଂସାରରେ ସୁବିଦିତ ।"

ବାମନ ପଚାରିଲେ—"ପ୍ରହ୍ଲାଦ ଭଗବାନ୍‌ଙ୍କୁ ଭଜିକରି ନିଜ ପିତାଙ୍କଠାରୁ ଅଲଗା ହୋଇଯାଇ ଥିଲେ । ନରହରି ତାଙ୍କ ପିତାଙ୍କୁ ହତ୍ୟା କରିଥିଲେ । ସ୍ୱଜନ ବିଚ୍ଛେଦ ଘଟିବା କଣ ଭକ୍ତିର ଫଳ ?

ମହାରାଜ ବଳି ଛଳ ଛଳ ଆଖିରେ ବାମନଙ୍କୁ ଚାହିଁ କହିଲେ—"ପ୍ରଭୋ ! ଆପଣଙ୍କ ପାଦପଦ୍ମରେ ଆଶ୍ରୟ ପାଇବା ତୁଳନାରେ ସ୍ୱଜନ ବିୟୋଗ କିଛି ନୁହେଁ । ମୋର ପିତାମହ ପରମ ଜ୍ଞାନୀ ଥିଲେ । ସ୍ୱଜନଭାବେ ଜନ୍ମିତମାନଙ୍କ ଦ୍ୱାରା ନିଜର କିଛି ମହତ୍ତ୍ୱ ସାଧିତ ହୋଇପାରିବ ନାହିଁ ବୋଲି ସେ ଜାଣିଥିଲେ । ସ୍ୱଜନମାନେ ଲୌକିକ ଧନ ଅପହରଣ କରନ୍ତି, ମୋହ ବଢାନ୍ତି, ପରଲୋକ ବିନାଶ କରନ୍ତି ଏବଂ ସଂସାରରେ ବାରମ୍ବାର ଜନ୍ମନେବାକୁ ବାଧ୍ୟ କରନ୍ତି । ତେଣୁ ସ୍ୱଜନମାନେ ପରମାର୍ଥ ପଥର କଣ୍ଟକ ସଦୃଶ । ଯେଉଁ ସ୍ତ୍ରୀକୁ ଲୋକେ ପ୍ରାଣଠାରୁ ଅଧିକ ପ୍ରିୟତମ ବୋଲି

ଭିତରେ ସେ ହିଁ ଜନ୍ମ ମରଣ ରୂପକ ସଂସାରର ମୂଳ କାରଣ । ଯାହାର ମୁଣ୍ଡରେ ମୃତ୍ୟୁ ବସିଛି, ସ୍ୱଜନ ତାର କଣ କରିବେ ? ଏହା ଭାବି ମୋର ପିତାମହ ଆପଣଙ୍କର ପବିତ୍ର ପାଦପଦ୍ମର ଆଶ୍ରୟ ନେଇଥିଲେ ଏବଂ ଅସୁର ହୋଇ ମଧ୍ୟ ଅମର ହେଲେ । ସେହିପରି ମୁଁ ଆପଣଙ୍କ ପାଦପଦ୍ମର ଆଶ୍ରୟ ନେଇ ଭବସାଗରକୁ ପାରହେବି । ଆପଣଙ୍କ ପାରିଷଦମାନଙ୍କ ମଧ୍ୟରେ ମୋତେ ସ୍ଥାନ ଦେଇ ଆପଣ ମୋର କଲ୍ୟାଣ କରିଛନ୍ତି ।"

ବାମନ କହିଲେ—"ତୁମର କଲ୍ୟାଣ କଣ କଲି ? ତୁମର ସମସ୍ତ ଐଶ୍ୱର୍ଯ୍ୟ ଛଡ଼ାଇ ନେଇ ମୁଁ ତ ତୁମକୁ ଦାଣ୍ଡରେ ଭିକାରି କରାଇଛି ?"

ମହାରାଜ ବଳି ନମ୍ରତାର ସହିତ କହିଲେ—"ପ୍ରଭୋ ! ଏହି ସାଂସାରିକ ଧନ ବୈଭବର ମୂଲ୍ୟ କଣ ? ଜୀବ ଏହି ବୈଭବର ମୋହରେ ମଦୋନ୍ମତ୍ତ ହୁଏ ଓ ମୃତ୍ୟୁବରଣ କରେ । ତେଣୁ ଆପଣ ମୋର ଶତ୍ରୁ ହୋଇ ମଧ୍ୟ ମିତ୍ରର କାର୍ଯ୍ୟ କରିଛନ୍ତି । ଭାଗ୍ୟବଶତଃ ମୁଁ ଆପଣଙ୍କର ଦେବଦୁର୍ଲଭ ଦର୍ଶନ ଲାଭ କଲି । ମୁଁ ଆଜି ସଂସାରରୁ ମୁକ୍ତ ହେଲି । ଆଉ ମୋତେ ୮୪ ଯୋନିଚକ୍ରରେ ଘୂରିବାକୁ ପଡ଼ିବ ନାହିଁ । ଆପଣ ଦୟାବଶତଃ ମୋତେ କୃତାର୍ଥ କରିଛନ୍ତି ।"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ମହାରାଜ ବଳି, ଭଗବାନ୍ ବାମନଙ୍କ ଆଗରେ ଏହିପରି ବିନୟ ବଚନ କହୁଥିବା ସମୟରେ ତାଙ୍କର ପିତାମହ ମହାଭାଗବତ ପ୍ରହ୍ଲାଦ ନାତିକୁ ଦେଖିବା ପାଇଁ ବୈକୁଣ୍ଠରୁ ଆସି ସେଠାରେ ପହଞ୍ଚିଲେ ।

## ଛପ୍ପୟ

ହେ ହରି ମାତା ପିତା ସୁହୃଦ ସର୍ବସ୍ୱ ହମାରେ ।
ପକରି ପିତାମହ ତରେ, ପୋତ ପଦ ପଦ୍ମ ତିହାରେ ।।
ବନ୍ଧନ ତେଁ ନହିଁ ଡ଼ରୌଁ ନରକତେଁ ଭୟ ନହିଁ ପ୍ରଭୁବର ।
ସ୍ୱାମୀ ଦେତେବି ଦଣ୍ଡ ହୋହି ସେବକକୁଁ ସୁଖକର ।।
ବୈର ଭାବ ତେଁ ଭକ୍ତି କରି, ତରେ ଅସଂଖ୍ୟା ଅସୁରଗନ ।
ଜଗ ସୁଖ ସେତେଗ୍ୟା ଅନ୍ତ ମହଁ, ଲହେୟା ପରମ ପଦ ତ୍ୟାଗି ତନ ।।

# ପ୍ରହ୍ଲାଦଙ୍କ ଶୁଭାଗମନ

ତସ୍ୟେତ୍ଥଂ ଭାଷମାଣସ୍ୟ ପ୍ରହ୍ଲାଦୋ ଭଗବତ୍ ପ୍ରିୟଃ ।
ଆଜଗାମ କୁରୁଶ୍ରେଷ୍ଠ ରାକାପତିରିବୋତ୍ଥିତଃ ॥

( ଭା-୮-୨୨-୧୨ )

## ଛପ୍ପୟ

ବଳ ବାମନ ବତଲାଇଁ ଭୟେ ପ୍ରହ୍ଲାଦ ଉଦିତ ରବି ।
ଅରୁନ ନୟନ ପଟ ପୀତ କୃଷ୍ଣ ତନୁ ଅତି ମନହର ଛବି ॥
ନିରଖି ପିତାଶହ ନେହ ନୀର ବଲି ନୟାନନ ଛାୟୋ ।
ପୂଜା କୈସେ କରହୁଁ ବନ୍ଧେ ହୀ ଶୀଶ ନବାୟୋ ॥
ବଲି ସକୁଚ୍ୟୋ ସଂକୋଚବଶ, ବାମନ ହରି ସମ୍ମୁଖ ଖଡେ ।
ପୁଲକିତ ତନୁ ପ୍ରହ୍ଲାଦଜୀ, ଦେହି ପ୍ରସନ୍ନ ପ୍ରଭୁ ପଗ ପଡେ ॥

ଆମର ସୁଖ ଦୁଃଖରେ, ଉନ୍ନତି ଅବନତିରେ ଯେ ଆମ ସାଙ୍ଗରେ ରହେ ସେ ପ୍ରକୃତ ବନ୍ଧୁ । ନିଜ ପରିବାରରେ କୌଣସି ଉତ୍ସବ ହେଲେ, ମଙ୍ଗଳ କାର୍ଯ୍ୟ ହେଲେ ପରିବାରରେ ସମସ୍ତେ ଆନନ୍ଦିତ ହୁଅନ୍ତି । ସେହିପରି କୌଣସି ଦୁଃଖଦ ଘଟଣା ଘଟିଲେ ସମସ୍ତେ ଦୁଃଖିତ ହୁଅନ୍ତି । ସୁଖ ଦୁଃଖରେ ବାନ୍ଧିହୋଇ ରହିବା ହିଁ ସମ୍ବନ୍ଧର ଲକ୍ଷଣ । ସମ୍ବନ୍ଧ ଦୁଇ ପ୍ରକାର । ଏକରେ ଦୈହିକ ସମ୍ବନ୍ଧ ଓ ଦ୍ୱିତୀୟରେ ପାରମାର୍ଥୀକ ସମ୍ବନ୍ଧ । ମାତା ପିତାଙ୍କ ସମ୍ବନ୍ଧକୁ ଦୈହିକ ସମ୍ବନ୍ଧ କହନ୍ତି । ଆମର ଦେହ ମାତାପିତାଙ୍କ ରଜବୀର୍ଯ୍ୟରୁ ସୃଷ୍ଟି । ତେଣୁ ମାତୃସମ୍ବନ୍ଧୀୟ ମାମୁଁ, ମାଇଁ, ମଉସା ମାଉସୀ, ଅଜା, ଆଈ ଏବଂ ସେମାନଙ୍କର ପିଲାମାନେ ସମ୍ବନ୍ଧୀୟ । ସେହିପରି ପିତୃସମ୍ବନ୍ଧୀୟ । ଜେଜେ ଜେଜୀ, ଭାଇ ଭାଉଜ, ଭଉଣୀ ଭିଣୋଇ, ପିଉସା ପିଉସୀ ଓ ସେମାନଙ୍କ ପିଲାମାନେ ସମ୍ବନ୍ଧୀୟ । ନିଜର ଦେହ ସମ୍ବନ୍ଧିତ ହେଲେ ସ୍ତ୍ରୀ, ପୁତ୍ର, କନ୍ୟା, ପୌତ୍ର, ପୌତ୍ରୀ ପ୍ରଭୃତି । ଭଗବାନ୍ ଅଥବା ଗୁରୁଙ୍କ ସହିତ ସମ୍ପର୍କକୁ ପାରମାର୍ଥିକ ସମ୍ବନ୍ଧ କହନ୍ତି । ଯେଉଁମାନେ ଭଗବଦ୍ ଭକ୍ତ,

ଯାହାଙ୍କଠାରୁ ଆମେ ଶିକ୍ଷା ଦୀକ୍ଷା ଗ୍ରହଣ କରିଛୁ ସେମାନେ ଆମର ପରମାର୍ଥିକ ସମ୍ବନ୍ଧୀୟ । ଭଗବଦ୍ ଭକ୍ତ ଓ ଜ୍ଞାନୀ ଲୋକେ ସାଂସାରିକ ସୁଖକୁ ଜଳାଞ୍ଜଳି ଦେଇ ଭଗବଦ୍ ଭକ୍ତଙ୍କ ସହିତ ସମ୍ପର୍କ ସ୍ଥାପନ କରନ୍ତି । ଯେ ଭଗବଦ୍ ଭକ୍ତ ସେ ଯେ କୌଣସି ଦେଶ, ଜାତି, ବର୍ଣ୍ଣ, ଧର୍ମ ବା ରଙ୍ଗର ହେଲେ ମଧ୍ୟ ତାକୁ ନିଜର ସମ୍ବନ୍ଧୀୟ ବୋଲି ଭାବିବା, ଗ୍ରହଣ କରିବା ପ୍ରକୃତ ଭଗବଦ୍ ଭକ୍ତର କାମ୍ୟ । କିନ୍ତୁ ଯେ ଭକ୍ତ ନୁହେଁ ତାହାର କାହାରି ସହିତ ସମ୍ପର୍କ ରହେନାହିଁ । ଯଦି କାହାରି ସହିତ ପ୍ରଥମେ ଦୈହିକ ସମ୍ବନ୍ଧ ଥିବ ଓ ସେ ଭଗବଦ୍ ଭକ୍ତ ହୋଇଥିବ ତେବେ ତାହା ହେବ ସବୁଠୁ ମହତ୍ତ୍ୱପୂର୍ଣ୍ଣ ଓ ଗୁରୁତ୍ୱପୂର୍ଣ୍ଣ ସମ୍ପର୍କ । ଏ ପ୍ରକାର ସମ୍ପର୍କ ସଂସାରରେ କ୍ୱଚିତ୍ ଦେଖାଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାଭାଗବତ, ବିଷ୍ଣୁପାରିଷଦ ଭକ୍ତ ପ୍ରହ୍ଲାଦ ଯେତେବେଳେ ଶୁଣିଲେ ଭଗବାନ୍ ସ୍ୱୟଂ ତାଙ୍କର ପୌତ୍ର ପ୍ରତି କୃପା ପ୍ରଦର୍ଶନ କରିଛନ୍ତି ସେତେବେଳେ ସେ ନିଜେ ପୌତ୍ରକୁ ଦେଖିବା ପାଇଁ ଆସିଲେ । ଭଗବାନ ବଟୁବାମନ ରୂପରେ ମହାରାଜ ବଳିଙ୍କୁ ଦର୍ଶନ ଦେଇଛନ୍ତି ବୋଲି ଜାଣି ପ୍ରହ୍ଲାଦ, ପ୍ରଭୁଙ୍କ ଦର୍ଶନ କରିବା ପାଇଁ ଏବଂ ପୌତ୍ରର ସୌଭାଗ୍ୟକୁ ପ୍ରଶଂସା କରିବା ପାଇଁ ବୈକୁଣ୍ଠରୁ ଆସି ପହଞ୍ଚିଲେ । ତାଙ୍କର ଆସିବାର କୌଣସି ସମ୍ଭାବନା ନଥିଲା । ତଥାପି ପୂର୍ଣ୍ଣିମା ଦିନ ପୂର୍ଣ୍ଣଚନ୍ଦ୍ର ଆକାଶରେ ବିରାଜିତ ହେଲାପରି ପ୍ରହ୍ଲାଦ ଆବିର୍ଭୂତ ହେଲେ । ବିଷ୍ଣୁଙ୍କ ପାରିଷଦ ମଧ୍ୟରେ ସେ ଥିଲେ ଅନ୍ୟତମ । ତାଙ୍କର ଶୋଭା ଅବର୍ଣ୍ଣନୀୟ । ତାଙ୍କ ଦେହ ଉନ୍ନତ, କମନୀୟ, ଚିକ୍କଣ ଓ ଶାରଦୀୟ ଚନ୍ଦ୍ର ପରି ଶାନ୍ତି ସୁଷମାନ୍ୱିତ ଥିଲା । ସେ ପୀତବସନ ପରିଧାନ କରିଥିଲେ । ଦେଦୀପ୍ୟମାନ କୃଷ୍ଣକାନ୍ତ ମଣି ପରି ତାଙ୍କ ଦେହର ବର୍ଣ୍ଣ ଶ୍ୟାମକାନ୍ତିଯୁକ୍ତ ଥିଲା । ତାଙ୍କ ବିଶାଳ ବାହୁରେ ବିଷ୍ଣୁପାରିଷଦବର୍ଗଙ୍କ ଅସ୍ତ୍ର ଶସ୍ତ୍ର ଶୋଭାପାଉଥିଲା । ପ୍ରସ୍ଫୁଟିତ କମଳ ସଦୃଶ ନୟନରେ ସେ ଚାରିଆଡ଼କୁ ଏପରିଭାବେ ଚାହୁଁ ଥିଲେ ଯେ ତାଙ୍କ ଦୃଷ୍ଟିର ରସମୟ ଆଭା ଚତୁର୍ଦ୍ଦିଗକୁ ବିଚ୍ଛୁରିତ ହେଉଥିଲା । ତାଙ୍କର ଲାବଣ୍ୟ ପରିପୂର୍ଣ୍ଣ ମୁଖମଣ୍ଡଳରୁ ମନ୍ଦ ମନ୍ଦ ହସ ରୂପ କିରଣାବଳୀ ଛିଟିକି ପଡୁଥିଲା ।

ପୂର୍ବରୁ ଯେବେ ପ୍ରହ୍ଲାଦ ପୌତ୍ର ପାଖକୁ ଆସୁଥିଲେ ସେତେବେଳେ ମହାରାଜ ବଳି ଶ୍ରଦ୍ଧାର ସହିତ ତାଙ୍କୁ ଷୋଡ଼ଶ ଉପଚାରରେ ପୂଜା କରୁଥିଲେ । କିନ୍ତୁ ଆଜି ସେ ବରୁଣ ପାଶରେ ଆବଦ୍ଧ । ଏ ଅବସ୍ଥାରେ କିପରି ପୂଜା କରିବେ । ଆଗରୁ ସୁବର୍ଣ୍ଣମୟ ରାଜସିଂହାସନରେ ବସାଇ ପ୍ରହ୍ଲାଦଙ୍କୁ ସେ ପୂଜା କରୁଥିଲେ ଓ ତାଙ୍କ ପାଦତଳେ ଲୋଟି ପଡ଼ୁଥିଲେ । କିନ୍ତୁ ଆଜି ତ ଆଉ ତାଙ୍କର କିଛି ନାହିଁ ।

ବଟୁବାମନ ତାଙ୍କର ସର୍ବସ୍ୱ ନେଇ ଯାଇଛନ୍ତି । ନିଜର ଅବସ୍ଥା ଚିନ୍ତା କରି ମହାରାଜ ବଳି ଲଜ୍ଜିତ ହୋଇପଡ଼ିଲେ । ସ୍ନେହ, ଲଜ୍ଜା ଓ ସଙ୍କୋଚ ହେତୁ ତାଙ୍କ ନେତ୍ରଦ୍ୱୟ ଲୋତକାପ୍ଳୁତ ହୋଇଉଠିଲା । ଅଶ୍ରୁଳ ନୟନରେ ସେ ପିତାମହଙ୍କୁ କେବଳ ପ୍ରଣାମ ଜଣାଇଲେ ।

ଭକ୍ତ ପ୍ରହ୍ଲାଦ ଆଗରେ ପୌତ୍ର ବଳି ଓ ନିଜର ସ୍ୱାମୀ ଭଗବାନ ବାମନଙ୍କୁ ଦେଖି ପୁଲକିତ ଶରୀର ଓ ଅଶ୍ରୁଳ ନୟନରେ ପ୍ରଭୁଙ୍କ ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ କଲେ । ପୁଣି ହାତଯୋଡ଼ି ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ତାଙ୍କ ଆଗରେ ଦୁଇଟି କର୍ତ୍ତବ୍ୟ ଥିଲା—ପୌତ୍ରକୁ ସାନ୍ତ୍ୱନା ଓ ଉପଦେଶ ଦେବା ଏବଂ ଭଗବାନଙ୍କୁ ସ୍ତୁତି କରିବା । ନିଜର ପୌତ୍ରକୁ ଶୁଣାଇ ଭଗବାନଙ୍କ ଭକ୍ତ-ବତ୍ସଳତାର ପ୍ରଶଂସା କରିବାକୁ ଯାଇ ପ୍ରହ୍ଲାଦ କହିଲେ—"ଭଗବନ୍ ! ମହାରାଜ ବଳି ଆପଣଙ୍କୁ ସର୍ବସ୍ୱ ଦାନ କରିପାରି ଥିବାରୁ ମନରେ ଅଭିମାନ କରିଛି । ତା'ର ସେ ଅଭିମାନ ନିରର୍ଥକ । ଆପଣ ତାକୁ ଇନ୍ଦ୍ରପଦ ଦେଇଥିଲେ । ଏବେ ତାକୁ ଅଯୋଗ୍ୟ ବୋଲି ମନେ କରି ସେହି ପଦ ଆପଣ ଛଡ଼ାଇନେଲେ । ଐଶ୍ୱର୍ଯ୍ୟଶାଳୀ ଇନ୍ଦ୍ରପଦରୁ ତାକୁ ଅଲଗା କରିଦେଲେ । ଏ ବିଷୟରେ ତା'ର ଲଜ୍ଜିତ ହେବାର କୌଣସି କାରଣ ନାହିଁ । ଆପଣ ହିଁ ତା' ପ୍ରତି ସଦୟ ହୋଇ ମୋହଗ୍ରସ୍ତ କରୁଥିବା ରାଜ୍ୟଲକ୍ଷ୍ମୀଠାରୁ ତାକୁ ପୃଥକ କରି ଦେଇଛନ୍ତି । ଆଖି ଥାଉଁ ଥାଉଁ ଏହି ରାଜ୍ୟଲକ୍ଷ୍ମୀ ମଣିଷକୁ ଅନ୍ଧ କରିଦିଏ । ଏହାଦ୍ୱାରା ମଦ୍ୟପାନ ନ କରି ମଧ୍ୟ ବ୍ୟକ୍ତି ମଦୋନ୍ମତ୍ତ ହୋଇପଡ଼େ, ଜ୍ଞାନୀ ଅଜ୍ଞାନ ହୁଏ ଓ ସ୍ଥିତପ୍ରଜ୍ଞ ବି ପ୍ରମାଦଗ୍ରସ୍ତ ହୋଇପଡ଼େ । ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ଏହାର ମାୟାରେ ମୋହିତ ହୋଇଯାଆନ୍ତି । ଏପରି ଲକ୍ଷ୍ମୀକୁ ତା'ଠାରୁ ବାହାର କରିନେଇ ଆପଣ ବିଶେଷ ଅନୁଗ୍ରହ ପ୍ରକାଶ କରିଛନ୍ତି । ଅନୁଗ୍ରହାବତାର, ଭକ୍ତବତ୍ସଳ, ବାମନ ରୂପଧାରୀ ଭଗବାନ୍ ବିଷ୍ଣୁଙ୍କ ପାଦପଦ୍ମତଳେ ମୁଁ ବାରମ୍ବାର ପ୍ରଣାମ ଜଣାଉଛି ।"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ପ୍ରହ୍ଲାଦଙ୍କ ଉପସ୍ଥିତି ହେତୁ ସେଠାରେ ଏକ ମହାସମାରୋହ ସୃଷ୍ଟି ହେଲା । ଭଗବାନ ବାମନ ନିଜର ପାରିଷଦ ନନ୍ଦ ସୁନନ୍ଦାଦିଙ୍କଦ୍ୱାରା ପରିବେଷ୍ଟିତ ଥିଲେ । ଅନ୍ୟାନ୍ୟ ଦେବଗଣ ମଧ୍ୟ ଉପସ୍ଥିତ ଥିଲେ । ସମସ୍ତଙ୍କ ଆଗରେ ଥିଲେ ପିତାମହ ବ୍ରହ୍ମା । ମହାରାଜ ବଳିଙ୍କ ପ୍ରଧାନ ସେନାପତିଗଣ ନତମୁଖ ହୋଇ ଉପସ୍ଥିତ ଥିଲେ । ମହାରାଜ ବଳିଙ୍କ ପାଖରେ ପ୍ରହ୍ଲାଦ ହାତଯୋଡ଼ି ଦଣ୍ଡାୟମାନ ଥିଲେ । ଦେବଗଣ ପ୍ରସନ୍ନ ଥିବାବେଳେ ଅସୁର-

ଗଣ ଦୁଃଖିତ ଥିଲେ । କିନ୍ତୁ ମନସ୍ୱୀ, ପରମଜ୍ଞାନୀ ବଳିଙ୍କ ମନରେ ଦୁଃଖ ନଥିଲା କି ସୁଖ ନ ଥିଲା । ତାଙ୍କ ଚିତ୍ତ ସମ ଅବସ୍ଥାରେ ଅବସ୍ଥିତ ଥିଲା । ସେ ଭଗବାନ୍‌ଙ୍କ ପାଦପଦ୍ମକୁ ଚାହିଁଥିଲେ । ହୃଦୟ ତାଙ୍କର ପୁଲକିତ ହେଉଥିଲା ଓ ଦୁଇ ନୟନରୁ ପ୍ରେମର ଅଶ୍ରୁଧାରା ପ୍ରବାହିତ ହେଉଥିଲା । ଭଗବତ୍ ଦର୍ଶନରେ ତାଙ୍କର ତୃପ୍ତି ଆସୁ ନଥିଲା । ଭକ୍ତ ପ୍ରହ୍ଲାଦ ସ୍ତୁତି କରିବାର ଦେଖି ପିତାମହ ବ୍ରହ୍ମା ଭଗବାନ୍‌ଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ନିଜର ପିତାମହ ଶ୍ୱଶୁର ପ୍ରହ୍ଲାଦଙ୍କୁ ଦେଖି ରାଣୀ ବିନ୍ଧ୍ୟାବଳୀ ଓଢ଼ଣା ଟାଣି ଦେଇଥିଲେ । କାରଣ ଶ୍ୱଶୁରଙ୍କ ସମ୍ମୁଖରେ ବଧୂ କିଛି କହିବା ସଦାଚାର ବିରୁଦ୍ଧ । କିନ୍ତୁ ଭଗବାନ୍ ତ ସମସ୍ତଙ୍କର ପିତାମାତା । ତାଙ୍କୁ ଲଜ୍ଜା କରିବାର କୌଣସି କାରଣ ନାହିଁ । ତେଣୁ ସେ ଓଢ଼ଣା ଟିକିଏ ଟେକାଇ ପ୍ରହ୍ଲାଦଙ୍କୁ ମୁହଁ ଲୁଚାଇ ଭଗବାନ୍‌ଙ୍କ ଆଡ଼କୁ ଚାହିଁ ରହିଲେ । ଲୋକ ପିତାମହ ବ୍ରହ୍ମା ଯେ କିଛି କହିବା ପାଇଁ ଠିଆ ହୋଇଛନ୍ତି ତାହା ବିନ୍ଧ୍ୟାବଳୀ ଦେଖିପାରି ନଥିଲେ । ମହାରାଣୀ ବିନ୍ଧ୍ୟାବଳୀ କିଛି କହିବା ପାଇଁ ଉଦ୍ୟତ ହେବାର ଦେଖି ବ୍ରହ୍ମା ପୁଣି ନୀରବରେ ବସିପଡ଼ିଲେ । ପ୍ରାଚୀନ କାଳର ପରମ୍ପରା ଅନୁସାରେ ଜଣେ ସ୍ତ୍ରୀଲୋକ ଆସୁଥିଲେ ତାଙ୍କ ଆଗରୁ ଦୂରେଇଯିବା ଉଚିତ । ବାହନ ଉପରେ ପ୍ରଥମେ ସ୍ତ୍ରୀଲୋକମାନଙ୍କୁ ସ୍ଥାନଦେବା କର୍ତ୍ତବ୍ୟ । ସବୁ ସ୍ଥାନରେ ଲଜ୍ଜାବତୀ ନାରୀମାନଙ୍କୁ ଯଥାର୍ଥ ସମ୍ମାନ ଦେବା ଉଚିତ । କାରଣ ସ୍ତ୍ରୀସୁଲଭ ସ୍ୱଭାବ ହେତୁ ସେ ମୁହଁ ଖୋଲି କୌଣସି ବସ୍ତୁ ମାଗନ୍ତି ନାହିଁ କି କୌଣସି କଥା ଉପରେ ଜୋର ଦେଇ କହିପାରନ୍ତି ନାହିଁ । ସେମାନଙ୍କର ଧନ ହେଉଛି ଲଜ୍ଜା ଓ ଶୀଳ ହେଉଛି ଭୂଷଣ । ନାରୀକୁ ଆଦର କରିବା, ସମ୍ମାନ ଦେବା ଓ ସୁରକ୍ଷିତ ରଖିବା ପ୍ରତ୍ୟେକ ବ୍ୟକ୍ତିର ପରମ ଧର୍ମ । ସ୍ତ୍ରୀ ଲୋକମାନେ ଯେଉଁଠି ସମ୍ମାନିତ ଓ ପୂଜିତ ହୁଅନ୍ତି ସେଠାରେ ଲକ୍ଷ୍ମୀ ବାସକରନ୍ତି । ବ୍ରହ୍ମା କେତେବେଳେ ଉଠିଲେ ଓ ପୁଣି ବସିଲେ ତାହା ବିନ୍ଧ୍ୟାବଳୀ ଜାଣି ନଥିଲେ । ନିଜର ପିତାଙ୍କୁ ବରୁଣ ପାଶରେ ବନ୍ଧା ହୋଇଥିବାର ଦେଖି ସେ ମୁଣ୍ଡ ତଳକୁ କରିଥିଲେ । ଭୟବ୍ୟାକୁଳ ହୃଦୟରେ ବିନୀତ ଭାବେ ବିନ୍ଧ୍ୟାବଳୀ କହିବାକୁ ଆରମ୍ଭ କଲେ ।

"ପ୍ରଭୋ ! ଆପଣ ଅଖିଳ ଜଗତର ଏକମାତ୍ର ଅଧୀଶ୍ୱର । ଅନ୍ୟ କାରଣରୁ ନୁହେଁ କେବଳ ଖେଳିବା ନିମିତ୍ତ ଆପଣ ଏ ଜଗତ୍ ରଚନା କରିଛନ୍ତି । ଯେତେବେଳେ ଇଚ୍ଛା ହୁଏ ସେତେବେଳେ ଏହି ତ୍ରିଗୁଣାତ୍ମକ ଜଗତକୁ ତିଆରି କରନ୍ତି, ତାକୁଇ ନେଇ ଖେଳନ୍ତି ଏବଂ ଖେଳୁ ଖେଳୁ ବିରକ୍ତ ହେଲେ ସେ ସବୁକୁ ଭାଙ୍ଗନ୍ତି । ତିଆରି କରିବାରେ ଆସକ୍ତି ନାହିଁ କି ଭାଙ୍ଗିଦେବାରେ ଦୁଃଖ ନାହିଁ । ଲୀଳା ରଚିତ

ଜଗତ୍ ପ୍ରତି ମମତା ଥିଲେ ହିଁ ନିଜକୁ ପ୍ରଭୁ ରୂପେ ଗ୍ରହଣ କରାଯାଇ ପାରିବ । ମୋର ସ୍ୱାମୀ ଯଦି ମନରେ ଭାବୁଛନ୍ତି ଯେ, ମୁଁ ତିନିଲୋକର ପ୍ରଭୁ । ଏସବୁ ମୋର ଏବଂ ମୁଁ ଏହା ବାମନଙ୍କୁ ଦାନ ଦେଉଛୁ, ତେବେ ଏପରି ଭାବିବା ମୋ' ସ୍ୱାମୀଙ୍କ ପକ୍ଷରେ ଉଚିତ ହୋଇନାହିଁ ବୋଲି ମୁଁ କହିବି । କାରଣ, ଆପଣ ତ ସମସ୍ତଙ୍କୁ ଦିଅନ୍ତି, ଆପଣଙ୍କୁ କିଏ କ'ଣ ଦେଇପାରିବ ? ନିଜର ଜିନିଷ କିଛି ଥିଲେ ଜଣେ ଦେଇପାରିବ । ଆପଣ ତ ସବୁରି ପ୍ରଭୁ, ସର୍ବେଶ୍ୱର । ସବୁ ବସ୍ତୁ ଯେତେବେଳେ ଆପଣଙ୍କର ସେତେବେଳେ ଅନ୍ୟ କେହି କାହାକୁ କଣ ସମର୍ପଣ କରିପାରିବ ? ଏଣୁ ମୋର ସ୍ୱାମୀ ଆପଣଙ୍କୁ କିଛି ଦେଇନାହାନ୍ତି କି ଦେଇପାରିବେ ନାହିଁ । ସବୁ ଆପଣଙ୍କର । ଆପଣ ସବୁରି ପ୍ରଭୁ । ଆପଣ ନିଜ ଜିନିଷ ସମ୍ଭାଳନ୍ତୁ । ମୋର ସ୍ୱାମୀଙ୍କୁ ଏପରି ଧାରଣା ଦିଅନ୍ତୁ ନାହିଁ ଯାହାଦ୍ୱାରା ସେ କହିବେ ମୁ ଦେବି । ଆପଣଙ୍କ ଅଭିଳାଷ ପୂରଣ କରିବି । ପୂର୍ଣ୍ଣକାମ ଆପଣଙ୍କର ଇଚ୍ଛା ବୋଲି କିଛି କଣ ଅଛି ?"

ଏହା କହିସାରି ବିନ୍ଧ୍ୟାବଳୀ ନୀରବ ହୋଇ ବସିଲେ । ଏହାପରେ ବ୍ରହ୍ମା ଠିଆହୋଇ କହିଲେ—"ହେ ଦେବଦେବ ! ହେ ଭୂତଭାବନ ଭୁବନେଶ୍ୱର ! ବଳିକୁ ବାନ୍ଧି ପକାଇବା ଆପଣଙ୍କ ପକ୍ଷରେ ଉଚିତ ହୋଇନାହିଁ । ସେ କି ଅପରାଧ କରିଛି ଆପଣଙ୍କ ପାଖରେ ? କେଉଁ ଅଭିଯୋଗ କାରଣରୁ ତାକୁ ବନ୍ଦୀ କରାଯାଇଛି । ସେ ନିଜର ସର୍ବସ୍ୱ ଆପଣଙ୍କୁ ସମର୍ପଣ କଲା ତେଣୁ ସେ ଦଣ୍ଡଯୋଗ୍ୟ ନୁହେଁ ବରଂ ଆପଣଙ୍କର କୃପା ଯୋଗ୍ୟ । ହେ ଦୟାଳୋ ! ଏହି ଦୁଃଖୀ, ଦୀନ, ଦୈତ୍ୟ ପ୍ରତି ସଦୟ ହୁଅନ୍ତୁ । ଆପଣଙ୍କ ଶ୍ରୀଚରଣ କମଳ ତଳେ ତାକୁ ଆଶ୍ରୟ ଦିଅନ୍ତୁ । ଆଙ୍ଗୁଳିଏ ଭୂମି ଦାନ କାରଣରେ ଦେବାକୁ ଲୋକେ କୁଣ୍ଠିତ ହେଲାବେଳେ ମହାରାଜ ବଳି ସ୍ୱେଚ୍ଛାରେ, ଆନନ୍ଦରେ ସମ୍ପୂର୍ଣ୍ଣ ପୃଥିବୀ ଆପଣଙ୍କୁ ଦେଇଛନ୍ତି । ପୁଣ୍ୟବଳରେ ଅର୍ଜିତ ସ୍ୱର୍ଗାଦି ସମସ୍ତ ଲୋକ ଦ୍ୱିତୀୟ ପାଦର ଭୂମି ରୂପେ ଆପଣଙ୍କୁ ସେ ଦାନ କରିଛନ୍ତି । ଆପଣଙ୍କ ତୃତୀୟ ପାଦ ପାଇଁ ସେ ନିଜର ମସ୍ତକ ନତ କରି ପୂର୍ଣ୍ଣତ ଶରୀରକୁ ସମର୍ପି ଦେଇଛନ୍ତି । ତଥାପି ଆପଣ ତାଙ୍କୁ ବାନ୍ଧିଛନ୍ତି କାହିଁକି ? ତାଙ୍କୁ ଏପରି ଦୁଃଖ ଦେବାର କାରଣ କଣ ? ସେ ଆପଣଙ୍କ ଚରଣାମୃତ ଶ୍ରଦ୍ଧାର ସହିତ ମସ୍ତକରେ ଧାରଣ କରିଛନ୍ତି । ସେ ଜଣେ ପୁଣ୍ୟଶ୍ଳୋକ, ପୁଣ୍ୟାତ୍ମା ପୁରୁଷ । ପାପୀମାନେ ଆପଣଙ୍କ ପାଦୋଦକ ପାନ କରି ପରମ ପୁଣ୍ୟପଦ ଲାଭ କରୁଛନ୍ତି । ତେଣୁ ବଳିଙ୍କର ଅଶୁଭ କେବେ ଶେଷ ହେବ ? ଆପଣଙ୍କ ଚରଣରେ ଚୁଳୁଏ ଜଳ, ତୁଳସୀ ଜଳ ବା ଗୋଟିଏ ଦୁଇଟି ଫୁଲ ଦେଉଥିବା ଲୋକ ସଂସାର ସାଗରରୁ ମୁକ୍ତ ହୋଇ ଯାଉଥିବା ବେଳେ ସର୍ବସ୍ୱ ସହିତ ନିଜକୁ ସମର୍ପଣ କରିଥିବା ସାଧୁଶ୍ରେଷ୍ଠ ବଳି ବନ୍ଦୀ ହେଲେ କାହିଁକି ?"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଲୋକପିତାମହ ବ୍ରହ୍ମାଙ୍କ କଥା ଶୁଣି ଭଗବାନ୍ ବାମନ ହସି ହସି ଉତ୍ତର ଦେବାକୁ ଲାଗିଲେ ।

## ଛପ୍ପୟ

ପୁନ ବୋଲେ ପ୍ରହଲାଦ ପ୍ରଭୁ ସ୍ୱୟଂ ଅତି ଭଲ କୀନ୍ହୋ ।
ଦୟୋ ଇନ୍ଦ୍ରପଦ ଆପୁ ଆପୁ ହୀ ପୁନ ହର ଲୀନ୍ହୋ ॥
ଧନ ବୈଭବ ମେ କହାଁ ହୋହି ତବ ଚରନନ ମହଁ ରତି ।
ଧନ ମଦ ମହଁ ମଦମତ୍ତ କରେଁ ନର ଅଘ ଅତି କତ ପ୍ରତି ॥
ବନତ କର ପ୍ରହଲାଦ ଜୀ, ପୁନ କୀୟୋ ଚରନନ ନମନ ।
ତବ ବନ୍ଧ୍ୟାବଲୀ ବଲପ୍ରିୟା, ବିନୟ ସହିତ ବୋଲୀ ବଚନ ॥



# ଧନୀକର ପ୍ରଭୁଙ୍କ ପ୍ରତି ଅପମାନ

ବ୍ରହ୍ମନ୍ ଯମନୁଗୃହ୍ଣାମି ତଦ୍ବିଶୋ ବିଧୁନୋମ୍ୟହମ୍ ।
ଯନ୍ମଦଃ ପୁରୁଷଃ ସ୍ତବ୍ଧୋ ଲୋକଂ ମାଂ ଚାବମନ୍ୟତେ ॥
(ଭା-୮-୨୨-୨୪)

## ଛପ୍ପୟ

କର୍ତ୍ତା ଭର୍ତ୍ତା ଔର ଜଗତ୍ କେ ହର୍ତ୍ତା ତୁମ ହରି ।
ଅଜ୍ଞ ସହେଁ ଦୁଖ ବ୍ୟର୍ଥ ରାଜ ଧନ ମହଁ ମମତା କରି ॥
କା ହମ ଦୀନ୍ହ୍ୟୋ ଦେବ ଆପ ଅପନୋ ସ୍ୱୀକାର୍ୟୋ ।
ଯ୍ୟୋଁ କହି ବୈଠୀ ସତୀ ଫେରି ବିଧି ବଚନ ଉଚାର୍ୟୋ ॥
ବିଧି ବୋଲେ—ବିଶ୍ୱେଶ ବିଭୁ, ବଲି ସରବସୁ ଅରପନ କର୍ୟୋ ।
ଫିର ଉଦାର ଯଶ ଅସୁର କୁଁ, ବନ୍ଧନ କରି କୈଁ ଦୁଖ ଦୟୋ ॥

ଲୋକେ ସ୍ୱାର୍ଥର ହାନିକୁ ବିପତ୍ତି ଓ ସ୍ୱାର୍ଥସିଦ୍ଧିକୁ ସମ୍ପତ୍ତି କହନ୍ତି । ଶ୍ରୀହରିଙ୍କ ପାଦପଦ୍ମ ଲାଭ ହିଁ ଜୀବନରେ ସବୁଠାରୁ ବଡ଼ ସ୍ୱାର୍ଥ । ଶ୍ରୀହରି ହେଉଛନ୍ତି ଶ୍ରେଷ୍ଠ ଧନ । ଶ୍ରୀହରିଙ୍କୁ ଭୁଲିଯାଇଥିବା ଲୋକ ସବୁଠୁ ନିର୍ଦ୍ଧନ । ଯାହା ହୃଦୟରେ ସର୍ବଦା ହରି-ସ୍ମୃତି ଜାଗ୍ରତ ଅଛି ସେ ସର୍ବଶ୍ରେଷ୍ଠ ଧନୀ । ଭୋଗ୍ୟବସ୍ତୁର ଦୁର୍ଲଭତା, ନଶ୍ୱର ଦେହରେ ନାନା ପ୍ରକାର ରୋଗ ଜାତହେବା, ସ୍ୱଜନ ବିୟୋଗ ପ୍ରଭୃତିକୁ ବିପଦ କୁହାଯାଏ ନାହିଁ । ମନରୁ ଶ୍ରୀହରିଙ୍କ ବିସ୍ମରଣ ହେଉଛି ସବୁଠୁ ବଡ଼ ବିପଦ । ଶ୍ରୀହରି ସ୍ମରଣ ରୂପକ ସମ୍ପତ୍ତି ଯାହାର ଅଛି ନିର୍ଦ୍ଧନ ହୋଇଥିଲେ ବି ସେ ପ୍ରକୃତ ଧନୀ । ନୀଚ ହୋଇଥିଲେ ବି ସେ ଶ୍ରେଷ୍ଠ ଏବଂ କନିଷ୍ଠ ହୋଇଥିଲେ ବି ସେ ଜ୍ୟେଷ୍ଠରୂପେ ପରିଗଣିତ ହୁଏ । କିନ୍ତୁ ଯାହାର ହୃଦୟରେ ନାରାୟଣଙ୍କ ସ୍ମୃତି ନାହିଁ ସେ ଯେତେବଡ଼ ଧନୀ ହେଲେ ବି ନିର୍ଦ୍ଧନ, ଭାଗ୍ୟବାନ୍ ହୋଇଥିଲେ ବି ହତଭାଗ୍ୟ ଏବଂ ଐଶ୍ୱର୍ଯ୍ୟଶାଳୀ ହୋଇଥିଲେ ବି ଦରିଦ୍ରରୂପେ ବିବେଚିତ ହୁଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଚତୁର୍ମୁଖ ବ୍ରହ୍ମା ମହାରାଜ ବଳିଙ୍କୁ ମୁକ୍ତ କରିଦେବା ପାଇଁ ଯେତେବେଳେ ଭଗବାନ୍ ବାମନଙ୍କୁ ପ୍ରାର୍ଥନା କଲେ ସେତେବେଳେ ଭଗବାନ୍ କହିଲେ—"ବଳିକୁ ମୁଁ କଷ୍ଟ ଦେଉନାହିଁ । ମୁଁ ତା' ପ୍ରତି ଦୟା ପ୍ରଦର୍ଶନ କରୁଛି ।"

ବ୍ରହ୍ମା ପଚାରିଲେ—"ପ୍ରଭୋ ! ଦୟା କଣ ଏହିପରି କରାଯାଏ ? ଆପଣ ତା'ର ସର୍ବସ୍ୱ ହରଣ କଲେ । ତିନିଲୋକର ଆଧିପତ୍ୟ ଛଡ଼େଇ ନେଲେ । କପଟ ବାମନ ବେଶରେ ଦାନ ମାଗିଲେ ଆଉ ବିରାଟ ପୁରୁଷ ହୋଇ ଦାନ ଗ୍ରହଣ କଲେ । ପୁଣି ଯଶସ୍ୱୀ ଅସୁରରାଜଙ୍କୁ ବରୁଣ ପାଶରେ ବାନ୍ଧିଲେ ଏବଂ ସର୍ବସମକ୍ଷରେ ସଭାରେ ଅପମାନ ଦେଲେ । ଏହାଠାରୁ ବଳି ଆଉ ଦୁଃଖଦାୟକ ଘଟଣା କଣ ଥାଇପାରେ ?"

ଭଗବାନ୍ ବାମନ କହିଲେ—"ବ୍ରହ୍ମନ୍ ! ଧନର ଏପରି ମାୟା ଅଛି ଯେ ଲୋକେ ଧନମଦରେ ମତ୍ତହୋଇ ସମସ୍ତଙ୍କୁ ଏପରି କି ମୋତେ ମଧ୍ୟ ଅପମାନିତ କରିବାକୁ ପଶ୍ଚାତ୍ପଦ ହୁଅନ୍ତି ନାହିଁ । ଧନୀ ଲୋକେ ନାରାୟଣଙ୍କୁ ମଧ୍ୟ ଖାତିର କରନ୍ତି ନାହିଁ । ସେମାନେ କାହାରିକୁ ପ୍ରେମ କରିପାରନ୍ତି ନାହିଁ । ଯେଉଁମାନେ ସୁନା,ରୁପା, କାଗଜ ଟଙ୍କାକୁ ଆଦର କରନ୍ତି ସେମାନେ ଚୈତନ୍ୟକୁ କିପରି ପ୍ରେମ କରିପାରିବେ ? ସେମାନଙ୍କ ପ୍ରେମ ସ୍ୱାର୍ଥପ୍ରଣୋଦିତ । ସେମାନେ ଧନକୁ ସର୍ବସ୍ୱ ମନେକରନ୍ତି ଏବଂ ସର୍ବଦା ନିର୍ଦ୍ଧନଙ୍କୁ ଅପମାନିତ କରନ୍ତି ।

ମହର୍ଷି ଶୌନକ ପଚାରିଲେ—ହେ ସୂତ ! ଲକ୍ଷ୍ମୀ ତ ନାରାୟଣଙ୍କ ପତ୍ନୀ । ଲକ୍ଷ୍ମୀ ଯେଉଁମାନଙ୍କ ପାଖରେ ଅଛନ୍ତି ସେମାନେ ଏତେ କ୍ରୂର ହୁଅନ୍ତି କିପରି ? ସେମାନେ ଭଗବାନ୍‌ଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରନ୍ତି କାହିଁକି ?

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ଭଗବନ୍ ! ଲକ୍ଷ୍ମୀଙ୍କର ଦୁଇଟି ରୂପ ଅଛି । ତାଙ୍କର ଗୋଟିଏ ରୂପ ବିଷ୍ଣୁବଲ୍ଲଭା ରୂପ । ବିଷ୍ଣୁବଲ୍ଲଭା ରୂପେ ସେ ସାକ୍ଷାତ୍ ଚୈତନ୍ୟ ସ୍ୱରୂପ ବିଷ୍ଣୁଙ୍କ ବକ୍ଷ ସ୍ଥଳରେ ସର୍ବଦା ବିହାର କରନ୍ତି । ତାଙ୍କର ଦ୍ୱିତୀୟ ରୂପ ହେଉଛି ଧନରୂପ । ଧନରୂପରେ ବା ଜଡ଼ ରୂପରେ ସେ ସମଗ୍ର ସଂସାରରେ ପରିବ୍ୟାପ୍ତ । ଧନସ୍ୱରୂପିଣୀ ଲକ୍ଷ୍ମୀ ଅହଙ୍କାର ଓ ଆକର୍ଷଣର କାରଣ । ସଂସାରରେ ଚାରୋଟି ନିନ୍ଦିତ କାର୍ଯ୍ୟ ଅଛି । ସେଗୁଡ଼ିକ ହେଉଛି ଅଧର୍ମପୂର୍ବକ ଦ୍ୟୁତ, ଅଧର୍ମପୂର୍ବକ ସୁରାପାନ, ଅଧର୍ମପୂର୍ବକ ମୈଥୁନ ଓ ଅଧର୍ମପୂର୍ବକ ହିଂସା ଆଚରଣ । ଏହି ଚାରୋଟିଠାରୁ ବଳି ପାପ କାର୍ଯ୍ୟ ଆଉ ନାହିଁ । ଜୁଆ ଖେଳିବା ବିଶେଷ ଦୋଷାବହ ନୁହେଁ । କିନ୍ତୁ ଏଥିରେ ବଡ଼ ଅପରାଧ ହେଉଛି, ଖେଳିବା ବ୍ୟକ୍ତି ସତ୍ୟପାଳନ କରେ-

ନାହିଁ । ସେ ମିଥ୍ୟା କହିବା ପାଇଁ ବାଧ୍ୟ । ମିଥ୍ୟା ସମସ୍ତ ପାପର ମୂଳ । ସୁରାପାନରେ ପ୍ରଧାନ ଅପରାଧ ହେଉଛି ଏଥିରେ ଅହଙ୍କାର ବଢ଼ିଯାଏ । ମଦ୍ୟପମତ୍ତ ହୋଇ ମଣିଷ ନାନାକଥା ବକଥାଏ । ମଦ୍ୟପାୟୀ ନିଜକୁ ଭୁଲିଯାଏ । ସେପରି ମୈଥୁନରେ ସବୁଠୁ ବଡ଼ ଦୋଷ ହେଉଛି ତୃଷ୍ଣାବୃଦ୍ଧି । ଏଥିରେ କାମତୃଷ୍ଣା ବଢ଼ିଗଲେ, କେବେହେଲେ ତୃପ୍ତି ଆସେ ନାହିଁ । ଉପଭୋଗ ପାଇଁ ଇଚ୍ଛା ଅଧିକରୁ ଅଧିକ ପ୍ରବଳ ହୁଏ । ଚତୁର୍ଥରେ ଶରୀରର ପରିପୁଷ୍ଟି ପାଇଁ, ମାଂସ ଭକ୍ଷଣ ପାଇଁ ଜୀବ ହତ୍ୟା କରିବା ଓ କରେଇବା ଦ୍ୱାରା ରଜୋଗୁଣ ବୃଦ୍ଧିପାଏ । ତେଣୁ ମାଂସାହାରୀମାନେ ସାତ୍ତ୍ୱିକଭାବାପନ୍ନ ହେବା ସମ୍ଭବ ନୁହେଁ ।

ଦ୍ୟୁତ, ମଦ୍ୟପାନ, କାମିନୀ ଉପଭୋଗ ଓ ହିଂସା ଆଚରଣ ଏହି ଚାରୋଟି ବଳାସରେ ଯଥାକ୍ରମେ ମିଥ୍ୟା, ଅହଙ୍କାର, କାମ ଓ ରଜୋଗୁଣ ଦୋଷ ଥାଏ । କିନ୍ତୁ ଏହି ଚାରୋଟି ଦୋଷ ଏକତ୍ରିତ ହୋଇ ଧନରେ ରହିଥାଏ । ଏତଦ୍‌ବ୍ୟତୀତ ଧନରେ ଆଉ ଏକ ଦୋଷ ଅଧିକ ଥାଏ । ତାହା ହେଉଛି ସନ୍ଦେହ । ଧନଶାଳୀ ଲୋକ ମନେ ମନେ ସମସ୍ତଙ୍କୁ ସନ୍ଦେହ କରେ । ସନ୍ଦେହ ହିଁ ଶତ୍ରୁତାର କାରଣ । ତେଣୁ ଲୋକେ ଧନୀବ୍ୟକ୍ତି ପ୍ରତି ଶତ୍ରୁତା ଆଚରଣ କରନ୍ତି ।

ଧନୀବ୍ୟକ୍ତି ଧନ ସଂଗ୍ରହ ପାଇଁ କେବେହେଲେ ସତ୍ୟରକ୍ଷା କରିପାରେ ନାହିଁ । ଧନ ଉପାର୍ଜନ କରିବା ତା'ର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ମିଛ କହିବାକୁ ସେ ଆଦୌ ପଶ୍ଚାତ୍‌ପଦ ହୁଏ ନାହିଁ । ବାଣିଜ୍ୟେ ବସତେ ଲକ୍ଷ୍ମୀ—ଅର୍ଥାତ୍ ବାଣିଜ୍ୟ ବ୍ୟବସାୟରେ ଲକ୍ଷ୍ମୀ ବାସ କରନ୍ତି । ବାଣିଜ୍ୟ 'ସତ୍ୟାନୃତ' ଅର୍ଥାତ୍ ବାଣିଜ୍ୟ ବ୍ୟବସାୟରେ ସତ ମିଛ ଉଭୟ ଥାଏ । ଆହୁରି କୁହାଯାଏ—ଗ୍ରାହକର ଗୋରୁ ବଣିକ ମିଛ । ବ୍ୟବସାୟୀମାନଙ୍କ ମଧ୍ୟରେ ସତ୍ୟବାଦୀ ବିରଳ । ତେଣୁ ସାଧାରଣତଃ ବ୍ୟବସାୟୀମାନେ ସୁରାପାୟୀ, କାମୁକ ଓ ହିଂସୁକ ହୋଇଥାନ୍ତି । ସେମାନେ ଖୋଲଖୋଲ ଭାବେ କାହାରକୁ ପ୍ରେମ କରିପାରନ୍ତି ନାହିଁ । ସେମାନଙ୍କ ପ୍ରେମରେ ସ୍ୱାର୍ଥ ଲୁଚିରହିଥାଏ, ଦାନରେ ଯଶଲାଭର ବାସନା ଥାଏ । ସେମାନେ ଏପରି ମଧ୍ୟ ଭାବନ୍ତି ଯେ, ତାଙ୍କ ଦାନକୁ ସମସ୍ତେ ଜାଣନ୍ତୁ ଯାହାଦ୍ୱାରା ତାଙ୍କ ବ୍ୟବସାୟର ଉନ୍ନତି ହେବ । ଅମୂଲ୍ୟବସ୍ତୁମାନ ପ୍ରଚାର ପାଇଁ ସେମାନେ ଦାନ କରନ୍ତି । ସାଧୁମାନଙ୍କ ପାଖରେ ପାଞ୍ଚ ଦଶ ଖର୍ଚ୍ଚ କରିଦେଉଥାନ୍ତି, କିନ୍ତୁ ଉଦ୍ଦେଶ୍ୟ ଥାଏ କିପରି ଲକ୍ଷ ଲକ୍ଷ ମିଳୁ । ସାଧୁଙ୍କ ସାରା ଜୀବନର ସଞ୍ଚିତ ଜପ, ତପକୁ ଧନୀମାନେ ଥରେ ମାତ୍ର ଖାଇବାକୁ ଦେଇ ଓ ତାଙ୍କ ପାଦ ଛୁଇଁ ହରଣ କରିନିଅନ୍ତି । ଯେଉଁ ସାଧୁ ପଇସା ନେବେ ନାହିଁ ତାଙ୍କୁହିଁ ସେମାନେ ଅଧିକ ଶ୍ରଦ୍ଧା କରନ୍ତି । କେବଳ ପାଦ ଛୁଇଁବାମାତ୍ରେ ସେମାନେ ଧନ ଜନ ଗୋପଲକ୍ଷ୍ମୀ ବଢ଼ୁ ବୋଲି ଆଶୀର୍ବାଦ ଦିଅନ୍ତୁ, ଏହାହିଁ ଧନୀଲୋକେ ଆଶା କରନ୍ତି ।

ଜଣେ ମହାତ୍ମା ଥିଲେ । ସେ କାହାରଠାରୁ କିଛି ଗ୍ରହଣ କରୁ ନଥିଲେ । ଯେ ଯାହା ନେଉଥିଲେ ସେ ତାକୁ ତା'ର ଉପହାର ଫେରାଇ ଦେଉଥିଲେ । ଥରେ ଜଣେ ଶେଠ୍ ସାଧୁଙ୍କ ପାଖକୁ ଆସିଲେ । ସେ ଭାବିଲେ—ମହାତ୍ମା ତ କାହାରଠାରୁ କିଛି ନେଉନାହାନ୍ତି । ସମସ୍ତଙ୍କୁ ଦେଉଥିବା ଦ୍ରବ୍ୟ ଫେରାଇ ଦେଉଛନ୍ତି । ତେଣୁ ମୋର ଉଦାରତା ପ୍ରକାଶ କରିବାରେ ଅସୁବିଧା କଣ ? ଏହା ଭାବି ସେ ମହାତ୍ମାଙ୍କ ପାଦ-ତଳେ ଦଶହଜାର ଟଙ୍କାର ଏକ ଥଳି ରଖିଦେଲେ । ଭେଟିଦେବା ପରେ ସେ ଅପେକ୍ଷା କଲେ କେତେବେଳେ ସାଧୁ ମହାରାଜ କହିବେ—"ଆରେ ଭାଇ ! ଏ କଣ କରୁଛ , ନେଇଯାଅ । ଏହାକୁ ନେଇ ଆମେ କଣ କରିବା ? କିନ୍ତୁ ମହାତ୍ମା ଆଜି କିଛି କହିଲେ ନାହିଁ । ଶେଠ ମଧ୍ୟ କେତେଥର କହିଲେଣି—ମହାରାଜ ! ଏ ଦାସର ତୁଚ୍ଛ ଉପହାର ସ୍ୱୀକାର କରନ୍ତୁ । କିଛି ସମୟ ପରେ ମହାତ୍ମା ନିଜର ଶିଷ୍ୟଙ୍କୁ କହିଲେ—ଗୋପାଳ ଦାସ ! ଏ ଥଳି ନେଇ କୁଡ଼ିଆରେ ରଖ । କାଲି ମହାତ୍ମାମାନଙ୍କ ଅନ୍ନଛତ୍ର କାମରେ ଲାଗିବ । ହଠାତ୍ ଶେଠଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା । ସେ ଥଙ୍ଗେଇ ଥଙ୍ଗେଇ କହିଲେ—"ମହାରାଜ ! ମୁଁ ତ ଶୁଣିଥିଲି ଆପଣ ଟଙ୍କା ପଇସା ଛୁଅଁନ୍ତି ନାହିଁ । ଯେ ଯାହା ଆଣେ ଆପଣ ତାକୁ ଫେରାଇ ଦିଅନ୍ତି ।"

ମହାତ୍ମା ହସି ହସି କହିଲେ—"ଆରେ ଭାଇ ! ମୁଁ ଆଉ ଛୁଇଁଲି କମିତି ଉପହାର ଦ୍ରବ୍ୟ ନ ଛୁଇଁବା ମୋର ନିୟମ । କିନ୍ତୁ ସେ ନିୟମ ତ ଗୋପାଳଦାସର ନାହିଁ । ଏବେ ଗୋପାଳ ଦାସ ହିଁ ସ୍ପର୍ଶ କରୁଛି । ଆଉ ରହିଲା ଫେରାଇଦେବା କଥା । ପଇସେ ଦୁଇପଇସା, ଟଙ୍କେ ଦୁଇଟଙ୍କା ଦେଲେ ଆମେ ଫେରାଇ ଦେଉ । ଆଜି ପର୍ଯ୍ୟନ୍ତ ଦଶ-ହଜାର କେହି ଦେଇନାହାନ୍ତି । ବଡ଼ ଧରଣର ଉପହାର ପାଇଁ ଫେରାଇବା ନିୟମ ନାହିଁ ।" ଏହା କହି ମହାତ୍ମା ହସିବାକୁ ଲାଗିଲେ ।

ମହର୍ଷି ସୂକ୍ତ କହିଲେ—"ମୁନିଗଣ ! ଧନୀଲୋକେ ଗୋଟିଏ ପଇସା ଦେଇଥିଲେ ଲକ୍ଷେ ଟଙ୍କା ପାଇବା ପାଇଁ ଆଶା କରନ୍ତି । ମଣିଷଠାରୁ ଏପରି ଆଶା ରଖିଲେ କହିବାର କିଛି ନାହିଁ । କିନ୍ତୁ ସେମାନେ ଦେବତାଙ୍କୁ ମଧ୍ୟ ଠକନ୍ତି । ନିଜ ପାଇଁ ସୁବାସିତ ପାନ, ମଧୁର ଗୁଆ, ନାନାପ୍ରକାର ମସଲା ଦରକାର ହେଲାବେଳେ ଠାକୁରଙ୍କ ପୂଜା ପାଇଁ ଖାଲି ପାନ ଓ ପଚ୍ଚ ଗୁଆ ଯୋଗାଡ଼ କରନ୍ତି । ଗୋଟିଏ ଗୁଆ ବସାଇ ଦେଇ କହିବେ ମୋର ସ୍ତ୍ରୀ, ପୁତ୍ର, କନ୍ୟାମାନଙ୍କର ସ୍ୱାସ୍ଥ୍ୟ ଭଲ ରହୁ, ମୋର ଧନ-ଧାନ୍ୟ କାମନା ପୂରଣ ହେଉ, ତାହା କେବଳ ଏ ଜନ୍ମରେ ନୁହେଁ ଜନ୍ମ ଜନ୍ମା-ନ୍ତରରେ ଘଟୁ । ଆପଣ ଭାବନ୍ତୁ ଭଗବାନ୍‌ଙ୍କ ସହିତ କାରବାର କେତେ ଶଠ୍ତାଦରରେ ସମ୍ପାଦିତ ହେଉଛି । ତେଣୁ ଧର୍ମମାନଙ୍କର ଶ୍ରଦ୍ଧା, ଭକ୍ତି କେବଳ ସ୍ୱାର୍ଥ ପ୍ରଣୋଦିତ, ଯାହା ପାଟରେ ଟିକିଏ ଆଶ୍ଚର୍ଯ୍ୟ କିଛି ଦେଖିବେ ତାକୁ ନମସ୍କାର କରିବେ ଅନ୍ୟକୁ

ଶୁଖିଲା ପ୍ରଣାମ । ସାଧୁପୂଜା ସେ ପର୍ଯ୍ୟନ୍ତ ଚାଲିଥିବ ଯେ ପର୍ଯ୍ୟନ୍ତ ସ୍ୱାର୍ଥରେ ବାଧା ପଡ଼ୁ ନ ଥିବ । ଯଦି ଆଉ କେହି ଅଧିକ ଚମତ୍କାରିତା ଦେଖାଇଲା ତେବେ ପୂର୍ବଙ୍କୁ ଛାଡ଼ି ପରବର୍ତ୍ତୀ ପାଖକୁ ସେମାନେ ଦୌଡ଼ିବେ । ଏ ବିଷୟରେ ମୁଁ ଆପଣ ମାନଙ୍କୁ ଉଦାହରଣ ସ୍ୱରୂପ ଏକ ସୁନ୍ଦର କାହାଣୀ କହୁଛି ।

ଜଣେ ଧନୀଲୋକ ଥିଲେ । ସେ ବଡ଼ ଧର୍ମପ୍ରାଣ ଥିଲେ । ତାଙ୍କର ବହୁପ୍ରକାର ବ୍ୟବସାୟ ଥିଲା । ସବୁ ସହରରେ ତାଙ୍କର ଘର ଥିଲା । ସବୁଠି ସେ ଜଣେ ଦାନୀ ଓ ଧର୍ମାତ୍ମା ରୂପେ ପରିଚିତ ଥିଲେ । ଦିନେ ହସ ହସ ହୋଇ ମହାଲକ୍ଷ୍ମୀ ନାରାୟଣଙ୍କୁ କହିଲେ—ପ୍ରଭୋ ! ଆପଣ ବଡ଼ ନା ମୁଁ ବଡ଼ ? ଭଗବାନ୍ ତ ଜାଣନ୍ତି ପୁରୁଷଠାରୁ ସ୍ତ୍ରୀ ବଡ଼ । କିନ୍ତୁ ପିଲାଙ୍କୁ ଚିଢ଼ାଇବା ପାଇଁ ଯେପରି ବିପରୀତ କଥା କୁହାଯାଏ ଭଗବାନ୍ ସେହିପରି ଭାବରେ କହିଲେ—ଆମେ ବଡ଼ । ତୁମେ କିପରି ବଡ଼ ହୋଇପାରିବ ?

ଏହାଶୁଣି ଲକ୍ଷ୍ମୀ ଟିକିଏ ଚିଡ଼ିଯାଇ କହିଲେ—"ପ୍ରଭୋ ! ଆପଣ କିମିତ ବଡ଼ ହେବେ, ମୁଁ ହେଉଛି ବଡ଼ । ମୁଁ ନଥିଲେ ଆପଣଙ୍କୁ ପଚାରିବ କିଏ ? ମୋତେ ପାଇବା ପର୍ଯ୍ୟନ୍ତ ଲୋକେ ଆପଣଙ୍କୁ ପୂଜା କରନ୍ତି । ମୁଁ ଆସିଗଲେ ଆପଣଙ୍କ ଉପରେ ତୁଳସୀ ପତ୍ରଟିଏ ଚଢ଼େଇବା କାଠିକର ପାଠ ହୋଇଯାଏ ।"

ଭଗବାନ୍ କହିଲେ—"ସାରା ସଂସାରରେ ସମସ୍ତେ ମୋର ଭଜନ କୀର୍ତ୍ତନ କରନ୍ତି । ତୁମ ବାହନର ନାମ ନେଇ ଲୋକେ କହନ୍ତି ଓଲୁ ବୋଲି ।"

ମହାଲକ୍ଷ୍ମୀ ଖୁବ୍ ରାଗିଯାଇ କହିଲେ—"ଦେଖ, ଉପରେ ଯିନ ଲୋକେ ତୁମର ଭଜନ କରନ୍ତି କିନ୍ତୁ ମନ ଭିତରେ ସେମାନେ ମୋତେ ହିଁ ଚିନ୍ତା କରନ୍ତି । ତୁମର ନାମ ମୋର ରୂପ ଲୋକନେତ୍ରରେ ନାଚୁଥାଏ । ଯେତେ ତ୍ୟାଗୀ, ବୈରାଗୀ, ଜଟାଧାରୀ, ବ୍ରହ୍ମଚାରୀ, ମଠାଧୀଶ, ଶ୍ୱେତାମ୍ବର, ଦିଗମ୍ବର ସମସ୍ତେ ମୋର ମୂର୍ତ୍ତି ଭିତରେ । ଟଙ୍କାର ଠନ୍ ଠାନ୍ ଶବ୍ଦ କାନରେ ପଡ଼ିବା ମାତ୍ରେ ସେମାନେ ଜପ, ତପ, ଧ୍ୟାନ ସବୁକିଛି ଭୁଲିଯାଆନ୍ତି । ଟଙ୍କା ଦେଖିବାମାତ୍ରେ ଦେହରେ ପୁଲକ ଜାତହୁଏ । ତୁମେ କହିଲେ ମୁଁ ଏହା ପ୍ରତ୍ୟକ୍ଷଭାବେ ପ୍ରମାଣ କରିଦେବି ।"

ଭଗବାନଙ୍କର ବ୍ୟକ୍ତିଗତ କାମ ତ କିଛି ନାହିଁ । ଲୀଳା ରଚନା ପାଇଁ ସେ ପ୍ରତିଦିନ ଲକ୍ଷ୍ମୀଙ୍କ ସହିତ କ୍ରୀଡ଼ା କରନ୍ତି । ତେଣୁ ପ୍ରଭୁ କହିଲେ—"ଠିକ୍ ଅଛି । ଚାଲ ଦେଖିବା, ଲୋକେ ତୁମକୁ କି ମୋତେ କାହାକୁ ପୂଜା କରୁଛନ୍ତି ପ୍ରତ୍ୟକ୍ଷଭାବେ ଜାଣିବା । ଏହା କହି ଦୁହେଁ ପତିପତ୍ନୀବେଶରେ ବାହାରି ପଡ଼ିଲେ ।"

ଭଗବାନ୍ ଏକ ବୃଦ୍ଧ ବ୍ରାହ୍ମଣ ରୂପ ଧାରଣ କଲେ । କାଖରେ ପୋଥି ଖଣ୍ଡିଏ ଜାକି ସେହି ଧର୍ମପ୍ରାଣ ଧନୀଙ୍କ ଘର ପାଖରେ ପହଞ୍ଚିଲେ । ପଣ୍ଡିତ ବୃଦ୍ଧ ବ୍ରାହ୍ମଣଙ୍କୁ ଦେଖି ଶେଠ୍‌ଜୀ ତାଙ୍କୁ ବେଶ୍ ଆଦର ଯତ୍ନ କଲେ । ଯଥାବିଧି ପୂଜା ଦେଇ କିଛିଦିନ ରହିବା ପାଇଁ ପ୍ରାର୍ଥନା କଲେ । ପଣ୍ଡିତ ହାତ ଓ ଜାତକ ଦେଖି ଭଲମନ୍ଦ କହୁଥିଲେ ଓ ସନ୍ଧ୍ୟାବେଳକୁ ପ୍ରବଚନ ଶୁଣାଉଥିଲେ । ତାଙ୍କର ମଧୁର ସ୍ୱର ଶୁଣି ଶ୍ରୋତାଗଣ ମୁଗ୍‌ଧ ହୋଇଯାଉଥିଲେ । ପଣ୍ଡିତଙ୍କ ଉପରେ ସେଠ୍‌ଜୀଙ୍କ ଶ୍ରଦ୍ଧା ବଢ଼ିଗଲା । ସମସ୍ତେ ପଣ୍ଡିତଙ୍କର ବଶୀଭୂତ ହୋଇଗଲେ ।

ମହାଲକ୍ଷ୍ମୀ ଦେଖିଲେ ଭଗବାନ୍ ଶେଠ୍‌ଙ୍କୁ ବଶୀଭୂତ କରି ସାରିଛନ୍ତି । ସେ ଏକ ଯୋଗିନୀ ବେଶ ଧାରଣ କରି ବୁଲି ବୁଲି ଯାଇ ସେହି ଶେଠ୍‌ଙ୍କ ଘରେ ପହଞ୍ଚିଲେ । ଯୋଗିନୀଙ୍କର ରୂପ ଏପରି ଆକର୍ଷକ ଥିଲା ଯେ ଲୋକେ ନିର୍ନିମେଷ ନୟନରେ ତାଙ୍କୁ ଚାହିଁ ରହୁଥିଲେ । କଳା କଳା କୁଞ୍ଚିତ କେଶ ମୁକୁଳା ଥିଲା । ଦେହରେ ପରିଧେୟ ଥିଲା ଗେରୁଆ ବସ୍ତ୍ର । ଗେରୁଆ ବସ୍ତ୍ର ଭିତରୁ ଯୋଗିନୀଙ୍କ ଅଙ୍ଗର ଆଭା ଫୁଟି ଉଠୁଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ସୁନା ଉପରେ ପାଉଁଶ ବୋଳାଯାଇଛି । କଣ୍ଠରେ ରୁଦ୍ରାକ୍ଷ ମାଳା, କପାଳରେ ସୁନ୍ଦର ତିଳକ ଶୋଭା ପାଉଥିଲା । କାନ୍ଧରେ ଝୋଲିଟିଏ ପଡ଼ିଥିଲା । ସେ ଆଖି ବନ୍ଦ କରି 'ଅଲେଖ, ଅଲେଖ' କହୁଥିବାବେଳେ ସାକ୍ଷାତ୍ ତପସ୍ୟା ମୂର୍ତ୍ତିମନ୍ତ ହେଲାପରି ଜଣାପଡ଼ୁଥିଲା । ତାଙ୍କୁ ଦେଖି ସମସ୍ତ ଶୋଭା ଏକତ୍ର ରୂପ ଧାରଣ କରିଛି ବୋଲି ଲୋକେ ଭାବିବାକୁ ଲାଗିଲେ । କେହି ଜଣେ ଶେଠ୍‌ଙ୍କୁ କହିଲେ—ଏକ ସିଦ୍ଧ ଯୋଗିନୀ ଆସିଛନ୍ତି । ଏହା ଶୁଣି ଶେଠ୍ ଦୌଡ଼ି ଆସି ପ୍ରଣାମ କଲେ ଏବଂ ସେବା କରିବା ପାଇଁ ନିବେଦନ କଲେ ।

ଯୋଗିନୀ କିଛି ସମୟ ମୌନ ରହିବା ପରେ କହିଲେ—ମୁଁ ପାଣି ଟିକିଏ ପିଇବାକୁ ଇଚ୍ଛା କରୁଛି । ଶେଠ୍‌ଜୀ ସଙ୍ଗେ ସଙ୍ଗେ ଏକ ରୂପା ପାତ୍ରରେ ଗଙ୍ଗାଜଳ ମଗାଇ ଆଣିଲେ । କିନ୍ତୁ ଯୋଗିନୀ ନିଜ ଝୋଲିରୁ ଏକ ସୁନାର ପାତ୍ର ବାହାର କଲେ । ସେ ପାତ୍ରରେ ବହୁତ ମଣିମୁକ୍ତା ଖଞ୍ଜା ଯାଇଥିଲା । ସେହି ପାତ୍ରଟି ଧରି ଯୋଗିନୀ କହିଲେ—ମୁଁ କୌଣସି ଗୃହସ୍ଥର ପାତ୍ର ବ୍ୟବହାର କରେନାହିଁ । ଏହି ପାତ୍ରରେ ମୋତେ ଜଳଦିଅ ।

ଶେଠ୍‌ଜୀ ତୁରନ୍ତ ସେହି ପାତ୍ରରେ ଜଳ ଢ଼ାଳିଦେଲେ । ଜଳ ପିଇସାରି ଯୋଗିନୀ ପାତ୍ରଟି ସେଇଠି ଫିଙ୍ଗିଦେଲେ । ସେହି ପାତ୍ରର ଗଠନ ଏବଂ ସେଥିରେ ଥିବା ବହୁମୂଲ୍ୟ ମଣିମୁକ୍ତାର ଚମକରେ ଶେଠ୍‌ଜୀ ମନ୍ତ୍ର ମୁଗ୍‌ଧ ହେଲାପରି ରହିଗଲେ —"ମାତାଜୀ ! ଏହି ପାତ୍ରଟି ଆପଣ ନିଜ ଝୋଲିରେ ରଖନ୍ତୁ ।"

ଶୁଝିଲା ପ୍ରଣାମ । ସାଧୁପୂଜା ସେ ପର୍ଯ୍ୟନ୍ତ ଚାଲୁଥିବ ଯେ ପର୍ଯ୍ୟନ୍ତ ସ୍ୱାର୍ଥରେ ବାଧା ପଡ଼ୁନ ଥିବ । ସନ୍ଥ ଆଉ କେହି ଅଧିକ ଚମତ୍କାରିତା ଦେଖାଇଲା ତେବେ ପୂର୍ବଙ୍କୁ ଛାଡ଼ି ପରବର୍ତ୍ତୀ ପାଖକୁ ସେମାନେ ଦୌଡ଼ିବେ । ଏ ବିଷୟରେ ମୁଁ ଆପଣ ମାନଙ୍କୁ ଉଦାହରଣ ସ୍ୱରୂପ ଏକ ସୁନ୍ଦର କାହାଣୀ କହୁଛି ।

ଜଣେ ଧନୀଲୋକ ଥିଲେ । ସେ ବଡ଼ ଧର୍ମପ୍ରାଣ ଥିଲେ । ତାଙ୍କର ବହୁପ୍ରକାର ବ୍ୟବସାୟ ଥିଲା । ସବୁ ସହରରେ ତାଙ୍କର ଘର ଥିଲା । ସବୁଠି ସେ ଜଣେ ଦାନୀ ଓ ଧର୍ମାତ୍ମା ରୂପେ ପରିଚିତ ଥିଲେ । ଥରେ ହସ ହସ ହୋଇ ମହାଲକ୍ଷ୍ମୀ ନାରାୟଣଙ୍କୁ କହିଲେ—ପ୍ରଭୋ ! ଆପଣ ବଡ଼ ନା ମୁଁ ବଡ଼ ? ଭଗବାନ୍ ତ ଜାଣନ୍ତି ପୁରୁଷଠାରୁ ସ୍ତ୍ରୀ ବଡ଼ । କିନ୍ତୁ ପିଲାଙ୍କୁ ଚିଢ଼େଇବା ପାଇଁ ଯେପରି ବିପରୀତ କଥା କୁହାଯାଏ ଭଗବାନ୍ ସେହିପରି ଭାବରେ କହିଲେ—ଆମେ ବଡ଼ । ତୁମେ କିପରି ବଡ଼ ହୋଇପାରିବ ?

ଏହାଶୁଣି ଲକ୍ଷ୍ମୀ ଟିକିଏ ଚିଡ଼ିଯାଇ କହିଲେ—"ପ୍ରଭୋ ! ଆପଣ କିମିତି ବଡ଼ ହେବେ, ମୁଁ ହେଉଛି ବଡ଼ । ମୁଁ ନଥିଲେ ଆପଣଙ୍କୁ ପଚାରିବ କିଏ ? ମୋତେ ପାଇବା ପର୍ଯ୍ୟନ୍ତ ଲୋକେ ଆପଣଙ୍କୁ ପୂଜା କରନ୍ତି । ମୁଁ ଆସିଗଲେ ଆପଣଙ୍କ ଉପରେ ତୁଳସୀ ପତ୍ରଟିଏ ଚଢ଼େଇବା କାର୍ତ୍ତିକର ପାଠ ହୋଇଯାଏ ।"

ଭଗବାନ୍ କହିଲେ—"ସାରା ସଂସାରରେ ସମସ୍ତେ ମୋର ଭଜନ କୀର୍ତ୍ତନ କରନ୍ତି । ତୁମ ବାହନର ନାମ ନେଇ ଲୋକେ କହନ୍ତି ଓଲୁ ବୋଲି ।"

ମହାଲକ୍ଷ୍ମୀ ଖୁବ୍ ରାଗିଯାଇ କହିଲେ—"ଦେଖ, ଉପରେ ଦିନ ଲୋକେ ତୁମର ଭଜନ କରନ୍ତି କିନ୍ତୁ ମନ ଭିତରେ ସେମାନେ ମୋତେ ହିଁ ଚିନ୍ତା କରନ୍ତି । ତୁମର ନାମ ମୋର ରୂପ ଲୋକନେତ୍ରରେ ନାଚୁଥାଏ । ଯେତେ ତ୍ୟାଗୀ, ବୈରାଗୀ, ଜଟାଧାରୀ, ବ୍ରହ୍ମଚାରୀ, ମଠାଧୀଶ, ଶ୍ୱେତାମ୍ବର, ଦିଗମ୍ବର ସମସ୍ତେ ମୋର ମୂର୍ତ୍ତି ଭିତରେ । ଟଙ୍କାର ଠନ୍ ଠାନ୍ ଶବ୍ଦ କାନରେ ପଡ଼ିବା ମାତ୍ରେ ସେମାନେ ଜପ, ତପ, ଧ୍ୟାନ ସବୁକିଛି ଭୁଲିଯାଆନ୍ତି । ଟଙ୍କା ଦେଖିବାମାତ୍ରେ ଦେହରେ ପୁଲକ ଜାତହୁଏ । ତୁମେ କହିଲେ ମୁଁ ଏହା ପ୍ରତ୍ୟକ୍ଷଭାବେ ପ୍ରମାଣ କରିଦେବି ।"

ଭଗବାନଙ୍କର ବ୍ୟକ୍ତିଗତ କାମ ତ କିଛି ନାହିଁ । ଲୀଳା ରଚନା ପାଇଁ ସେ ପ୍ରତିଦିନ ଲକ୍ଷ୍ମୀଙ୍କ ସହିତ କ୍ରୀଡ଼ା କରନ୍ତି । ତେଣୁ ପ୍ରଭୁ କହିଲେ—"ଠିକ୍ ଅଛି । ଚାଲ ଦେଖିବା, ଲୋକେ ତୁମକୁ କି ମୋତେ କାହାକୁ ପୂଜା କରୁଛନ୍ତି ପ୍ରତ୍ୟକ୍ଷଭାବେ ଜାଣିବା । ଏହା କହି ଦୁହେଁ ପରିପନ୍ଥୀବେଶରେ ବାହାରି ପଡ଼ିଲେ ।"

ଭଗବାନ୍ ଏକ ବୃଦ୍ଧ ବ୍ରାହ୍ମଣ ରୂପ ଧାରଣ କଲେ । କାଖରେ ପୋଥି ଖଣ୍ଡିଏ ଜାକି ସେହି ଧର୍ମପ୍ରାଣ ଧନୀଙ୍କ ଘର ପାଖରେ ପହଞ୍ଚିଲେ । ପଣ୍ଡିତ ବୁଢା ବ୍ରାହ୍ମଣଙ୍କୁ ଦେଖି ଶେଠ୍‌ଜୀ ତାଙ୍କୁ ବେଶ୍ ଆଦର ଯତ୍ନ କଲେ । ଯଥାବିଧି ପୂଜା ଦେଇ କିଛିଦିନ ରହିବା ପାଇଁ ପ୍ରାର୍ଥନା କଲେ । ପଣ୍ଡିତ ହାତ ଓ ଜାତକ ଦେଖି ଭଲମନ୍ଦ କହୁଥିଲେ ଓ ସନ୍ଧ୍ୟାବେଳକୁ ପ୍ରବଚନ ଶୁଣାଉଥିଲେ । ତାଙ୍କର ମଧୁର ସ୍ୱର ଶୁଣି ଶ୍ରୋତାଗଣ ମୁଗ୍‌ଧ ହୋଇଯାଉଥିଲେ । ପଣ୍ଡିତଙ୍କ ଉପରେ ସେଠ୍‌ଜୀଙ୍କ ଶ୍ରଦ୍ଧା ବଢ଼ିଗଲା । ସମସ୍ତେ ପଣ୍ଡିତଙ୍କର ବଶୀଭୂତ ହୋଇଗଲେ ।

ମହାଲକ୍ଷ୍ମୀ ଦେଖିଲେ ଭଗବାନ୍ ଶେଠ୍‌ଙ୍କୁ ବଶୀଭୂତ କରି ସାରିଛନ୍ତି । ସେ ଏକ ଯୋଗିନୀ ବେଶ ଧାରଣ କରି ବୁଲି ବୁଲି ଯାଇ ସେହି ଶେଠ୍‌ଙ୍କ ଘରେ ପହଞ୍ଚିଲେ । ଯୋଗିନୀଙ୍କର ରୂପ ଏପରି ଆକର୍ଷକ ଥିଲା ଯେ ଲୋକେ ଅନିମେଷ ନୟନରେ ତାଙ୍କୁ ଚାହିଁ ରହୁଥିଲେ । କଳା କଳା କୁଞ୍ଚିତ କେଶ ମୁକୁଳା ଥିଲା । ଦେହରେ ପରିଧେୟ ଥିଲା ଗେରୁଆ ବସ୍ତ୍ର । ଗେରୁଆ ବସ୍ତ୍ର ଭିତରୁ ଯୋଗିନୀଙ୍କ ଅଙ୍ଗର ଆଭା ଫୁଟି ଉଠୁଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ସୁନା ଉପରେ ପାଉଁଶ ବୋଳାଯାଇଛି । କଣ୍ଠରେ ରୁଦ୍ରାକ୍ଷ ମାଳା, କପାଳରେ ସୁନ୍ଦର ତିଳକ ଶୋଭା ପାଉଥିଲା । କାନ୍ଧରେ ଝୋଲିଟିଏ ପଡ଼ିଥିଲା । ସେ ଆଖି ବନ୍ଦ କରି 'ଅଲେଖ, ଅଲେଖ' କହୁଥିବାବେଳେ ସାକ୍ଷାତ୍ ତପସ୍ୟା ମୂର୍ତ୍ତିମନ୍ତ ହେଲାପରି ଜଣାଯାଉଥିଲା । ତାଙ୍କୁ ଦେଖି ସମସ୍ତ ଶୋଭା ଏକତ୍ର ରୂପ ଧାରଣ କରିଛି ବୋଲି ଲୋକେ ଭାବିବାକୁ ଲାଗିଲେ । କେହି ଜଣେ ଶେଠ୍‌ଙ୍କୁ କହିଲେ—ଏକ ସିଦ୍ଧ ଯୋଗିନୀ ଆସିଛନ୍ତି । ଏହା ଶୁଣି ଶେଠ୍ ଦୌଡ଼ି ଆସି ପ୍ରଣାମ କଲେ ଏବଂ ସେବା କରିବା ପାଇଁ ନିବେଦନ କଲେ ।

ଯୋଗିନୀ କିଛି ସମୟ ମୌନ ରହିବା ପରେ କହିଲେ—ମୁଁ ପାଣି ଟିକିଏ ପିଇବାକୁ ଇଚ୍ଛା କରୁଛି । ଶେଠ୍‌ଜୀ ସଙ୍ଗେ ସଙ୍ଗେ ଏକ ରୂପା ପାତ୍ରରେ ଗଙ୍ଗାଜଳ ମଗାଇ ଆଣିଲେ । କିନ୍ତୁ ଯୋଗିନୀ ନିଜ ଝୋଲିରୁ ଏକ ସୁନାର ପାତ୍ର ବାହାର କଲେ । ସେ ପାତ୍ରରେ ବହୁତ ମଣିମୁକ୍ତା ଖଞ୍ଜା ଯାଇଥିଲା । ସେହି ପାତ୍ରଟି ଧରି ଯୋଗିନୀ କହିଲେ—ମୁଁ କୌଣସି ଗୃହସ୍ଥର ପାତ୍ର ବ୍ୟବହାର କରେନାହିଁ । ଏହି ପାତ୍ରରେ ମୋତେ ଜଳଦିଅ ।

ଶେଠ୍‌ଜୀ ତୁରନ୍ତ ସେହି ପାତ୍ରରେ ଜଳ ଢ଼ାଳିଦେଲେ । ଜଳ ପିଇସାରି ଯୋଗିନୀ ପାତ୍ରଟି ସେଇଠି ଫିଙ୍ଗିଦେଲେ । ସେହି ପାତ୍ରର ଗଠନ ଏବଂ ସେଥିରେ ଥିବା ବହୁ-ମୂଲ୍ୟ ମଣିମୁକ୍ତାର ଚମକରେ ଶେଠ୍‌ଜୀ ମନ୍ତ୍ର ମୁଗ୍‌ଧ ହେଲାପରି ରହିଗଲେ —"ମାତାଜୀ ! ଏହି ପାତ୍ରଟି ଆପଣ ନିଜ ଝୋଲିରେ ରଖନ୍ତୁ ।"

ଉପେକ୍ଷା କଲାଭଳି ସ୍ୱରରେ ଯୋଗିନୀ କହିଲେ—"ମୁଁ ଯେଉଁ ପାତ୍ରରେ ଥରେ ଜଳପିଏ ତାହା ଆଉ ଛୁଏଁନାହିଁ ।"

ଏହାଶୁଣି ଶେଠ୍‌ଜୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ଅତ୍ୟନ୍ତ ଆଗ୍ରହର ସହିତ ଶେଠ୍‌ଜୀ କହିଲେ—"ମାତାଜୀ ! ଖାଇବା ବେଳ ହୋଇଗଲାଣି । ଯେତିକି ଇଚ୍ଛା ହେଉଛି, ଆପଣ ସେତିକି ଭୋଜନ କରନ୍ତୁ ।" ଶେଠ୍‌ଜୀଙ୍କ ଆଗ୍ରହ ଦେଖି ଯୋଗିନୀ ଶେଷରେ ଖାଇବା ପାଇଁ ରାଜି ହେଲେ ।

ଶେଠ୍‌ଜୀ ନିଜେ ଯାଇ ବିଭିନ୍ନ ପ୍ରକାର ଖାଦ୍ୟବସ୍ତୁ ନେଇଆସିଲେ । ଯୋଗିନୀ ଏକ ଉଚ୍ଚ ଆସନରେ ବସିଲେ । ଝୋଲାରୁ ସେ ସୁନା ଥାଳି, ଗିନା ଓ ପାନପାତ୍ର ବାହାର କଲେ । ଶେଠ୍‌ଜୀ ଆନନ୍ଦରେ ସେସବୁ ପାତ୍ରରେ ଖାଦ୍ୟ ଓ ପାନୀୟ ପରିବେଷଣ କଲେ । ଶ୍ୱଶୁରାଳୟରେ ଅନ୍ୟମାନଙ୍କ ସମ୍ମୁଖରେ ନବବଧୂ ଯେପରି ଭୋଜନ କରେ ସେହିପରି ଯୋଗିନୀ ଧୀରେ ଧୀରେ ଖାଇବାକୁ ଲାଗିଲେ । ପ୍ରବଚନର ସମୟ ହୋଇଗଲା । ଶେଠ୍‌ଜୀଙ୍କୁ ଡାକରା ଆସିଲା । କିନ୍ତୁ ଯୋଗିନୀଙ୍କୁ ଛାଡ଼ି ସେ ଯିବେ କିପରି । ସେ ସେବକ ମାଧ୍ୟମରେ ଖବର ଦେଲେ—ପଣ୍ଡିତଜୀଙ୍କୁ କହିବୁ ଆଜି ଏବେ ପ୍ରବଚନ ହୋଇପାରିବ ନାହିଁ । ଯେତେବେଳେ ହେବ ସେତେବେଳେ ମୁଁ ଖବର ଦେବି । ଯଦି ଖବର ନଦେବି ତେବେ ଆଜି ପ୍ରବଚନ ବନ୍ଦହେବ । ଚାକର ଯାଇ ପଣ୍ଡିତଙ୍କୁ ଖବର ଜଣାଇଦେଲା । ପଣ୍ଡିତେ ଜାଣିଗଲେ ଯେ ଶେଠ୍‌ଜୀ ଭକ୍ତିକି ବାହିନୀର ଫାନ୍ଦରେ ପଡ଼ିଗଲେ ।

ଯୋଗିନୀ ଖାଇସାରି ଶେଠ୍‌ଜୀଙ୍କୁ କହିଲେ—ଏ ପାତ୍ରସବୁ ଉଠାଇ ନିଅ । ଶେଠ୍‌ଜୀ ଉପରି ମନରେ କହିଲେ—"ମାତାଜୀ ! ମୁଁ ଆପଣଙ୍କ ପାତ୍ର ନେବି କିପରି ?" ଯୋଗିନୀ କହିଲେ—"ମୋର ନିୟମ ହେଉଛି, ଯେଉଁ ପାତ୍ରରେ ଥରେ ଖାଇବି ତାହା ଆଉ ଛୁଇଁବି ନାହିଁ । ବର୍ତ୍ତମାନ ତୁମର ଇଚ୍ଛା, ତୁମେ ଯାହା କରିବ ।"

ଏହାଶୁଣି ଭକ୍ତ ସହକାରେ ଶେଠ୍‌ଜୀ କହିଲେ—"ଠିକ୍ ଅଛି । ଆପଣଙ୍କ ପ୍ରସାଦ ମିଳିବ । ମହାତ୍ମାଙ୍କ ପ୍ରସାଦ ସୌଭାଗ୍ୟ ଥିଲେ ମିଳେ ।"

ମହର୍ଷି ସୂତ କହିଲେ—ମୁନିଗଣ ! ସାଧୁ ଭାବରେ ଯଦି କାହାକୁ କିଛି ଠକାଇବା ଦରକାର ପଡ଼େ ତେବେ ପ୍ରସାଦର ଆଢ଼ୁଆଳରେ ସେସବୁ ସହଜରେ କରାଯାଇଥାଏ । ଶେଠ୍‌ଜୀଙ୍କ ଆନନ୍ଦର ସୀମା ନଥିଲା । ସେ ଭାବିଲେ—ଯଦି ଏ ଯୋଗିନୀ ପାଞ୍ଚଦଶ ଦିନ ରହିଯିବେ ତେବେ ମୋର ଧନସମ୍ପଦର ସୀମା ରହିବ

ନାହିଁ । ଏହା ଖୁବ ନମ୍ରତାର ସହିତ ଶେଠ୍‌ଜୀ କହିଲେ—"ମାତାଜୀ ! କିଛିଦିନ ପାଇଁ ଏ ସେବକ ପ୍ରତି ପ୍ରସନ୍ନ ହୁଅନ୍ତୁ । ମୋର ଏ କୁଟୀର ଆପଣଙ୍କ ପଦଧୂଳିରେ ପବିତ୍ର ହେଉ ।"

ଯୋଗିନୀ ଆଖି ବନ୍ଦକରି କିଛି ସମୟ ଧ୍ୟାନାବସ୍ଥ ରହିବା ପରେ ସ୍ପଷ୍ଟଭାବେ କହିଲେ—"ଶେଠ୍‌ଜୀ ! ଆମେତ ବୁଲିବା ଲୋକ । ଆଜି ଏଠି ତ କାଲି ସେଠି, କେଉଁଠି ଆମେ ସ୍ଥିରହୋଇ ରହୁନାହିଁ । ତଥାପି ଯେପରି କୌଣସି ଭକ୍ତ ଦେଖିଲେ ପାଞ୍ଚ ଦଶଦିନ ରହିଯାଉଁ ।"

ଶେଠ୍‌ଜୀ ଅତ୍ୟନ୍ତ ବିନୀତ ହୋଇ କହିଲେ—"ଏ ଦାସକୁ ଦୟାକରି କୃତାର୍ଥ କରନ୍ତୁ ମାତାଜୀ ।" ଯୋଗିନୀ ଉପେକ୍ଷା କଲାପରି କହିଲେ—"ମୋ' ରହିବାରେ ବଡ଼ ଝଂଜଟ ଅଛି । ମୁଁ ତ ସବୁଠାରେ ରହିପାରେ ନାହିଁ । ପରିଷ୍କାର ସ୍ଥାନ ଦରକାର । ଟିକିଏ ନିରୋଳା ସ୍ଥାନ ଦରକାର ।"

ଆନନ୍ଦିତ ହୋଇ ଶେଠ୍‌ଜୀ କହିଲେ—"ମାତାଜୀ ! ଏତେବଡ଼ ପ୍ରାସାଦ ଆପଣଙ୍କର । ଏଥିରୁ ଯେଉଁ ସ୍ଥାନ ଆପଣଙ୍କର ଅନୁକୂଳ ହେବ ସେଇଠି ଆପଣଙ୍କ ରହିବା ବ୍ୟବସ୍ଥା କରିଦେବି । ଏଠାରେ ସୁବିଧା ନହେଲେ ନଗର ବାହାରେ ମୋର ଏକ ଉଦ୍ୟାନ ଅଛି । ସେଠାରେ ସବୁପ୍ରକାର ସୁବିଧା ଅଛି । ପ୍ରଥମେ ଏଠାର ବ୍ୟବସ୍ଥା ଦେଖନ୍ତୁ ।"

ଯୋଗିନୀ ସମ୍ମତ ହୋଇ ସେଠ୍‌ଜୀଙ୍କ ସହିତ ବୁଲି ବୁଲି ସବୁସ୍ଥାନ ଦେଖିବାକୁ ଗଲେ । ସୁନ୍ଦର ସୁନ୍ଦର ଘରସବୁ ଯୋଗିନୀ ଦେଖିଲେ । କିନ୍ତୁ କେଉଁଠି ତାଙ୍କର ମନ ମାନିଲା ନାହିଁ । ଘରସବୁ ବୁଲି ବୁଲି ଯାଇ ଶେଠ୍‌ଜୀ ଯୋଗିନୀଙ୍କ ସହିତ ପଣ୍ଡିତଙ୍କ ରହିବା ସ୍ଥାନରେ ପହଞ୍ଚିଲେ । ଯୋଗିନୀ ପଣ୍ଡିତଙ୍କୁ ଦେଖିଲେ । ଆଖିରେ ଆଖିରେ କଥାବାର୍ତ୍ତା ହୋଇଗଲା । ମନେ ମନେ ଆନନ୍ଦିତ ହୋଇ ହସି ହସି ଯୋଗିନୀ କହିଲେ—"ଶେଠ୍‌ଜୀ, ଏହି ସ୍ଥାନଟି ବେଶ୍ ଭଲ । ଏଇଠି ତ ରହିପାରିବି ?"

ଅତୀବ ଆନନ୍ଦିତ ହୋଇ ସେଠ୍‌ଜୀ କହିଲେ—"ମୋର ଭାଗ୍ୟ ମାତାଜୀ । ମୋର ସର୍ବସ୍ୱ ଆପଣଙ୍କର ।" ଯୋଗିନୀ ପଚାରିଲେ—"ଏଠି ଆଉକେହି ରହନ୍ତି ନାହିଁତ ? ଏ ତିଳକଧାରୀ ବୁଢ଼ା ପଣ୍ଡିତଟି କିଏ ?"

ଶେଠ୍‌ଜୀ କହିଲେ—"ମାତାଜୀ ! ସେ ଜଣେ ଖୁବ୍ ବଡ଼ ପଣ୍ଡିତ । ଏଠି ଗୋଟିଏ କୋଠରୀରେ ସେ ରହୁଛନ୍ତି ।"

କଚ୍ଛଟା ଅଧିକାରର ସହିତ ଯୋଗିନୀ କହିଲେ—ଏଠାରେ କାହିଁକି ପଡ଼ି-ରହିଛନ୍ତି । ଧର୍ମଶାଳା କଣ ନାହିଁ । ମୋର ପଣ୍ଡିତଙ୍କ ସହିତ କିଛି ସମ୍ପର୍କ ନାହିଁ । ବୁଢ଼ା ଏଠି ରହିଲେ ଖୁଁ ଖୁଁ ହେବ । ତେଣୁ ବୁଢ଼ାଟା ରହିଲେ ମୁଁ ତ ରହିପାରିବି ନାହିଁ ।”

ସେଠ୍‌ଜୀ ଟିକିଏ ବ୍ୟସ୍ତ ହୋଇପଡ଼ି କହିଲେ—ନାଁ ନାଁ ମାତାଜୀ ! ସେମିତି କରନ୍ତୁନାହିଁ । ପଣ୍ଡିତଙ୍କର କିଛି ଅସୁବିଧା ନାହିଁ । ସେ ଅନ୍ୟସ୍ଥାନକୁ ଚାଲିଯିବେ ।” ଯୋଗିନୀ କଳକଥା ଉପରେ ଗୁରୁତ୍ୱ ଦେଇ କହିଲେ—“ଯିବେ ଆଉ କେତେବେଳେ । ଶୀଘ୍ର ଯାହା ବ୍ୟବସ୍ଥା କରୁଛ କର । ଅବିଳମ୍ବେ ଏ ସ୍ଥାନକୁ ଖାଲି କର ।”

ସେଠ୍‌ଜୀ ସରଳ ଅଥଚ ଦୃଢ଼ ସ୍ୱରରେ କହିଲେ—ପଣ୍ଡିତଜୀ ! ଆପଣ ତଳ-ମହଲର କୌଣସି କୋଠରୀକୁ ଚାଲିଯାଆନ୍ତୁ ।” ପଣ୍ଡିତଜୀ କହିଲେ—“ନାଁ ଭାଇ ! ମୁଁ ଏ ସ୍ଥାନ ଛାଡ଼ି କୁଆଡ଼େ ଯିବି ନାହିଁ ।” ପଣ୍ଡିତଙ୍କ କଥା ଶୁଣି ଯୋଗିନୀ କହିଲେ—“ଆଚ୍ଛା, ଶେଠ୍‌ଜୀ ! ମୁଁ ତେବେ ଚାଲିଯାଉଛି ।”

ଦୈନ୍ୟ ପ୍ରକାଶ କରି ଶେଠ୍‌ଜୀ କହିଲେ—“ନା ନା ମାତାଜୀ ! ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ସବୁ ବ୍ୟବସ୍ଥା କରୁଛି ।” ଏହାକହି ଶେଠ୍‌ଜୀ ଅଧିକାର ପୂର୍ଣ୍ଣ ସ୍ୱରରେ କହିଲେ—ମହାଶୟ ! ଆପଣ ବଡ଼ ଜିଦ୍‌ଖୋର ମନେ ହେଉଛନ୍ତି । ତଳ ମହଲକୁ ଚାଲିଗଲେ ଆପଣଙ୍କର କି ଅସୁବିଧା ହେବ ?”

ପଣ୍ଡିତ ମହାଶୟ ଯୋଗିନୀଙ୍କ ଆଡ଼କୁ ଚାହିଁ ଦୃଢ଼ତାର ସହିତ କହିଲେ—“ମୁଁ ପ୍ରଥମେ ଆସି ଏଇଠି ରହିଛି । ସ୍ତ୍ରୀଲୋକ ଆଗରେ ତୁମେ ମୋତେ ଏଠାରୁ ବାହାରି ଯିବାକୁ କହି ମୋର ଅପମାନ କରୁଛ । ମୁଁ ଯିବି ନାହିଁ । ରହିବି ତ ଏଇଠି ରହିବି ନୋହିଲେ ଚାଲିଯିବି ।”

ଶେଠ୍‌ଜୀ ରାଗିଗଲେ । ଏହାହିଁ ଧନୀଲୋକର ସ୍ୱଭାବ । ସେ ଚାକରକୁ ଡାକି କହିଲେ—“ଏ ବ୍ରାହ୍ମଣର ସବୁ ଜିନିଷପତ୍ର ନେଇ ଫିଙ୍ଗିଦିଅ । ଆଉ ତାକୁ ଧକ୍‌କା ମାରି ବାହାର କରିଦିଅ ।” ଚାକରମାନେ ସଙ୍ଗେ ସଙ୍ଗେ ଆଦେଶ ପାଳନ କଲେ । ପଣ୍ଡିତଙ୍କ କମଣ୍ଡଳୁ, ଆସନ ଆଦି ଫିଙ୍ଗିଦେଲେ ଓ ଧକ୍‌କା ମାରି ତାଙ୍କୁ ବାହାର କରିଦେଲେ । ପଣ୍ଡିତ ମହାଶୟ ଲଜ୍ଜାରେ ସେଠାରୁ ଚାଲିଗଲେ ।

କିଛି ସମୟ ପରେ ମହାଲକ୍ଷ୍ମୀ ଏଠି ସେଠି ବୁଲିଚାଲି କରି ଭଗବାନ୍‌ଙ୍କ ପାଖରେ ପହଞ୍ଚିଲେ ଆଉ କହିଲେ—“ଆଜ୍ଞା କଣହେଲା ? ଆପଣଙ୍କ ଭକ୍ତର ଭକ୍ତି-ଭାବକୁ ଦେଖିଲେ ତ ?”

ଭଗବାନ୍ ହସି ହସି କହିଲେ—"ସେ କ'ଣ ମୋ' ଭକ୍ତ ଥିଲା । ପ୍ରକୃତରେ ସେ ତୁମର ଭକ୍ତ । ତୁମ ଭକ୍ତହୋଇ ମଧ୍ୟ ତା'ର ଧର୍ମରେ ମନ ଥିଲା । ଦାନପୁଣ୍ୟ କରୁଥିଲା । ସେହି ପୁଣ୍ୟ ଫଳରେ ସେ ମୋତେ ଦେଖିପାରିଲା ।"

ମହାଲକ୍ଷ୍ମୀ ଗର୍ବ ସହକାରେ କହିଲେ—"ଦେଖ, ଭକ୍ତ ମୁଁ ନଯିବା ପର୍ଯ୍ୟନ୍ତ ଥିବ । କିନ୍ତୁ ମୁଁ ପହଞ୍ଚିବା ପରେ ଆପଣଙ୍କୁ ଆଉ କେହି ପଚାରିବେ ନାହିଁ ।"

ଭଗବାନ୍ ଗମ୍ଭୀର ହୋଇ କହିଲେ—"ନାଁ ନାଁ, ତୁମର ଏହା ଭୁଲ୍ ଧାରଣା । ମୋର ଯେ ପ୍ରକୃତ ଭକ୍ତ, ସେ ତୁମ ସହିତ ଆଦୌ କଥାବାର୍ତ୍ତା କରିବ ନାହିଁ । ତୁମେ ମୋ' ସହିତ ଗଲେ ଅଲଗା କଥା ।"

ଲକ୍ଷ୍ମୀ କହିଲେ—"ଠିକ୍ଅଛି । ଯଦି ସେପରି କେହି ଭକ୍ତ ଅଛନ୍ତି ତେବେ ମୋତେ ଟିକିଏ ଦେଖାଇ ଦିଅ । ମୁଁ ଭାବୁଛି ସେପରି କେହି ଭକ୍ତ ନଥିବେ ।"

ଭଗବାନ୍ କହିଲେ—"ଠିକ୍ଅଛି । ଚାଲ ତୁମକୁ ଦେଖାଇଦେବି । ଏହାକହି ଭଗବାନ୍ ଲକ୍ଷ୍ମୀଙ୍କୁ ନେଇ ଏକ ବନସ୍ତକୁ ଗଲେ । ସୁନ୍ଦର ଆଶ୍ରମଟିଏ ଥିଲା । ସେଠାରେ ନାନାପ୍ରକାର ଫୁଲ, ଫଳ ଗଛ ଲଗା ହୋଇଥିଲା । ଜଣେ ବାନପ୍ରସ୍ଥୀ ନିଜ ପତ୍ନୀଙ୍କ ସହିତ ସେଠାରେ ରହୁଥିଲେ । ସେଠାରେ ଶ୍ରେଷ୍ଠ ତୁଳସୀ କାନନ ଥିଲା । ତା' ପାଖରେ ଏକ ଝାଟିମାଟିର କୁଡ଼ିଆ ଘର । ବାହାର ଅଗଣାରେ ଥିବା ଚଉରାରେ ଶାଳଗ୍ରାମ ପୂଜା ପାଉଥିଲେ । ବାନପ୍ରସ୍ଥୀ ନିତ୍ୟକର୍ମ ସାରି ବଣ ଭିତରକୁ ଯାଇ କନ୍ଦମୂଳ ଓ କିଛି ଫଳ ସଂଗ୍ରହ କରି ଆଣୁଥିଲେ । ଶାଳଗ୍ରାମ ଆଗରେ ସମର୍ପଣ କରିବା ପରେ ପ୍ରସାଦ ଗ୍ରହଣ କରୁଥିଲେ ।"

ମହାଲକ୍ଷ୍ମୀ ଯୋଗିନୀ ବେଶରେ ଆଶ୍ରମରେ ପହଞ୍ଚି କହିଲେ—"ମହାରାଜ ! ମୋତେ ରହିବା ପାଇଁ ଟିକିଏ ସ୍ଥାନ ଦେବେ ?"

ବାନପ୍ରସ୍ଥୀ ସାଧୁ କହିଲେ—"ମାତାଜୀ ମୁଁ ଜଣେ ଏକାକିନୀ ସ୍ତ୍ରୀକୁ ମୋର କୁଟୀରରେ ସ୍ଥାନ ଦେଇପାରିବି ନାହିଁ । ଆପଣଙ୍କ ସ୍ୱାମୀ ଥିଲେ କିଛି ଅସୁବିଧା ହୋଇ ନଥାନ୍ତା । ଆପଣ ନଗର ଭିତରକୁ ଚାଲିଯାଆନ୍ତୁ ।"

ଯୋଗିନୀ କହିଲେ—"ମୁଁ ଏବେ ଆଉ କୁଆଡ଼େ ଯିବି ? ମୋତେ ଏହି ରାତିଟି ମାତ୍ର ରହିବା ପାଇଁ ସ୍ଥାନ ଦିଅନ୍ତୁ ।"

ବାନପ୍ରସ୍ଥୀ କହିଲେ—"ଠିକ୍ ଅଛି । ଆପଣ ଏଇ ଗଛ ମୂଳରେ ରହନ୍ତୁ ।" ଯୋଗିନୀ ସେହି ଗଛ ମୂଳକୁ ଚାଲିଗଲେ । ବାନପ୍ରସ୍ଥୀଙ୍କ ପତ୍ନୀ ତାଙ୍କୁ କିଛି ଫଳ ମୂଳ ଦେବାକୁ ଆସିଲେ । ଯୋଗିନୀ କହିଲେ—"ଦେବୀ ! ଆପଣ ଏ ବଣରେ ଏତେ କଷ୍ଟରେ କାହିଁକି ରହୁଛନ୍ତି ? ଆପଣଙ୍କର ଯେତେ ଯାହା ଦରକାର ସେସବୁ ମୋ' ପାଖରୁ ନିଅନ୍ତୁ ।"

ଦେବୀ କହିଲେ—"ମାତାଜୀ ! ଆପଣ ଏପରି କଥା ମୋତେ କହିବେ ନାହିଁ । ମୋର ସର୍ବସ୍ୱ ଧନ ହେଉଛନ୍ତି ମୋର ପତି । ସେ ମୋର ପରମେଶ୍ୱର । ସେ ଥାଉଁ ଥାଉଁ ମୋର ଆଉ କ'ଣ ଦରକାର ?" ଏହା କହି ସେ ଫଳମୂଳ ଦେଇ ଫେରିଆସିଲେ ।

ସକାଳେ ଯୋଗିନୀ ଚାଲିଗଲେ । କିନ୍ତୁ ବାନପ୍ରସ୍ଥୀଙ୍କ ପତ୍ନୀ ଝାଡ଼ୁ କରିବାକୁ ଯାଇ ଦେଖିଲେ ସେହି ଗଛମୂଳେ ଗୁଡ଼ାଏ ମଣି ମୁକ୍ତା ପଡ଼ିଛି । ସେ ଅନ୍ୟାନ୍ୟ ଅଳିଆ ସହିତ ସେ ମଣିମୁକ୍ତାକୁ ନେଇ ଫିଙ୍ଗିଦେଲେ । ଯୋଗିନୀ ଏହିପରିଭାବେ କେତେଥର ସେଠାକୁ ଯାଇ ନାନାପ୍ରକାର ଅଳଙ୍କାର ଛାଡ଼ି ଆସନ୍ତି ଏବଂ ବାନପ୍ରସ୍ଥୀଙ୍କ ସ୍ତ୍ରୀ ଅଳିଆ ସହିତ ସେଗୁଡ଼ିକୁ ନେଇ ଫିଙ୍ଗି ଦିଅନ୍ତି । ଏପରି ଅନେକ ଥର ଘଟିବା ପରେ ଥରେ ଯୋଗିନୀ ଉପରେ ରାଗିଯାଇ ବାନପ୍ରସ୍ଥୀଙ୍କ ସ୍ତ୍ରୀ କହିଲେ, ଦେବୀ ! "ତୁମେ ପ୍ରତିଥର ଗୁଡ଼ାଏ ଅଳିଆ ଏଠି ପକେଇ ଦେଇଯାଉଛ । କିନ୍ତୁ ଆଉ ଥରେ ଯେପରି କଲେ ମୁଁ ଆପଣଙ୍କୁ ଅପମାନିତ କରିବି ।" ଏହା ଶୁଣି ଯୋଗିନୀ ବେଶଧାରିଣୀ ମହାଲକ୍ଷ୍ମୀ ସେଠାରୁ ଚାଲିଗଲେ ।

ମହାଲକ୍ଷ୍ମୀଙ୍କୁ ଦେଖି ଭଗବାନ୍ କହିଲେ—"ଦେବୀ ! ଦେଖିଲ ତ ମୋର ଭକ୍ତ କିପରି ନିଷ୍ପୃହ ? ମୋ' ବ୍ୟତୀତ ମୋ ଭକ୍ତ ରାଜ୍ୟ, ସ୍ୱର୍ଗ, ଧନ, ବୈଭବ ଏପରିକି ମୁକ୍ତି ମଧ୍ୟ ଇଚ୍ଛା କରେନାହିଁ । କିନ୍ତୁ ଯେ କେବଳ ତୁମରି ଭକ୍ତ ସେ ଧନମଦରେ ମତ୍ତ ହୋଇ ଅନ୍ୟ ସହିତ ମୋତେ ବି ଅପମାନିତ କରେ । ଦେଖ, ଯେ ପର୍ଯ୍ୟନ୍ତ ଶେଠ୍‌ର ମନୋରଞ୍ଜନ ହେଉଥିଲା ସେ ପର୍ଯ୍ୟନ୍ତ ସେ ମୋତେ ରଖିଲା । ଯେତେବେଳେ ତା'ର ସ୍ୱାର୍ଥରେ ବାଧା ଆସିଲା, ସେତେବେଳେ ମୋତେ ଧକ୍କା ଦେଇ ବାହାର କରିଦେଲା । ତେଣୁ ମୁଁ ଯାହା ପ୍ରତି ସଦୟ ହୁଏ ପ୍ରଥମେ ତା'ର ସର୍ବସ୍ୱ ହରଣ କରିନିଏ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହାଶୁଣି ମହାଲକ୍ଷ୍ମୀ ବୁଝିଗଲେ ଯେ, ମୁଁ ତ ନିଜେ ପ୍ରଭୁଙ୍କ ଦାସୀ । ଜଗତରେ ମୋର ଯେଉଁ ପ୍ରଭାବ ଅଛି ତାହା କେବଳ ଧନଲୋଭୀ ମୂର୍ଖ ଅଥବା ପାଠ ପଢ଼ି ମୂର୍ଖଙ୍କ ପରି ଆଚରଣ କରୁଥିବା

ବ୍ୟକ୍ତି ପାଖରେ ରହୁଛୁ । ଭଗବଦ୍ ଭକ୍ତ ଭଗବାନ୍‌ଙ୍କ ପାଇଁ ମୋତେ ପୂଜା କରୁଛନ୍ତି ଏବଂ ଭଗବତ୍ ସମ୍ବନ୍ଧିତ ରୂପେ ମୋତେ ପାଇବା ପାଇଁ ଇଚ୍ଛା କରୁଛନ୍ତି ।"

ଶୌନକ ପଚାରିଲେ—"ଭଗବନ୍ ନିଜ ଭକ୍ତର ସର୍ବସ୍ୱ ଅପହରଣ କରନ୍ତି କାହିଁକି ?"

ମହର୍ଷି ସୂତ କହିଲେ—ବ୍ରହ୍ମନ୍ ! ସେଇକଥା ମୁଁ କହୁଛୁ, ଆପଣମାନେ ମନଦେଇ ଶୁଣନ୍ତୁ ।

## ଛପ୍‌ପୟ

ବଧିର କେ ସୁନତକେ ବଚନ କହେଁ ହୃଦ ହଁସିକେ ବାନୀ ।
ବ୍ରହ୍ମନ୍ ! ତୁମ ସର୍ବଜ୍ଞ ବେଦବିଦ୍ ପଣ୍ଡିତ ଜ୍ଞାନୀ ॥
ଜନ୍ମ କର୍ମ ଐଶ୍ୱର୍ଯ୍ୟ ଅବସ୍ଥା ଅରୁ ସୁନ୍ଦର ତନ ।
ବିଦ୍ୟା ଧନ ଯେ ସବହିଁ ପ୍ରଶଂସିତ ଜଗ ମେଁ ହୈ ଗୁନ ॥
ଇନ ସବ ମହଁ ମଦ ରହତୁ ହୈ, ଧନ ମଦ ଅତି ହୀ ପ୍ରବଲତମ ।
ଧନ ମଦ ମହଁ ଉନ ମତ୍ତ ନର, ନେତ୍ର ସହିତ ହୁ ଅନ୍ଧ ସମ ॥



# ଭକ୍ତର ସର୍ବସ୍ୱ ହରି କାହିଁକି ହରଣ କରନ୍ତି ?

ଯସ୍ୟାହଂ ମନୁଗୃହ୍ଣାମି ହରିଷ୍ୟେ ତଦ୍ଧନଂ ଶନୈଃ ।
ତତୋଽଧନଂ ତ୍ୟଜନ୍ତ୍ୟସ୍ୟ ସ୍ୱଜନା ଦୁଃଖଦୁଃଖିତମ୍ ॥
( ଭା-୧୦-୮୮-୮ )

ଅପନେ ଆଗେ ଧନୀ ଗନହୁଁ ନହୁଁ କାହୁ ଜନ କୁଁ ।
ବଢ଼େଁ ଲଭ ତେଁ ଲେଭ ପାପ କର ଜୋରେ ଧନ କୁଁ ।
ତାତେଁ ଜାପୈ କୃପା କରହୁଁ ହୌଁ ସବ ମଦହାରୀ ।
ନାସୂଁ ଧନ ଐଶ୍ୱର୍ଯ୍ୟ ବନାଉଁ ତାହି ଭିଖାରୀ ।
ଧନ, ପଶୁ, ପୁତ୍ର କଲତ୍ର ଜେ, କରେଁ ବିଘ୍ନ ହରି ଭଜନ ମହିଁ ।
ଦେଖି ସକହୁଁ ନହୁଁ ତନହୁଁ ହୌଁ , ନାସି ଲେହୁଁ ନିଜ ଶରନ ମହିଁ ॥

ମନ ଗୋଟିଏ, ତା'ଦ୍ୱାରା ଇଚ୍ଛା ହେଲେ ବିଷୟ ଅର୍ଜନ କର ଅଥବା ହରିଙ୍କୁ ଭଜନ କର । ସଂସାରରେ ଯେତେ ବିଷୟ ଅଛି, ପ୍ରଭୁଙ୍କ ସେବାରେ ସେ ସବୁର ଉପଯୋଗ ହେବା ବାଞ୍ଛନୀୟ । ଫୁଲଟି ସୁନ୍ଦର ଦେଖାଯାଏ, କିନ୍ତୁ ଘ୍ରାଣେନ୍ଦ୍ରିୟକୁ ସୁଗନ୍ଧସୁଖ ଦେଇଥିବାରୁ ତାହା ସୁନ୍ଦର ଦେଖାଯାଏ ନାହିଁ, ପ୍ରଭୁଙ୍କ ସେବାରେ ଲାଗୁଥିବାରୁ ଫୁଲଟି ସୁନ୍ଦର ଦେଖାଯାଏ ଓ ସୁଖଦ ମନେ ହୁଏ । ସେହିପରି ସଂସାରର ସମସ୍ତ ପଦାର୍ଥ, ସମସ୍ତ ସୁମିଷ୍ଟ ଦ୍ରବ୍ୟ, ସମସ୍ତ ଶ୍ରେଷ୍ଠ ଦ୍ରବ୍ୟ ପ୍ରଭୁଙ୍କ ସେବାରେ, ନୈବେଦ୍ୟରେ ଲାଗୁଥିବାରୁ ସେ ସବୁର ମହତ୍ତ୍ୱ ରହିଛି । ଘୋଡ଼ା ଉପରେ ବସି ଯିବାବେଳେ ଦୂରପଥ ଯାତ୍ରା ଯେତେ ସୁଖକର ମନେହୁଏ, ଘୋଡ଼ାକୁ ନିଜ ପିଠିରେ ବହି ଚାଲିଲେ ତାହା ତତୋଧିକ ଦୁଃଖଦାୟକ ହୋଇଥାଏ । ମୋହବଶତଃ ଆମେ ଏପରି କାର୍ଯ୍ୟ କରିଥାଉ । ଭଗବାନଙ୍କ ସେବାରେ ଉପଯୋଗ କରିବାଦ୍ୱାରା ଧନର ସର୍ବୋତ୍ତମ ବିନିଯୋଗ ହୁଏ । ତେଣୁ ସଞ୍ଚିତ ଧନରେ ଭଗବାନଙ୍କ ପୂଜା କରାଯାଉ,

ଅସଂଖ୍ୟ ନରନାରୀ ପ୍ରସାଦ ସେବନ କରନ୍ତୁ, ଭଗବତ୍ ନାମ କୀର୍ତ୍ତନ କରାଯାଉ, ଭଗବାନ୍‌ଙ୍କ ଲୀଳା ଅନୁଷ୍ଠିତ ହେଉ, ଗୋ, ବ୍ରାହ୍ମଣ ଓ ଅତିଥିଙ୍କୁ ପୂଜା କରାଯାଉ, ଦୀନଦରିଦ୍ର, ଆତୁରମାନଙ୍କ ସେବା କରାଯାଉ ଏବଂ ଲୋକମାନଙ୍କ ହୃଦୟରେ ଆଧ୍ୟାତ୍ମିକ ବଳ ବୃଦ୍ଧିପାଉ । ଏହିପରି ଭାବପୋଷଣ କରି ଧନର ବିନିଯୋଗ ହେବା ବାଞ୍ଛନୀୟ । ଧନକୁ ଭଗବାନ୍‌ଙ୍କ ଦାନ ବୋଲି ମନେ କରି ଯଦି ଏହିପରି ଲୋକହିତ-କର କାର୍ଯ୍ୟରେ ବ୍ୟୟ କରାଯିବ ତେବେ ସେଥିରୁ ଅପୂର୍ବ ଆନନ୍ଦ ମିଳିବ । କିନ୍ତୁ ତାହା ନକରି ଯଦି ଧନକୁ ଉତ୍ତରୋତ୍ତର ବୃଦ୍ଧି ପାଇଁ ଚିନ୍ତା କରାଯିବ, ଦାନଧର୍ମ କରା ନ ଯିବ ତେବେ ସେହି ଧନ ଘୋଡ଼ାକୁ ନିଜ ପିଠି ରେ ବହିଲା ପରି ଚରମ ଦୁଃଖର କାରଣ ହେବ । ଭଗବାନ୍ ଲୋକଙ୍କଦ୍ୱାରା ସଂସାରର ହିତସାଧନ କରନ୍ତି । ସେଥିପାଇଁ ସେ କେତେକ ଲୋକଙ୍କୁ ଐଶ୍ୱର୍ଯ୍ୟ ଦାନ କରନ୍ତି । ପୁଣି ଧନରୁ ତା'ର ମୋହ ତୁଟେଇଦେବା ପାଇଁ ସର୍ବସ୍ୱ ଅପହରଣ କରନ୍ତି । ସର୍ବସ୍ୱ ଅପହୃତ ହେବା ପରେ, ନିଃସ୍ୱ ହୋଇଯିବା ପରେ ମଧ୍ୟ ସେ ଆଦୌ ଚିନ୍ତିତ ହୁଏ ନାହିଁ, ଯେ ପ୍ରଭୁଙ୍କ କୃପା ଅନୁଭବ କରେ, ତା'ର ମୋହ ଦୂର କରି ଭଗବାନ୍ ପୁଣି ତାକୁ ଧନସମ୍ପଦ ଦାନ କରନ୍ତି । ତେଣୁ ଭଗବାନ୍ ଯେତେବେଳେ ଭକ୍ତର ସର୍ବସ୍ୱ ଅପହରଣ କରନ୍ତି, ତା'ର ବନ୍ଧୁବାନ୍ଧବଙ୍କୁ ବିନାଶ କରନ୍ତି, ସେତେବେଳେ ସେ ନିଜ ଭକ୍ତ ପ୍ରତି ଦୟା ପ୍ରଦର୍ଶନ କରୁଛନ୍ତି ବୋଲି ବୁଝିବା ଆବଶ୍ୟକ । କାରଣ, ଭଗବାନ୍ ଯାହା କରନ୍ତି ତାହା ପ୍ରାଣୀର ମଙ୍ଗଳ ପାଇଁ ଉଦ୍ଦିଷ୍ଟ । ଯାହା ମଙ୍ଗଳମୟ ତାହା ଅକଲ୍ୟାଣକର ହେବ କିପରି ?''

ମହର୍ଷି ସୂତ କହିଲେ—''ମୁନିଗଣ ! ଭଗବାନ୍ ଭକ୍ତର ସର୍ବସ୍ୱ କାହିଁକି ଅପହରଣ କରନ୍ତି ବୋଲି ମୋତେ ପଚାରୁଥିଲେ । ମୁଁ ତା'ର ଉତ୍ତର ଦେଉଛି । ସୁନାକୁ ବାରମ୍ବାର ଉତ୍ତପ୍ତ କରାଯାଏ । ଯାହା'ର ଉତ୍ତୀର୍ଣ୍ଣ ହେବାର ଅଭିଳାଷ ଥାଏ, ତାହାକୁ ପରୀକ୍ଷା କରାଯାଏ । ସେହିପରି ଭକ୍ତକୁ ଆର୍ଥିକ କଷ୍ଟଦେଇ ଭଗବାନ୍ ତା'ର ଚିତ୍ତକୁ ବିଷୟରୁ ନିବୃତ୍ତ କରାଇ ନିଜ ଆଡ଼କୁ ନେଇଯାନ୍ତି । କିନ୍ତୁ ଶ୍ରୀହରିଙ୍କ ଅପେକ୍ଷା ଧନରେ ଯଦି ଭକ୍ତର ମନ ଲାଗିଯାଏ, ତେବେ ପ୍ରଭୁ ତା'ର ଧନସମ୍ପଦ ଅପହରଣ କରନ୍ତି । ଐଶ୍ୱର୍ଯ୍ୟ ଗର୍ବକୁ ଖର୍ବ କରନ୍ତି । ଦାନ ଧର୍ମରେ କାହାର ଅଭିମାନ ଜାତ ହେଲେ ପ୍ରଭୁ ତା'ର ଅଭିମାନ ଚୂର୍ଣ୍ଣ କରନ୍ତି । ଏହାର ଉଦାହରଣ ସ୍ୱରୂପ ଏକ ସୁନ୍ଦର କାହାଣୀ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।''

ଦିନେ ମହାଲକ୍ଷ୍ମୀ ପ୍ରଭୁଙ୍କୁ ପଚାରିଲେ – ପ୍ରଭୋ ! ଆପଣ ନିଜ ଭକ୍ତମାନଙ୍କୁ ଧନଶାଳୀ କରୁନାହାନ୍ତି କାହିଁକି ?

ଭଗବାନ୍ କହିଲେ—ମୋର ଭକ୍ତ ସୁନା, ରୂପା, ଟଙ୍କା ପଇସାରେ ଧନୀ ହେବା ଅପେକ୍ଷା ଭକ୍ତିକୁ ସର୍ବଶ୍ରେଷ୍ଠ ଧନ ବୋଲି ମନେ କରନ୍ତି । କାରଣ ଧନ ସମ୍ପଦର ମାୟାରେ ପଡ଼ିଗଲେ ସେମାନେ ମୋତେ ବି ଭୁଲିଯିବେ ।

ମହାଲକ୍ଷ୍ମୀ ପଚାରିଲେ—ପ୍ରଭୋ ! ଘରେ ଯଥେଷ୍ଟ ଧନ ଥିଲେ ସିନା ଜଣେ ଦାନଧର୍ମ କରିବ, ଉଦାର ହେବ ଓ ପରୋପକାର ସାଧନ କରିପାରିବ । ଯାହା ପାଖରେ ଅର୍ଥ ନ ଥିବ ସେ ଏସବୁ କାମ କପରି କରିବ ?

ଭଗବାନ୍ କହିଲେ – ଧନୀ ହୋଇ ନିଃସ୍ୱାର୍ଥପର ଭାବେ ଦାନଧର୍ମ କରିବା ଲୋକ ପ୍ରାୟ ବିରଳ । ଧନ ଆସିଲା ମାତ୍ରେ ଲୋଭ ବଢ଼େ, ମନ ଧର୍ମକାର୍ଯ୍ୟର ବିରୋଧି ହୋଇଉଠେ ଅଥବା ଧନକୁ ଏକଜ ସଂଗ୍ରହ କରିବାରେ ଲାଗିପଡ଼େ, ନୋହିଲେ ବିଷୟ ବାସନାରେ ମଜ୍ଜିଯାଏ । ଆଚ୍ଛା, ଠିକ୍ ଅଛି । ତୁମକୁ ଦିନେ ଏହି ଲୀଳା ଦେଖାଇଦେବା ।

ଦିନେ ଭଗବାନ୍ ନିଜେ ବୃଦ୍ଧ ବ୍ରାହ୍ମଣ ବେଶରେ ଓ ଲକ୍ଷ୍ମୀଙ୍କୁ ବୁଢ଼ୀ ବେଶରେ ସାଙ୍ଗରେ ନେଇ ଜଣେ ଧନୀଲୋକ ଘରକୁ ଗଲେ । ତା' ଦୁଆର ମୁହଁରେ ଶହେ ଦୁଧିଆଳି ଗାଈ ବନ୍ଧା ହୋଇଥିଲେ । ବୁଢ଼ାବୁଢ଼ୀ ଦୁହେଁ ଗୃହିଣୀଙ୍କୁ କହିଲେ — ମାତାଜୀ ! ଆମେ ବୁଢ଼ା, ଦୁର୍ବଳ ଓ କ୍ଷୁଧାର୍ଥ । ଦେହ ଭଲନାହିଁ । ଟିକିଏ ଦୁଧ ଆମକୁ ଦିଅନ୍ତୁ ।

ଏହା ଶୁଣିବାମାତ୍ରେ ଗୃହିଣୀ କ୍ରୋଧରେ ଜଳିଉଠିଲା ପରି କହିଲେ—ତୁମେ ଦୁହେଁ ଘର ଘର ବୁଲି ଭିକ ମାଗୁଛ, ଚୋରିଆଡ଼େ ବୁଲୁଛ । କିଛି କାମ ତ କରୁନାହଁ । ବିନା ପରିଶ୍ରମରେ ଯେତେବେଳେ ଗୁଜୁରାଣ ମେଣ୍ଟିଯାଉଛି ସେତେବେଳେ ଆଉ କାମ କରିବ କାହିଁକି ? ଭିକ ତ ମାଗୁଛ, ନିଜର ଜିହ୍ୱାକୁ ଆୟତ୍ତରେ ରଖିପାରୁନ ? ମନ ହେଉଛି ଦୁଧ, ରାବଡ଼ି ଖାଇବାକୁ ସତେ ଦୁଧ ଯେମିତି ପାଣି । ମାଗି ନେଇ-ଯିବାକୁ ଆସି ପହଞ୍ଚିଗଲ । ଯା ବାହାରି ଏଠାରୁ ।

ବୁଢ଼ା ଟିକିଏ ଜିଦ୍‌ଖୋର ଥିଲା । ବୁଢ଼ା କହିଲା—ମାତାଜୀ ! ଅଳ୍ପ କିଛି ଦିଅନ୍ତୁ । ଖାଲି ପେଟରେ ଆଉ ଚାଲିହେଉ ନାହିଁ ।

ଗୃହିଣୀ କହିଲେ—କହିବ ତ ଦହି ପାଏ ଖଣ୍ଡେ ଦେବି । ଭଗବାନ୍ କହିଲେ—ହଉ ଆଣ । ଗୃହିଣୀ ଦହି କିଛି ଆଣି ଦେଲେ । ବୁଢ଼ା ସେତକ

ପିଇଦେଇ କହିଲ—ମାତାଜୀ ! ତୁମର ଉନ୍ନତି ହେଉ । ହଜାରେ ଗାଈ ହୋଇଯାନ୍ତୁ । ଏହାକହି ବୁଢ଼ାବୁଢ଼ୀ ଦୁହେଁ ସେଠାରୁ ଯାଇ ଜଣେ ଦରିଦ୍ର ବ୍ରାହ୍ମଣ ଘରେ ପହଞ୍ଚିଲେ ।

ଗ୍ରାମର ଶେଷଭାଗରେ ବ୍ରାହ୍ମଣ ଏକ କୁଡ଼ିଆ ଘରେ ରହୁଥିଲେ । ସ୍ୱାମୀ, ସ୍ତ୍ରୀ ଓ ତାଙ୍କର ଏକ ଶ୍ରେଷ୍ଠ ପିଲା । ଘର ଆଗରେ ଗାଈଟିଏ ବନ୍ଧା ହୋଇଥିଲା । ଭଗବାନ୍ ସେଠାରେ ପହଞ୍ଚି କହିଲେ—ଆମେ ବୁଢା ମଣିଷ । ଆମକୁ କିଛି ଦୁଧ ଦିଅ ।

ଏହା ଶୁଣିବା ମାତ୍ରେ ବ୍ରାହ୍ମଣ ବସିବା ପାଇଁ ଆସନ ଦେଲେ ଏବଂ ପାଦ ଧୋଇଦେଇ ନମ୍ରତାର ସହିତ କହିଲେ—ବ୍ରାହ୍ମଣ ! ମୋ' ଗାଈଟି ପ୍ରତିଦିନ ଅଧସେର ତିନିପା ଦୁଧ ଦେଉଛି । କୌଣସିମତେ କାମ ଚଳିଯାଉଛି । ଆପଣ ତ ସନ୍ଧ୍ୟାବେଳେ ଆସିଛନ୍ତି । ଯେତିକି ଦୁଧ ଥିବ ମୁଁ ଆପଣଙ୍କୁ ଦେବି ।

ବ୍ରାହ୍ମଣୀ ଘର ଭିତରେ ଥାଇ ସବୁକଥା ଶୁଣୁଥିଲେ । ସେ ବାହାରି ଆସି କହିଲେ—କିଛି ଦୁଧ ମୁଁ ଛୁଆପାଇଁ ରଖିଛି । ପିଲାଟା ତ ପ୍ରତିଦିନ ପିଉଛି । କିନ୍ତୁ ଅତିଥି କଣ ସବୁବେଳେ ଆସୁଛନ୍ତି ? ସେହି ଦୁଧ ଏମାନଙ୍କୁ ଦେଇଦେବା ।

ଏହାଶୁଣି ବ୍ରାହ୍ମଣ ଉଠିଗଲେ ଓ ଦୁଧ ନେଇ ଆସିଲେ । ବ୍ରାହ୍ମଣ କହିଲେ—ବ୍ରାହ୍ମଣ ! ଗାଈଟା କମ୍ ଦୁଧ ଦେଉଛି । ତାକୁ ଘାସ ଖାଇବାକୁ ଦେବାପାଇଁ ମୋତେ ସାରାଦିନ ପରିଶ୍ରମ କରିବାକୁ ପଡ଼ୁଛି । ଘାସ ଖାଇଲେ ସେ କିଛି କ୍ଷୀର ଦେଉଛି । ଏତିକି ଦୁଧ ଅଛି, ପିଅନ୍ତୁ । ଏହା କହି ବ୍ରାହ୍ମଣ ଭଗବାନ୍‌ଙ୍କୁ ଦୁଧ ଦେଲେ । ଭଗବାନ୍ ଏକ ନିଃଶ୍ୱାସରେ ସେତିକି ପିଇଦେଲେ । ଲକ୍ଷ୍ମୀଙ୍କ ପାଇଁ ଟୋପାଏ ବି ରଖିଲେ ନାହିଁ । ପିଇସାରି ଭଗବାନ୍ କହିଲେ—ତୁମର ଏ ଗାଈଟି ନଷ୍ଟ ହୋଇଯାଉ ।

ଏହାକହି ଭଗବାନ୍ ବାଡ଼ିଧରି ଚାଲିଲେ । ଲକ୍ଷ୍ମୀ ପଚାରିଲେ—ପ୍ରଭୋ ! ଯେ ଆପଣଙ୍କୁ ଟିକିଏ ଦୁଧ ଦେଲାନାହିଁ, ମୁହଁଏ ପାଣିଆ ଦହି ଦେଲା, ତାକୁ ଆପଣ ଆଶୀର୍ବାଦ ଦେଇ କହିଲେ 'ତୋର ହଜାରେ ଗାଈ ହୁଅନ୍ତୁ' । କିନ୍ତୁ ଯେ ନିଜ ଛୁଆ ପେଟରୁ କାଟି ତୁମକୁ ସବୁ ଦୁଧ ଦେଇଦେଲା ଆପଣ ତାକୁ ଅଭିଶାପ ଦେଲେ

'ତୋର ଗାଈ ନଷ୍ଟ ହୋଇଯାଉ' । ଆପଣ ଏପରି ବିପରୀତ ବ୍ୟବହାର କଲେ କାହିଁକି ? ଏପରି ବିଷମ ଚିନ୍ତାର କାରଣ କଣ ?

ମହାଲକ୍ଷ୍ମୀଙ୍କ ପ୍ରଶ୍ନ ଶୁଣି ଭଗବାନ୍ ହସି ହସି କହିଲେ—ଦେଖ, ଯାହା ଉପରେ ମୁଁ ଦୟାକରେ ପ୍ରଥମେ ତା'ର ସର୍ବସ୍ୱ ଅପହରଣ କରିନିଏ । ମଣିଷ ମାୟା ମୋହରେ ପଡ଼ି ମୋତେ ଭୁଲିଯାଏ । ସେତେବେଳେ ସମସ୍ତଙ୍କୁ ସେ ତୁଚ୍ଛ ମନେକରେ । ସମସ୍ତଙ୍କୁ ଅପମାନିତ କରେ, ଦାନଧର୍ମରେ ତା'ର ଆଗ୍ରହ ଆସେ ନାହିଁ ଏବଂ ଅହୋରାତ୍ର ସେ ଧନକୁ ଜୋଡ଼ିଏ ଓ ଜୋଡ଼ିଏକୁ ତିରିଶ କରିବା ଚିନ୍ତାରେ ଲାଗିରହେ । ସେପରି ଲୋକଙ୍କୁ ମୁଁ ଅଧିକରୁ ଅଧିକ ସମ୍ପତ୍ତି ଦିଏ । ବର୍ତ୍ତମାନ ଶହେ ଗାଈଥିବା ଲୋକ ଦହି ପିଇବାକୁ ଦେଲା । କିନ୍ତୁ ତା'ର ହଜାରେ ଗାଈ ହୋଇଗଲେ ସେ ସେତିକ ମଧ୍ଯ ଆଉ ଦେବନାହିଁ । ସେଥିପାଇଁ ତା'ର ହଜାରେ ଗାଈ ହେଉବୋଲି ଆଶୀର୍ବାଦ ଦେଲି । ଏଇ ବ୍ରାହ୍ମଣ ବ୍ରାହ୍ମଣୀ ମୋର ଭକ୍ତ ଏବଂ ସର୍ବଦା ମୋର ଭଜନରେ ଲାଗି ରହିଛନ୍ତି । ତଥାପି ଭଜନରେ ସେଇ ଗାଈଟି ବାଧା ସୃଷ୍ଟି କରୁଛି । ଗାଈ ଚିନ୍ତା ନ ଥିଲେ ସେ ପୂରା ସମୟ ମୋ' ଭଜନରେ ଲାଗନ୍ତା । ତେଣୁ ଅଧିକ ଭଜନ କରିବା-ପାଇଁ ମୁଁ ତା'ର ଗାଈ ନ ରହନ୍ତୁ ବୋଲି ଅଭିଶାପ ଦେଲି ।

ଭଗବାନ୍‌ଙ୍କ କଥା ଶୁଣି ମହାଲକ୍ଷ୍ମୀ ବୁଝିପାରିଲେ ଯେ, ପ୍ରଭୁ ଯାହାକୁ ଦରିଦ୍ର କରନ୍ତି ତା'ର ଶ୍ରଦ୍ଧା ବୃଦ୍ଧି ପାଇଁ କରନ୍ତି । ଯେ ଧନ ଦରିଦ୍ର ହୋଇଯାଏ ସେ ଆଶାନ୍ଵିତ ହୋଇ ସମସ୍ତଙ୍କ ଆଡ଼କୁ ଚାହେଁ, ସମସ୍ତଙ୍କୁ ଆଦର କରେ । କିନ୍ତୁ ଧନୀହେଲେ ତା' ମନରେ ଗର୍ବଜାତ ହୁଏ, ମୁଣ୍ଡଟେକି ଚାଲେ ଏବଂ ସମସ୍ତଙ୍କୁ ଅପମାନିତ କରେ । ସେଥିପାଇଁ ଭକ୍ତକୁ ଭଗବାନ୍ ଜାଣି ଜାଣି ନିର୍ଦ୍ଧନ କରନ୍ତି, କେବଳ ତା'ର କଲ୍ୟାଣ ସାଧନ ପାଇଁ, ନିର୍ଦ୍ଧନତା ହିଁ ଭଗବାନ୍‌ଙ୍କ ଦୟାର ନିଦର୍ଶନ ।

ମହର୍ଷି ଶୌନକ କହିଲେ—ହେ ସୂତ ! ତେବେ ତ ସବୁ ଦରିଦ୍ର ପୁରୁଷ ପୁଣ୍ୟାତ୍ମା ହୋଇଥିବେ । ନିର୍ଦ୍ଧନମାନଙ୍କ ଦ୍ୱାରା ଯଦି ଭଗବଦ୍ ଭଜନ ହେଉଥାନ୍ତା ତେବେ ଧନହୀନ ଲୋକେ ସମସ୍ତେ ଭଗବଦ୍‌ଭକ୍ତ ହୋଇଥାନ୍ତେ । କିନ୍ତୁ ସାଧାରଣତଃ ଦେଖାଯାଏ, ଦାରିଦ୍ର୍ୟ ଦୁଃଖରେ ଉତ୍ପୀଡ଼ିତ ହୋଇ ଲୋକେ ନାନାପ୍ରକାର ପାପକାର୍ଯ୍ୟ କରନ୍ତି । ଅନ୍ୟ ପକ୍ଷରେ କେତେକ ଧନୀ ବ୍ୟକ୍ତି ସଦାଚାରୀ, ଭଗବତ୍‌ଭକ୍ତ, ଅଭିମାନ-ଶୂନ୍ୟ ଓ ନିସ୍ପୃହ ଥିବାର ମଧ୍ଯ ଦେଖାଯାନ୍ତି । ଆପଣ ଦୟାକରି ଏ ବିଷୟରେ ଆମର ସନ୍ଦେହ ଦୂରକରନ୍ତୁ ।

ଏହା ଶୁଣି ମହର୍ଷି ସୂତ କହିଲେ—ମୁନିଗଣ ! ଏହାର ରହସ୍ୟ ମୁଁ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।”

## ଛପ୍‌ପୟ

ଜେ ଜନ ସବକୁଛ ତ୍ୟାଗି ଶରନ ମେରୀ ମହଁ ଆୱେଁ ।
ତେ ତଜି ସବ ଅଭିମାନ ନିରନ୍ତର ମମ ଗୁନ ଗାୱେଁ ॥
ଜାତି ବରନ ଅଭିମାନ କରୌଁ ନହିଁ ଧନ ମହଁ ମମତା ।
ପରହିତ ମହଁ ନିତ ନିରତ ତଜୈଁ ସବ ମଦ ଉଦ୍ଧତତା ॥
ତ୍ୟାଗି ମାନ ମଦ ସବନି ମହଁ, ନିରଖେ ଶ୍ରୀ ଭଗବାନ୍ ହୈ ॥
ସବ ଅନର୍ଥ କେ ମୂଲ ଯେ, ମିଥ୍ୟା ହୀ ଅଭିମାନ ହୈଁ ॥



## ଭଗବତ୍ କୃପାର ଲକ୍ଷଣ

ଜନ୍ମ କର୍ମବୟୋରୂପ ବିଦ୍ୟୈଶ୍ୱର୍ଯ୍ୟ ଧନାଦିଭିଃ ।
ଯଦ୍ ଯସ୍ୟ ନ ଭବେତ୍ ସ୍ତମ୍ଭସ୍ତତ୍ରାୟଂ ମଦନୁଗ୍ରହଃ ॥

( ଭା-୮-୨୨-୨୬ )

### ଛପ୍ପୟ

ମାୟା ମୋହିତ ଜୀବ ଜଗତ ମହିଁ ସୁଖ ଦୁଃଖ ଦେଖେଁ ।
କିନ୍ତୁ ଭକ୍ତ ସବ ମାଁହି ନିରନ୍ତର ମୋକୂଁ ପେଖେଁ ॥
ହରି ଜିନ ରାଖେଁ ରହେଁ ଖବାୟ ଜୋ ସୋ ଖାୱେଁ ।
ରାଖେ ଜହଁ ରହି ଜାୟ ବିଷ୍ଣୁ ବାନ୍ଧେ ବନ୍ଧ ଜାୱେଁ ॥
ଐସୀ ଜିନ୍‌କୀ ମତ ସଦା, କୃପା ପ୍ରତୀକ୍ଷା ନିତ କରହିଁ ।
ପରମ ଅନୁଗ୍ରହ ପାତ୍ର ମମ, ତେ ଭବ ସତେଁ ଗିରତରହିଁ ।

ଅଭିମାନ କରିବାର ଅନେକ କାରଣ ଅଛି ! ଭାଗ୍ୟବଶତଃ ଯଦି କାହାକୁ କିଛି ମିଳିଗଲା ତେବେ ତାହାକୁ ପ୍ରଭୁଙ୍କ ପ୍ରସାଦ ବୋଲି ମନେ ନ କରି କେବେ ନିଜର କୃତିତ୍ୱ ବୋଲି ପ୍ରଚାର କରନ୍ତି । ସେଥିପାଇଁ ଅନ୍ୟ ଆଗରେ ନିଜର ଅଭିମାନ ଦେଖାନ୍ତି । ଉଚ୍ଚକୁଳରେ ଜନ୍ମ ହୋଇଥିବା ଲୋକ କହେ—ମୁଁ ଅମୁକ କୁଳରେ ଜନ୍ମ ହୋଇଛି । ଆମର ପୂର୍ବପୁରୁଷ ଏମିତି ଏମିତି ଥିଲେ । ସେହି ମିଥ୍ୟା ଅଭିମାନରେ ବିଭୋର ହୋଇ ସେ ଅନ୍ୟମାନଙ୍କୁ ତିରସ୍କାର କରେ । କେହି ନିଜର ବର୍ଣ୍ଣ ଓ ଆଶ୍ରମ ଅନୁରୂପ କର୍ମ-କରୁଥିଲେ ସେ ଅଭିମାନରେ ଫାଟିପଡ଼େ । ସମସ୍ତଙ୍କୁ ସେ କହେ—ମୁଁ ଏତେ ଜପ କରୁଛି । ଆମେ ଅମୁକ ଅମୁକ ଆଚାର ବ୍ୟବହାରରେ ଜୀବନ କଟାଉଛୁ । ଅମୁକ ବ୍ୟକ୍ତି ଏକ ଭ୍ରଷ୍ଟ । ସେ ପଣ୍ଡିତ ହେଲେ କ'ଣ ହେବ ଆମପରି ସତ୍‌ଜୀବନଯାପନ କରୁନାହିଁ । ଯୁବକ ବ୍ୟକ୍ତି ଯୌବନ ଗର୍ବରେ ବୃଦ୍ଧମାନଙ୍କୁ ତିରସ୍କାର କରେ । ବୁଢ଼ାମାନଙ୍କ ଫାଙ୍କୁଲା ପାଟିକୁ ଅନୁକରଣ କରି ଉପହାସ କରେ । କିନ୍ତୁ ଏଥିରେ ହସିବାର କ'ଣ ଅଛି ? ତୁମେ ବି ତ ଦିନେ ବୁଢ଼ା ହେବ । ଏହି ବୁଢ଼ା ମଧ୍ୟ ଦିନେ ତୁମ ପରି ଯୁବକ ଥିଲେ ।

କିନ୍ତୁ କେହି ଏହା ଭାବେ ନାହିଁ । କେହି ନିଜ ସୌନ୍ଦର୍ଯ୍ୟ ବିଷୟରେ ଗର୍ବ କରେ ଏବଂ କୁରୂପ ଓ କୁତ୍ସିତମାନଙ୍କୁ ଘୃଣା କରେ । ଯେ ଅସୁନ୍ଦର ତାକୁ ନିନ୍ଦା କରେ । ସେହିପରି କେହି ନିଜ ଜ୍ଞାନ ବିଷୟରେ ଗର୍ବ ପ୍ରକାଶ କରେ । ଅନ୍ୟମାନଙ୍କୁ ସେ ତୃଣବତ୍ ମନେକରେ । କେହି ଧନ ସମ୍ପଦ ପାଇ ମଦାନ୍ଧ ହୋଇଯାଏ । ନିଜ ଆଗରେ ଥିବା ଲୋକଙ୍କୁ ଦେଖି ମଧ୍ୟ ନ ଦେଖିଲା ପରି ରହେ । ଧନୀ ଲୋକେ ନିର୍ଦ୍ଧନମାନଙ୍କୁ ତୁଚ୍ଛ ମନେ କରନ୍ତି ଏବଂ ନିଜଠାରୁ ତଳ ସ୍ତରରେ ଥିବା ଲୋକଙ୍କୁ ଅପମାନିତ କରନ୍ତି । କିନ୍ତୁ ଉତ୍ତମ କୁଳରେ ଜନ୍ମ ହୋଇ, ଉତ୍ତମ କର୍ମ କରି, ନୀରୋଗ, ସୁନ୍ଦର ଓ ଯୁବକ ହୋଇ, ବିଦ୍ୟାରେ ସଫଳ ହୋଇ, ଅପାର ଐଶ୍ୱର୍ଯ୍ୟ ଓ ଅପରିମିତ ଧନସମ୍ପଦ ପାଇ ମଧ୍ୟ ଯେ ଅଭିମାନ ନ କରେ ଭଗବାନ୍ ତା'ପ୍ରତି ସର୍ବାଧିକ ଅନୁଗ୍ରହ ପ୍ରଦର୍ଶନ କରନ୍ତି ।

ଶୌନକ ପଚ୍ଚରିବାରୁ ମହର୍ଷି ସୂତ କହିଲେ—"ମୁନିଗଣ ! ଅସତ୍ ପା'ତ୍ରକୁ ଦାନ ଦେଲେ ମଣିଷ ପରଜନ୍ମରେ ଦରିଦ୍ର ହୁଏ । ଦରିଦ୍ର ଲୋକେ କି ପ୍ରକାର ଦୁଃଖ କଷ୍ଟ ଭୋଗ କରନ୍ତି ସେ ବିଷୟରେ ଆପଣମାନଙ୍କର ଅନୁଭୂତ ନାହିଁ । ପେଟ ଯେତେବେଳେ ନ ପୁରେ ସେତେବେଳେ ମଣିଷ ଯେ କୌଣସି ପ୍ରକାର ପାପକାର୍ଯ୍ୟ କରିବାକୁ କୁଣ୍ଠିତ ହୁଏ ନାହିଁ । ପାପ ଆଚରଣର ଫଳ ହେଉଛି ନର୍କଭୋଗ । ପାପ କର୍ମ କରି ମଣିଷ ନର୍କକୁ ଯାଏ । ନର୍କ ଭୋଗ ପରେ କୌଣସି ଅଧମ ଯୋନିରେ ସେ ମଣିଷ ଜନ୍ମପାଏ । ସେଠାରେ ପୁଣି ପାପ କରେ ଓ ପୁଣି ନର୍କକୁ ଯାଏ । ଏହିପରି ବାରମ୍ବାର ସେ ଦରିଦ୍ର ହୋଇ ଜନ୍ମଗ୍ରହଣ କରେ । ତେଣୁ ଦାରିଦ୍ର୍ୟ ହେଉଛି ପାପର ଚିହ୍ନ । କିନ୍ତୁ ପୁଣ୍ୟ କାର୍ଯ୍ୟ କରିବା ଦ୍ୱାରା ଯେଉଁ ଦାରିଦ୍ର୍ୟ ଆସେ ତାହା ପରମ ପୁଣ୍ୟର ଫଳ ବୋଲି ବିବେଚିତ ହୁଏ । ଯେଉଁ ଦରିଦ୍ର୍ୟତାରେ ତୃଷ୍ଣା, ଅସନ୍ତୋଷ, ଦୁଃଖ, ଗ୍ଲାନି ଓ ଅଶାନ୍ତି ଥାଏ ତାହାକୁ ପାପମୂଳକ ଦରିଦ୍ରତା କହନ୍ତି । ଯେଉଁ ଦରିଦ୍ରତାଦ୍ୱାରା ସନ୍ତୋଷ ମିଳେ, ମନରେ ସୁଖ ଓ ଶାନ୍ତି ଆସେ ତାହାକୁ ପରମ ପୁଣ୍ୟର ଫଳ ବୋଲି କହନ୍ତି ।

ଭଗବଦ୍‌ଭକ୍ତମାନଙ୍କ ପାଖରେ ଧନ ଥାଏ । କିନ୍ତୁ ସେ ଧନକୁ ସେମାନେ ନିଜର ବୋଲି ଭାବନ୍ତି ନାହିଁ । ସେମାନେ ନିଜକୁ ବେତନଭୋଗୀ କର୍ମଚାରୀ ବୋଲି ମନେ କରନ୍ତି । ଯଦି ଧନସମ୍ପଦ ପାଇ କାହା'ର ମନରେ ଗର୍ବ ଆସେ ତେବେ ଗର୍ବଗଞ୍ଜନ ମଧୁସୂଦନ ତା'ର ଅହଙ୍କାର ଦୂର କରିବା ପାଇଁ ତାକୁ ଦରିଦ୍ର କରିଦିଅନ୍ତି । ଭଗବାନ୍ ଦୁଃଖ ଅନୁଭବ କରାଇ ନିଜ ଭକ୍ତକୁ ବିଶୁଦ୍ଧ କରନ୍ତି । ଏ ପ୍ରସଙ୍ଗରେ ମୁଁ ଆପଣମାନଙ୍କୁ ଏକ ପ୍ରାଚୀନ ପୌରାଣିକ କଥା କହୁଛି, ଶୁଣନ୍ତୁ ।

ପ୍ରାଚୀନ କାଳରେ ଜଣେ ବଡ଼ ଧାର୍ମିକ ଚକ୍ରବର୍ତ୍ତୀ ରାଜା ଥିଲେ । ସେ କୁଳୀନ ବଂଶୀୟ ଥିଲେ । ବଂଶ ପରମ୍ପରାକ୍ରମେ ସେ ରାଜସିଂହାସନ ଲାଭକରିଥିଲେ । ସେ ସଦାଚାର ପ୍ରିୟ, ଧର୍ମାତ୍ମା ଓ ଦାନଶୀଳ ଥିଲେ । ରାଜାଙ୍କ ପରି ରାଣୀ ମଧ୍ୟ ଧର୍ମଶୀଳା, ସତୀ, ସାଧ୍ୱୀ, ଦୟାବତୀ ଥିଲେ । ଉଭୟ ଯୁବକ ଯୁବତୀ ଥିଲେ ମଧ୍ୟ ସେମାନଙ୍କ ମନରେ ଚଞ୍ଚଳତା ଓ ଅସ୍ଥିରତା ଆଦୌ ନ ଥିଲା । ରାଜା ଓ ରାଣୀ ଦେଖିବାକୁ ଖୁବ୍ ସୁନ୍ଦର ଥିଲେ । ଇନ୍ଦ୍ର ଓ ଶଚୀ ଅଥବା କାମଦେବ ଓ ରତି ପରି ଉଭୟ ଦେଖାଯାଉଥିଲେ । ମହାରାଜ ସାଧୁ, ସଜ୍ଜନପ୍ରିୟ ଓ ବିଦ୍ୱାନ୍ ଥିଲେ । ଧନ, ଐଶ୍ୱର୍ଯ୍ୟ ବିଷୟରେ ତାଙ୍କର ଟିକେ ହେଲେ ଅଭିଳାଷ ନ ଥିଲା । ଯାଚକମାନଙ୍କ ପାଇଁ ତାଙ୍କ ଧନଭଣ୍ଡାର ସର୍ବଦା ଉନ୍ମୁକ୍ତ ରହୁଥିଲା । ସେ ଥିଲେ ଅକ୍ଷୟ ଭଣ୍ଡାରର ଅଧିକାରୀ । କୌଣସି ପ୍ରାର୍ଥୀ ତାଙ୍କଠାରୁ ନିରାଶ ହୋଇ ଫେରୁ ନ ଥିଲେ । ଯେ ଯାହା ମାଗୁଥିଲେ ସେମାନଙ୍କୁ ତାହା ତୁରନ୍ତ ଯୋଗାଇ ଦିଆଯାଉଥିଲା । ରାଜାଙ୍କ ଏହି ବଦାନ୍ୟଗୁଣର ଖ୍ୟାତି ସ୍ୱର୍ଗ ପର୍ଯ୍ୟନ୍ତ ବ୍ୟାପିଯାଇଥିଲା । ଇନ୍ଦ୍ର ମଧ୍ୟ ତାଙ୍କ ପ୍ରତି ଈର୍ଷା କରିବାକୁ ଲାଗିଲେ ।

ଏକଦା ତାଙ୍କର ଧୈର୍ଯ୍ୟ ପରୀକ୍ଷା କରିବା ପାଇଁ ଜଣେ ମୁନି ଆସି ପହଞ୍ଚିଲେ । ସେଠାରେ ସେ ଚାତୁର୍ମାସ୍ୟ ବ୍ରତ ଆରମ୍ଭ କଲେ । ବ୍ରତ ପାଳନ ପାଇଁ ତ ସେ ସେଠାରେ ଅଟକି ନ ଥିଲେ । ରାଜାଙ୍କ ଧୈର୍ଯ୍ୟ ପରୀକ୍ଷା କରିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ଏପରି ଐଶ୍ୱର୍ଯ୍ୟଶାଳୀ ହୋଇ ଥିବାରୁ ରାଜାଙ୍କର କିଛି ଗର୍ବ ଅଛି କି ନାହିଁ ତାହା ଜାଣିବା ପାଇଁ ମୁନି ପ୍ରତିଦିନ ରାଜାଙ୍କୁ ନୂଆ ନୂଆ ଜିନିଷ ଦାବିଦ କରୁଥିଲେ ।

ଥରେ ମୁନି କହିଲେ—ରାଜନ୍ ! ରଥରେ ବସି ଆପଣଙ୍କ ନଗର ବୁଲିବା ପାଇଁ ମୋର ଇଚ୍ଛା ହେଉଛି ।

ରାଜା ବିନୀତଭାବେ କହିଲେ—ବ୍ରହ୍ମନ୍ ! ଏହା କ'ଣ ଏକ ବଡ଼ କଥା । ସବୁଠୁ ସୁନ୍ଦର ରଥ ଆପଣଙ୍କ ପାଇଁ ପ୍ରସ୍ତୁତ ରହିଛି ।

ମୁନି କହିଲେ—ମହାରାଜ ! ମୁଁ ଘୋଡ଼ାଟଣା ରଥରେ ବସିବି ନାହିଁ । ଆପଣ ଓ ଆପଣଙ୍କ ରାଣୀ ଯେଉଁ ରଥକୁ ଟାଣି ଟାଣି ନେବେ ମୁଁ ସେଇ ରଥରେ ବସି ନଗର ବୁଲିବାକୁ ଯିବି ।

ରାଜା ନମ୍ରତାର ସହିତ କହିଲେ—ବ୍ରହ୍ମନ୍ ! ଏହା ଆମ ପକ୍ଷରେ ଏକ ସୌଭାଗ୍ୟର କଥା । ଏପରି ସେବା କରିବାର ସୁଯୋଗ ଖୁବ୍ କମ୍ ମିଳେ । ଏହା କହି ମହାରାଜ ରଥ ମଗାଇଲେ । ଗୋଟିଏ ପାଖରେ ସେ ନିଜେ ଓ ଅନ୍ୟ ପାଖରେ ପରମ

ସୁକୁମାରୀ ରାଜମହିଷୀ ରଥ ଟାଣିବା ପାଇଁ ପ୍ରସ୍ତୁତ ହୋଇ ରହିଲେ । ମୁନି ଏକ ଗୁଣ୍ଟ ଧରି ରଥରେ ବସିଲେ । ବଜାର ମଝିରେ ରଥକୁ ନେଇ ସେ ବୁଲିବାକୁ ଗଲେ । ଲୋକମାନେ ରାଣୀ ରଥ ଟାଣୁଥିବାର ଦେଖି ସ୍ତମ୍ଭୀଭୂତ ହୋଇଗଲେ । ରାଜାଙ୍କ ମୁହଁରେ କୌଣସି ପ୍ରକାର ବିକାର ବା ଲଜ୍ଜା ପ୍ରକାଶ ପାଉ ନ ଥିଲା । ସେ ଆନନ୍ଦରେ ରାଣୀଙ୍କ ସହିତ ମିଶି ରଥ ଟାଣୁଥିଲେ । ରାଣୀ ଥିଲେ ଅତୀବ ସୁକୁମାରୀ । ସେ କେବେ-ହେଲେ ଏପରି ଶ୍ରମ କରି ନ ଥିଲେ କି ରାଜାଙ୍କୁ ମଧ୍ୟ କେବେହେଲେ ଗାଡ଼ି ଟାଣିବାକୁ ପଡ଼ି ନ ଥିଲା । ତେଣୁ ରାଜା ଓ ରାଣୀ ଦୁହେଁ ରହି ରହି ରଥ ଟାଣୁଥିଲେ । ରଥ ଟିକିଏ ଅଟକି ଗଲେ ମୁନି ଗୁଣ୍ଟରେ ରାଜା ଓ ରାଣୀଙ୍କୁ ଖୁବ୍ ଜୋର ପିଟୁଥିଲେ । ରାଣୀଙ୍କ ଦେହରୁ ରକ୍ତର ଧାର ବହିଯାଉଥିଲା । ତଥାପି ମହାରାଜ ବିଚଳିତ ହେଉ ନ ଥିଲେ । ରାଜା ଓ ରାଣୀ ଏତେ ଅତ୍ୟାଚାର ସତ୍ତ୍ୱେ ମୁନିଙ୍କ ପ୍ରତି ଆଦୌ ଅନାଦରଭାବ ପ୍ରକାଶ କରି ନ ଥିଲେ । ସେମାନେ ମୁନିଙ୍କୁ ବୁଲାଇ ଫେରି ଆସିଲେ ।

ମୁନି ପ୍ରସନ୍ନ ହୋଇ ନିଜର ଯଥାର୍ଥ ରୂପ ଦେଖାଇ କହିଲେ—ମହାରାଜ ! ଆପଣ ନିଜର ନିରଭିମାନତା ଦ୍ୱାରା ସମସ୍ତଙ୍କୁ ଜୟ କରିଛନ୍ତି । ଆପଣ ମୋକ୍ଷର ଅଧିକାରୀ ହୋଇଛନ୍ତି । ଆପଣଙ୍କ ପ୍ରତି ଭଗବାନ୍ ସନ୍ତୁଷ୍ଟ । ଏହି ଜୀବାତ୍ମା କର୍ମ ଅନୁସାରେ ଅନେକ ଯୋନିରେ ଭ୍ରମଣ କରି ଶେଷରେ ମାନବ ଜନ୍ମ ଲାଭ କରେ । ମଣିଷ ରୂପେ ଜନ୍ମ ପାଇ, ଉଚ୍ଚ କୁଳରେ ଜନ୍ମଗ୍ରହଣ କରି, ଯଦି ଅହଙ୍କାର ଶୂନ୍ୟ, ସଦାଚାରସମ୍ପନ୍ନ, ଯୁବକ, ସୁନ୍ଦର, ପଣ୍ଡିତ ଓ ଅତୁଳ ଐଶ୍ୱର୍ଯ୍ୟଶାଳୀ ହୋଇ ମଧ୍ୟ ନିରଭିମାନ ରହେ ତେବେ ତା'ପ୍ରତି ମୁଁ ସନ୍ତୁଷ୍ଟ ହୁଏ । ସେ ମୋର ଦୟାର ଅଧିକାରୀ ହୁଏ । ହେ ମହାରାଜ ! ଆପଣ ନିଜର ସହିଷ୍ଣୁତା ଓ କ୍ଷମା ଗୁଣରେ ସଂସାର ସାଗରକୁ ପାର ହୋଇଛନ୍ତି । ଜନ୍ମ ଓ ମୃତ୍ୟୁର ବନ୍ଧନରୁ ଆପଣ ଚିରଦିନ ପାଇଁ ମୁକ୍ତି ଲାଭ କରିଛନ୍ତି । ଏହା କହି ମୁନି ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ଭଗବଦ୍ ଦର୍ଶନ ଲାଭ କରି ଶେଷରେ ପରମପଦର ଅଧିକାରୀ ହେଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଭଗବାନ୍ ବାମନ ମହାରାଜ ବଳିକୁ ତ ଠକାଇବା ପାଇଁ ଯାଇଥିଲେ, ମାତ୍ର ବଳିଙ୍କର ସହନଶୀଳତା, ସତ୍ୟନିଷ୍ଠା ଦେଖି ସେ ନିଜେ ଠକିଗଲେ । ବ୍ରହ୍ମା ଯେତେବେଳେ ବଳିଙ୍କୁ ବନ୍ଦୀ ହୋଇଥିବାର ଦେଖିଲେ ସେତେବେଳେ ତାଙ୍କ ମନରେ ବହୁତ ଦୁଃଖ ହେଲା । ସେଥିପାଇଁ ସେ ପଚାରିଲେ—ପ୍ରଭୋ ! ଆପଣ ବଳିଙ୍କର ସର୍ବସ୍ୱ ଅପହରଣ କରି ମଧ୍ୟ ତାଙ୍କୁ ଏପରି କଷ୍ଟ ଦେଉଛନ୍ତି କାହିଁକି ?''

ଭଗବାନ୍ କହିଲେ—''ବ୍ରହ୍ମନ୍ ! ମୁଁ ବଳିକୁ ବାନ୍ଧିନାହିଁ । କିନ୍ତୁ ନିଜର ସହିଷ୍ଣୁତା ବନ୍ଧନରେ ସେ ମୋତେ ବାନ୍ଧିପକାଇଛି । ତା'ଉପରେ ଗୋଟିଏ ପଟେ

ଗୋଟିଏ ବିପଦ ଆସିଛି । ମୁଁ ତା'ର ସର୍ବସ୍ୱ ହରଣ କଲି । ସେ ଐଶ୍ୱର୍ଯ୍ୟହୀନ ହୋଇଗଲା । ମୋର ପାରିଷଦବର୍ଗ ତା'ର ସୈନ୍ୟମାନଙ୍କୁ ପରାଜିତ କରିଦେଲେ । ବଳିକୁ ସମସ୍ତେ ମିଶି ତିରସ୍କାର କଲେ । ଗରୁଡ଼ ତାକୁ ବାନ୍ଧିପକାଇଲା । ସ୍ୱଜନ, ବନ୍ଧୁ ତାଙ୍କୁ ପରିତ୍ୟାଗ କଲେ । ନିଜର କୁଳଗୁରୁ ତାଙ୍କୁ ଅନେକ କଟୁକଥା କହିଲେ, ଡରାଇଲେ, ଧମକାଇଲେ ଏବଂ ଶେଷରେ ବଳିଙ୍କୁ ଅବିଚଳିତ ଥିବାର ଦେଖି ଅଭିଶାପ ଦେଲେ । ତଥାପି ଦାନବାରିଣୀ, ପରମ ଯଶସ୍ୱୀ, ଦାନୀ, ମହାରାଜ ବଳି ନିଜ ପଣରୁ ଟଳେ ହେଲେ ବିଚଳିତ ହେଲେ ନାହିଁ । ତେଣୁ ମହାରାଜ ବଳି ମୋର ଦୁର୍ଜୟ ମାୟାକୁ ଜୟ କରିଛି । ଏବେ ସେ ପରମ ପଦର ଅଧିକାରୀ ହୋଇପାରିଛି ।''

ବ୍ରହ୍ମା ପଚାରିଲେ—''ପ୍ରଭୋ ! ବର୍ତ୍ତମାନ ବଳିକୁ କେଉଁଠି ରଖିବେ । ତା'ର ସମସ୍ତ ଭୂମିକୁ ଆପଣ ଦାନ ରୂପେ ନେଇସାରିଛନ୍ତି ।''

ଭଗବାନ୍ କହିଲେ—''ମୁଁ ନେଲି ଆଉ କ'ଣ ? ମୁଁ ତ ତାକୁ ସର୍ବସ୍ୱ ଦେଇସାରିଛି ।''

ବ୍ରହ୍ମା ପଚାରିଲେ—''ତେବେ ବଳି କ'ଣ ମୁକ୍ତ ହୋଇଗଲେ ?''

ଭଗବାନ୍ କହିଲେ—''ମୁକ୍ତ ହେବେ କ'ଣ ? ସେ ତ ମୁକ୍ତ ହୋଇ-ସାରିଛନ୍ତି । ସେ ମୋର ପାରିଷଦ ଅନ୍ତର୍ଗତ ହୋଇସାରିଛନ୍ତି । ଆଗାମୀ ମନ୍ୱନ୍ତରରେ ସେ ଇନ୍ଦ୍ର ହେବେ ଏବଂ ପରେ ସବୁଦିନ ପାଇଁ ମୋ' ଧାମରେ ସ୍ଥାନ ଲାଭ କରିବେ ।''

'କିନ୍ତୁ ସେ ପର୍ଯ୍ୟନ୍ତ ବଳି ରହିବେ କେଉଁଠି ବୋଲି ବ୍ରହ୍ମା ପଚାରିବାରୁ ପ୍ରଭୁ ବଳିକୁ ଚାହିଁ କହିଲେ—''ମହାଭାଗ, ବିରୋଚନ ନନ୍ଦନ ! ଯେଉଁଠି ଆଧି, ବ୍ୟାଧି, କ୍ଲାନ୍ତି, ତନ୍ଦ୍ରା, ପରାଭବ ଓ ଅନ୍ୟ କୌଣସି ପ୍ରକାର ବିଘ୍ନ ନାହିଁ, ବିଶ୍ୱକର୍ମା ନିର୍ମିତ ସେହି ସୁତଳ ଲୋକରେ ତୁମେ ବାସ କର । ଏହା ସ୍ୱର୍ଗଠାରୁ ବଳି ସୁଖକର, ଅଧୋଭୁବନ ବା ନିମ୍ନସ୍ୱର୍ଗ ନାମରେ ଅଭିହିତ । ସେଠାରେ ତୁମର କୌଣସି କଷ୍ଟ ହେବ ନାହିଁକି କେହି ତୁମକୁ ଜୟ କରିପାରିବ ନାହିଁ । ଯେଉଁ ଅସୁରଗଣ ତୁମର ଶାସନକୁ ପ୍ରତ୍ୟାଖ୍ୟାନ କରିବେ ମୋ' ଚକ୍ରଦ୍ୱାରା ସେମାନଙ୍କୁ ମୁଁ ନିଃଶେଷ କରିଦେବି ।''

ମହାରାଜ ବଳି କହିଲେ—''ପ୍ରଭୋ ! ମୋର କୌଣସି ସ୍ୱର୍ଗ ଦରକାର ନାହିଁ । ମୁଁ କେବଳ ଆପଣଙ୍କୁ ଚାହୁଁଛି । ଆପଣ ଯେଉଁଠି, ସେଠାରେ ସବୁ ଅଛି, ଆପଣ ଯେଉଁଠି ନାହାନ୍ତି ସେ ସ୍ୱର୍ଗ ମୋ' ପକ୍ଷରେ ନର୍କ ସମାନ । ମୋ' ସହିତ ଆପଣଙ୍କୁ ମଧ୍ୟ ସେଠାରେ ରହିବାକୁ ହେବ ।''

ଏହା ଶୁଣି ଭଗବାନ୍ ହସି ହସି କହିଲେ—"ଲୋକେ ତ କହୁଛନ୍ତି ବାମନ ବଳିକୁ ବାନ୍ଧିପକାଇଲେ । କିନ୍ତୁ ପ୍ରକୃତରେ ବଳି ଯେ ମୋତେ ସବୁଦିନ ପାଇଁ ସେବକ ରୂପେ ବାନ୍ଧି ରଖିଲା ତାହା କିଏ ବୁଝୁଛି ? ହଉ, ଠିକ୍ ଅଛି । ମୁଁ ଦ୍ୱାରପାଳ ରୂପେ ହାତରେ ଗଦାଧରି ତୁମର ପୁର ଦ୍ୱାରରେ ଜଗିରହିବି । ତୁମେ ମୋତେ ସବୁବେଳେ ନିଜ ପାଖରେ ଦେଖିପାରିବ । ତୁମଠାରେ ଅବଶିଷ୍ଟ ଥିବା ଅସୁରଭାବ ଦୂର ହୋଇଯିବ । ଆଗାମୀ ସାବର୍ଣ୍ଣି ମନ୍ୱନ୍ତରରେ ତୁମେ ଇନ୍ଦ୍ର ପଦରେ ଅଧିଷ୍ଠିତ ହେବ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ମହାରାଜ ବଳି ସୁତଳ ରାଜ୍ୟର ଓ ଇନ୍ଦ୍ରପଦ ପ୍ରାପ୍ତିର ପ୍ରତିଶ୍ରୁତି ପାଇ ମଧ୍ୟ ଆନନ୍ଦିତ ହେଲେ ନାହିଁ । କିନ୍ତୁ ପ୍ରଭୁ ଯେ ଦାସ ରୂପେ ତାଙ୍କ ପାଖରେ ସର୍ବଦା ରହିବେ । ଏହା ଭାବି ବଳି ବିଶେଷ ଆନନ୍ଦ ଲାଭ କରିଥିଲେ ।"

ବ୍ରହ୍ମନ୍ ବଳି ଯେ ଜୀତି ଲଇ ଦୁର୍ଜୟ ମମ ମାୟା ।
ଅଜର ଅମର ହ୍ୱେଂ ଗଇ କୀର୍ତ୍ତି ଅରୁ ଇନ୍‌କୀ କାୟା ॥
ଧନ ସମ୍ପତ୍ତି ତେଁ ହୀନ ବନେ ବନ୍ଧନ ମହଁ ଭୂପତି ।
କରେ ତିରସ୍କୃତ ସୁରନ, ଯାତନାହୁ ଦୀନ୍ହୀ ଅତି ॥
ଦୟୋ ଭୟଙ୍କର ଶାପ ଗୁରୁ, ଜାତି ବନ୍ଧୁ ସବ ତଜି ଗୟେ ।
ଛଳ କରିକେ ସରବସୁ ହର୍ ଲୟୋ, ତୋଉ ବିଚଳିତ ନହିଁ ଭୟେ ॥



## ମହାରାଜ ବଳିଙ୍କ ସୁତଳ ଯାତ୍ରା

ଇନ୍ଦ୍ରସେନ ମହାରାଜ ଯାହି ଭୋ ଭଦ୍ରମସ୍ତୁ ତେ ।
ସୁତଳଂ ସ୍ୱର୍ଗିଭିଃ ପ୍ରାର୍ଥ୍ୟଂ ଜ୍ଞାତିଭିଃ ପରିବାରିତଃ ॥

( ଭା-୮-୨୨-୩୩ )

### ଛପ୍‌ପୟ

ପ୍ରେମେ ବଳିଙ୍କୁ ସମଝାଇ କହେ ବଳ ତେ ବାମନ ହରି ।
ଇନ୍ଦ୍ରସେନ ନୃପବର୍ଯ୍ୟ କରେ ମମ ଆୟୁଷ ସିର ଧରି ॥
ସୁତଳ ଲୋକ ମହିଁ ବସୌ ଦିବ୍ୟ ହୋଏ ତବ ସବ ଅଙ୍ଗ ।
ଦ୍ୱାରପାଳ ବନି ରହୁଁ ଦ୍ୱାର ପେ ହୌଁ ତୁମରେ ସଙ୍ଗ ॥
ଭକ୍ତାନୁଗ୍ରହ ନିରଖି ବଳି, ବୋଲେ ହେ ଗଦ୍‌ଗଦ ବଚନ ।
ଅନୁକମ୍ପା ଅନୁପମ କରି, ହେ ଅଚ୍ୟୁତ ଅଶରନଶରନ ॥

ନିଜର ସର୍ବସ୍ୱ ଯେ ପ୍ରଭୁଙ୍କୁ ସମର୍ପଣ କରିଦେଇଛି ତା' ପକ୍ଷରେ ଭଗବାନ୍‌ଙ୍କୁ ଅଦେୟ ବୋଲି କିଛି ନଥାଏ । ଭଗବାନ୍ ଜ୍ଞାନୀମାନଙ୍କ ପ୍ରତି ପ୍ରସନ୍ନ ଥାନ୍ତି । ଜ୍ଞାନୀ ଲୋକ ମୁକ୍ତି ଇଚ୍ଛାକଲେ ତାକୁ ତୁରନ୍ତ ମୁକ୍ତିଦାନ କରନ୍ତି । କାରଣ ମୁକ୍ତି ଦାନ ପରେ ଭଗବାନ୍‌ଙ୍କର ଅଉ କିଛି ଜଞ୍ଜାଳ ରହେ ନାହିଁ । କିନ୍ତୁ ଭଗବାନ୍ ଭକ୍ତମାନଙ୍କୁ ଭୀଷଣଭାବେ ଭୟ କରନ୍ତି । କାରଣ ଭକ୍ତର ପଛେ ପଛେ ତାଙ୍କୁ ସବୁବେଳେ ଘୂରି ବୁଲିବାକୁ ପଡ଼େ, ତା'ର ସୁରକ୍ଷା ବିଷୟ ଚିନ୍ତା କରିବାକୁ ହୁଏ ଏବଂ ତା'ର ଚରଣ-ଧୂଳି ମୁଣ୍ଡରେ ଲଗାଇବାକୁ ପଡ଼େ । ଭକ୍ତ କେବେ ମୁକ୍ତି ଇଚ୍ଛା କରେନାହିଁ । କାରଣ ନ ମାଗିଲେ ବି ମୁକ୍ତି ତାକୁ ନିଶ୍ଚୟ ମିଳିବ । ଯେପରି ଦହି ମାଗିଲେ ବିନା ମୂଲ୍ୟରେ ଦନା ସହ ଦହି ମିଳିଯାଏ, ପୁଣି ମାଗିଲେ ବିନା ମୂଲ୍ୟରେ ତରକାରି ମିଳେ ସେହିପରି ପ୍ରଭୁଙ୍କ ପାଦପଦ୍ମ ପାଖରେ ପହଞ୍ଚିଲେ ଭକ୍ତର ସଂସାର ବନ୍ଧନ ସ୍ୱତଃ ଛିନ୍ନ ହୋଇଯାଏ । ଭଗବାନ୍‌ଙ୍କ ଭକ୍ତବତ୍ସଳତା'ର ଅନ୍ତ ନାହିଁ । ଯେ ତୁବାରେ ତୁଳସୀ ପତ୍ର ଟିଏ ଓ ଚଳୁଏ

ଜଳ ସମର୍ପଣ କରେ ସେହି ନିଷ୍କପଟ ଶ୍ରଦ୍ଧାଳୁ ଭକ୍ତଠାରେ ଭଗବାନ୍ ନିଜକୁ ସମର୍ପଣ କରିଦିଅନ୍ତି । ତା' ହୋଇ ନଥିଲେ ଏତେବଡ଼ ରାଜା ମହାରାଜାମାନେ ରାଜ୍ୟ, ପରିବାର ଛାଡ଼ି, ଭିକ୍ଷୁକ ଜୀବନକୁ ଆଦରି, ଭଗବତ୍ ଚରଣପଦ୍ମକୁ ଚିନ୍ତା କରନ୍ତେ କାହିଁକି ?

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଭଗବାନ୍ ଯେତେବେଳେ ମହାରାଜ ବଳି ସହିତ ସୁତଳ ଲୋକରେ ସର୍ବଦା ରହିବା ପାଇଁ ଏବଂ ତାଙ୍କୁ ସୁରକ୍ଷିତଭାବେ ରକ୍ଷା କରିବା ନିମିତ୍ତ ଆଶୀର୍ବାଦ ଦେଲେ ସେତେବେଳେ ସେ ଆନନ୍ଦିତ ହେଲେ । ଆନନ୍ଦରେ ତାଙ୍କ ଦୁଇ ନୟନରୁ ପ୍ରେମାଶ୍ରୁଧାରା ବହିବାକୁ ଲାଗିଲା । ଶରୀର ରୋମାଞ୍ଚିତ ହୋଇଉଠିଲା । ପ୍ରେମର ଆବେଗରେ କଣ୍ଠ ରୁଦ୍ଧ ହୋଇଯାଇଥିଲେ ମଧ୍ୟ ଧୀରେ ଧୀରେ ନିଜକୁ ସଂଯତ କରି ଗଦ୍‌ଗଦ୍ କଣ୍ଠରେ ମହାରାଜ ବଳି ଅଞ୍ଜଳି-ବଦ୍ଧ ହୋଇ ଭଗବାନ୍ ବାମନଙ୍କୁ ସ୍ତୁତି କରିବାକୁ ଲାଗିଲେ ।

"ପ୍ରଭୋ ! ଆପଣଙ୍କ ଦୟା ବିଷୟରେ କିଛି କହିବା ସମ୍ଭବ ନୁହେଁ । ଅଞ୍ଜୁଳାଏ ଜଳ ଦେଲେ କାହା ଉପରେ ଆପଣ ସନ୍ତୁଷ୍ଟ ହୁଅନ୍ତି ତ କିଏ ପୂଜାକଲେ ବା କିଏ କେବଳ ପ୍ରଣାମ କଲେ ଆପଣ ତା' ଉପରେ କରୁଣା ବର୍ଷା କରନ୍ତି । ଗଜ କୁମ୍ଭୀର କବଳରୁ ମୁକ୍ତି ପାଇବା ପାଇଁ ଶୁଣ୍ଢରେ କମଳ ଧରି ଆପଣଙ୍କୁ ସ୍ତୁତି କରିଥିଲା । ଆପଣ ସଙ୍ଗେ ସଙ୍ଗେ ତାକୁ ବିପଦରୁ ଉଦ୍ଧାର କରିଥିଲେ । ଦେବଗଣଙ୍କ ଉପରେ ଯେତେବେଳେ ବିପଦ ପଡ଼େ ସେମାନେ କ୍ଷୀରସାଗର କୂଳକୁ ଯାଇ ମଧୁର ସ୍ୱରରେ ପୁରୁଷ ସୂକ୍ତ ଓ ଅନ୍ୟାନ୍ୟ ସୂକ୍ତଦ୍ୱାରା ଆପଣଙ୍କର ସ୍ତୁତିଗାନ କରନ୍ତି । ଦୀର୍ଘସ୍ତୁତି ପରେ ଆପଣ ଆକାଶବାଣୀ ମାଧ୍ୟମରେ ପ୍ରତିକାର ଜଣାଇଦିଅନ୍ତି । କିନ୍ତୁ ପୂଜା କଥା ଦୂରେ ଥାଉ, ଏମିତିକି ମୁଁ ଆପଣଙ୍କୁ ସ୍ତୁତି କରିନାହିଁ । ମୁଁ ସ୍ତୁତି କରିବା ପାଇଁ ପ୍ରସ୍ତୁତ ହେଉଥିବାବେଳେ ଆପଣ ମୋ ଉପରେ ଅଜସ୍ର କୃପାଜଳଧାରା ବୃଷ୍ଟି କରିଦେଲେ । ବ୍ରହ୍ମାଦି ଦେବଗଣଙ୍କ ଉପରେ ତଥା ଇନ୍ଦ୍ରାଦି ଲୋକପାଳମାନଙ୍କ ଉପରେ ଆପଣ ଯେଉଁ ଦୟା ପ୍ରଦର୍ଶନ କରିନାହାନ୍ତି ମୋ' ପରି ଅଧମ ଅସୁର ପ୍ରତି ଆପଣ ଅନାୟସରେ ସେହି ଦୟା ଅଜାଡ଼ି ଦେଇଛନ୍ତି । ଆପଣ ସାକ୍ଷାତ ଦେଇ ମୋତେ କୃତାର୍ଥ କରିଛନ୍ତି । ଆପଣ ସର୍ବେଶ୍ୱର, ଆପଣଙ୍କର କଣ ଅଭାବ ଥିଲା ? କିନ୍ତୁ ମୋର ଗୌରବ ବଢ଼ାଇବା ପାଇଁ ଆପଣ ଭିକ୍ଷୁକ ହୋଇ ଏ ଅଧମ ଆଗରେ ହାତ ପତେଇଲେ । ହେ ପ୍ରଭୋ ! ଆପଣଙ୍କ ପାଦପଦ୍ମ ହିଁ ମୋର ହୃଦୟରେ ସର୍ବଦା ସ୍ମରଣୀୟ ହୋଇ ରହୁ, ବାରମ୍ବାର ପ୍ରଣାମ ଜଣାଇ, ମୁଁ ଏହି ପ୍ରାର୍ଥନା କରୁଛି ।"

ମହାରାଜ ପରୀକ୍ଷିତଙ୍କୁ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ବଳିଙ୍କର ବିନୀତ ବଚନ ଶୁଣି ଭଗବାନ୍ ବାମନ ହସି ହସି ବଳିଙ୍କ ଆଡ଼କୁ ସଦୟ

ଦୃଷ୍ଟିରେ ଗୃହିଁଲେ । ନିଜ ନାଥ ଉପରେ ପ୍ରଭୁ ପ୍ରସନ୍ନ ହୋଇଛନ୍ତି, ବଳି ତାଙ୍କ କୃପାର ପାତ୍ର ହୋଇପାରିଛି ବୋଲି ଜାଣି ଭକ୍ତ ପ୍ରହ୍ଲାଦଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଗଦ୍‌ଗଦ୍ କଣ୍ଠରେ ଭଗବାନ୍‌ଙ୍କ ଭକ୍ତବତ୍ସଳତାକୁ ସ୍ମରଣ କରି ସ୍ତୁତି ଆରମ୍ଭ କଲେ ।''

ପ୍ରହ୍ଲାଦ କହିଲେ—''ପ୍ରଭୋ ! ଆପଣଙ୍କ ଦୟା ବିଷୟରେ କୌଣସି ପ୍ରକାର ନିୟମ ନିର୍ଦ୍ଧାରଣ କରିବା ଅଲଗା କଥା, କେହି ଅନୁମାନ କରି ମଧ୍ୟ କହିପାରିବ ନାହିଁ ଯେ, ଆପଣ କେବେ, କାହା ଉପରେ, କ'ଣ ପାଇଁ କି ଭାବରେ କୃପା ପ୍ରଦର୍ଶନ କରନ୍ତି । ଚତୁର୍ଦ୍ଦଶ ଭୁବନର ସ୍ରଷ୍ଟା, ଚରାଚର ଜଗତର ଗୁରୁ, ସମସ୍ତ ଲୋକଙ୍କର ପିତାମହ ବ୍ରହ୍ମା ଯାହାଙ୍କର ପାଦପଦ୍ମକୁ ପୂଜାକରନ୍ତି ସେହି ପ୍ରଭୁ ବିଶ୍ୱେଶ୍ୱର ଆମପରି ଅଧମଙ୍କର ଦ୍ୱାରପାଳ ହେବେ, ଏହା କେହି କେବେ ବିଶ୍ୱାସ କରିପାରିବ କି ? ବାଡ଼ି ଖଣ୍ଡିଏ ହାତରେ ଧରି ଜଗଦୀଶ୍ୱର ଦୁର୍ଗ ରକ୍ଷାକରିବେ ଏହା ବିଶ୍ୱାସ କରିବ ? ମୁଁ ଆଶ୍ଚର୍ଯ୍ୟ ହେଉଛି, ଆମପରି ସାମର୍ଥ୍ୟହୀନ, ଶକ୍ତିହୀନ, ସାଧନ, ସଦାଚାର, ବିନୟ ଓ ଭକ୍ତିରହିତ ଅନାୟାସରେ ଆପଣଙ୍କ କୃପାଲାଭ କଲୁ କିପରି ? ଆପଣଙ୍କର ଯେଉଁ ଚରଣ କମଳର ମଧୁମୟ ମକରନ୍ଦ ପାନକରି ବ୍ରହ୍ମାଦି ଦେବଗଣ ସୃଷ୍ଟି ରଚନା ଆଦି ମହତ୍ କାର୍ଯ୍ୟରେ ବ୍ୟାପୃତ ହୁଅନ୍ତି ସେହି ଚରଣ କମଳକୁ ବିନା ସାଧନାରେ, ବିନା ଭଜନରେ ଆମେ କିପରି ପାଇଲୁ ? ଆପଣ ଏହି ବିଚିତ୍ର ଜଗତକୁ ଯୋଗମାୟା ବଳରେ ଲୀଳା ରଚନା ପାଇଁ ସୃଷ୍ଟି କରିଛନ୍ତି । ସର୍ବଜ୍ଞ, ସର୍ବାତ୍ମା, ସମଦର୍ଶୀ ଆପଣ ଅକାରଣ ଅଧମ ଅସୁରଙ୍କ ଉପରେ ଯେଉଁ ଦୟା ପ୍ରଦର୍ଶନ କରିଛନ୍ତି ତାହା ଦେଖି ମୋ' ମନରେ ସନ୍ଦେହ ଜାତ ହେଉଛି । ସମ୍ଭବତଃ ଆପଣ ଅସୁର-ମାନଙ୍କ ପ୍ରତି ପକ୍ଷପାତ ବିଚାର କରୁଛନ୍ତି ।''

ଭକ୍ତ ପ୍ରହ୍ଲାଦଙ୍କ କଥା ଶୁଣି ଭଗବାନ୍ ବାମନ ହସି ହସି ପଚାରିଲେ— ''ପ୍ରହ୍ଲାଦ ! ମୋର ସମଦର୍ଶିତାରେ ତୁମର କଣ ସନ୍ଦେହ ହେଉଛି ?''

ପ୍ରହ୍ଲାଦ କହିଲେ—''ହଁ ପ୍ରଭୋ ! ସନ୍ଦେହ ତ ହେଉଛି । ପୁଣି ଭାବୁଛି, ଆପଣ ଏହି ମହାନ୍ ବିଶ୍ୱର କଳ୍ପବୃକ୍ଷ । ତେଣୁ ଆପଣଙ୍କ ସହିତ ଯାହାର ସମ୍ପର୍କ ସ୍ଥାପିତ ହୋଇଛି ତା'ର କଲ୍ୟାଣ ବ୍ୟତୀତ ଅକଲ୍ୟାଣ ହେବ କିପରି ? କଳ୍ପବୃକ୍ଷ ପାଖକୁ ସମସ୍ତେ ଯାଆନ୍ତି । କିନ୍ତୁ ଆପଣ ନିଜେ ନିଜେ ନିଜ ଅନୁଚରଙ୍କ ପାଖକୁ ଯାଇ ଅନୁଗ୍ରହ ପ୍ରଦର୍ଶନ କରନ୍ତି । ଆପଣ ସମଦର୍ଶୀ ହେଲେ ମଧ୍ୟ ନିଜ ଆଶ୍ରିତ ଅଧମ ଅନୁଚରମାନଙ୍କ ପ୍ରତି ବିଶେଷ ଦୟାର୍ଦ୍ର ହୋଇଥାନ୍ତି ।''

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭକ୍ତ ଓ ଭଗବାନଙ୍କ ମଧ୍ୟରେ ସମ୍ପର୍କ ସ୍ଥାପିତ ହୋଇଗଲା । ଖେଳ ସରିଗଲା । କ୍ରୋଧପୂର୍ଣ୍ଣ ଆହ୍ୱାନ ଶେଷ ହୋଇଗଲା । ସେ.ହିଁର ଭେଦ ସବୁ ଫେଲିଗଲା । ଶୁକ୍ରାଚାର୍ଯ୍ୟ ଦେଖିଲେ, ମହାରାଜ ବଳି ଓ ଭଗବାନ୍ ପରସ୍ପର ମଧ୍ୟରେ ସ୍ୱଗବତ ଐକ୍ୟ ସ୍ଥାପନ କରିଦେଲେ । ତେଣୁ ବୃଥାରେ ସେ ଜଣେ ଖରାପ ଲୋକବୋଲି ପରିଚିତ ହେଲେ । ଅଯଥା ନିଜର ଆଜ୍ଞାବହ ଶିଷ୍ୟକୁ ଅଭିଶାପ ଦେଲେ । ଶୁକ୍ରାଚାର୍ଯ୍ୟଙ୍କର ଏହି ମନୋଭାବକୁ ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ଜାଣିପାରିଲେ । ତେଣୁ ଅସୁର ଗୁରୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭଗବାନ୍ କହିଲେ—"ହେ ଦ୍ୱିଜଶ୍ରେଷ୍ଠ ! ଭାର୍ଗବବଂଶାବତଂସ ! ବ୍ରହ୍ମନ୍ ! ମୁଁ ଆସି ଆପଣଙ୍କ ଯଜ୍ଞରେ ବିଘ୍ନ ସୃଷ୍ଟି କଲି । ଏପର୍ଯ୍ୟନ୍ତ ଆପଣଙ୍କ ଯଜ୍ଞ ଅପୂର୍ଣ୍ଣ ରହିଛି । ବିଧି ଅନୁସାରେ ଆପଣ ଯଜ୍ଞକାର୍ଯ୍ୟରେ ପୂର୍ଣ୍ଣାହୁତି ଦିଅନ୍ତୁ । ଯଜ୍ଞରେ ମୋଦ୍ୱାରା ଯେଉଁ କ୍ଷତି ଘଟିଛି ତାହା ମାର୍ଜନ କରନ୍ତୁ । ଆପଣଙ୍କ ବେଦଜ୍ଞ ବିପ୍ର ଥାଉଁ ଥାଉଁ କ୍ଷତି ରହିବା ଉଚିତ ନୁହେଁ । ଯଜ୍ଞର ବିଧିବିଧାନରେ, ମନ୍ତ୍ରରେ, କର୍ମରେ ଓ ସାମଗ୍ରୀରେ ଯେଉଁ କ୍ଷତି ଥାଏ ତାହା ବ୍ରହ୍ମାଣ୍ଡର ଦୃଷ୍ଟି ପଡ଼ିବାମାତ୍ରେ ସଂଶୋଧିତ ହୋଇଯାଏ, ପୂର୍ଣ୍ଣତା ଲାଭକରେ । ଏଣୁ ଆପଣ ମହାରାଜ ବଳିଙ୍କର ଅପୂର୍ଣ୍ଣ ଯଜ୍ଞକୁ ପୂର୍ଣ୍ଣ କରନ୍ତୁ ।"

ଭଗବାନ୍ ବାମନଙ୍କ ବିନମ୍ର ବଚନ ଶୁଣି ଶୁକ୍ରାଚାର୍ଯ୍ୟ ଲଜ୍ଜିତ ହୋଇ-ପଡ଼ିଲେ । ତାଙ୍କର କଣ୍ଠ ଅବରୁଦ୍ଧ ହୋଇ ଆସିଲା । ସେ ଗଦ୍‌ଗଦ ସ୍ୱରରେ କହିଲେ "ପ୍ରଭୋ ! ବ୍ରାହ୍ମଣମାନେ ବିଧିବିଧାନ ପୂର୍ବକ ଆପଣଙ୍କର ନିରାକାର ନିର୍ଗୁଣ ରୂପକୁ ଯଜ୍ଞରେ ପୂଜା କରନ୍ତି । କିନ୍ତୁ ଏ ଯଜ୍ଞରେ ଆପଣ ସାକାର, ସଗୁଣରୂପେ ଉପସ୍ଥିତ । ସାଧାରଣଭାବେ ଜଳ ଓ ତୁଳସୀରେ ଆପଣ ସନ୍ତୁଷ୍ଟ ହୋଇ ପୂଜକର ସମସ୍ତ ଅଶୁଭ ବିନାଶ କରନ୍ତି । ଏ ଯଜ୍ଞରେ ମୋର ଯଜମାନ ବଳି ଆପଣଙ୍କୁ ତାଙ୍କର ସର୍ବସ୍ୱ ସମର୍ପଣ କରିଛନ୍ତି । ତେଣୁ ଏ ଯଜ୍ଞରେ କ୍ଷତି, ବୈଷମ୍ୟ କପରି ରହିବ ? ଆପଣ ସ୍ୱୟଂ ସମ୍ପୂର୍ଣ୍ଣ । ପରିପୂର୍ଣ୍ଣଙ୍କ ଆଗରେ ଅପୂର୍ଣ୍ଣତାର ଅସ୍ତିତ୍ୱ ରହିପାରେ ନାହିଁ । ଆପଣଙ୍କ ନାମ ଉଚ୍ଚାରଣମାତ୍ରେ ମନ୍ତ୍ର, ତନ୍ତ୍ର, ଦେଶ, କାଳ, ପାତ୍ର, ସାମଗ୍ରୀ ସମ୍ବନ୍ଧୀୟ ସମସ୍ତ କ୍ଷତି ସ୍ୱତଃ ବିନଷ୍ଟ ହୋଇଯାଏ, ବିଘ୍ନ ଦୂର ହୁଏ । ତଥାପି ଆପଣ ଆଦେଶ ଦେଉ-ଥିବାରୁ ମୁଁ ଯଜ୍ଞ କାର୍ଯ୍ୟ କରିବି, କାରଣ ଆପଣଙ୍କ ଆଦେଶ ହିଁ ବେଦବାକ୍ୟ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରଭୁଙ୍କ ଆଦେଶରେ ଶୁକ୍ରାଚାର୍ଯ୍ୟ ବ୍ରହ୍ମର୍ଷିମାନଙ୍କ ସହିତ ମିଶି ବଳିଙ୍କ ଯଜ୍ଞକୁ ପୂର୍ଣ୍ଣକଲେ । ଯଜ୍ଞ ଶେଷରେ ଭଗବାନ୍ ପ୍ରହ୍ଲାଦଙ୍କୁ କହିଲେ—ବତ୍ସ ! ପ୍ରହ୍ଲାଦ ! ତୁମେ ତୁମ ନାତିକୁ ନେଇ ସୁତଳଲୋକକୁ

ଯାଅ । ମହାରାଜ ବଳିଙ୍କୁ ଲକ୍ଷ୍ୟକରି କରି କହିଲେ—ବୀରଶ୍ରେଷ୍ଠ ! ବିରୋଚନ ପୁତ୍ର ! ତୁମେ ମୋତେ ପ୍ରସନ୍ନ କରିଛ । ତୁମେ ଆଜିଠାରୁ ମୁକ୍ତହେଲ ଓ ପାରିଷଦ ମଣ୍ଡଳୀର ଅନ୍ତର୍ଗତ ହେଲ । ଏହି ମନ୍ୱନ୍ତର ଶେଷ ପର୍ଯ୍ୟନ୍ତ ତୁମେ ସୁତଳ ଲୋକରେ ଅବସ୍ଥାନ କର । ଆଗାମୀ ମନ୍ୱନ୍ତରରେ ତୁମେ ଇନ୍ଦ୍ରପଦରେ ଅଭିଷିକ୍ତ ହେବ ।”

“ଆପଣଙ୍କ ଚରଣ ସେବା ବ୍ୟତୀତ ଇନ୍ଦ୍ରପଦ କି ଅନ୍ୟ କିଛି ମୋର ଆବଶ୍ୟକ ନାହିଁ’ ବୋଲି ବଳି ନିବେଦନ କରିବାରୁ ଭଗବାନ୍ କହିଲେ—ମୁଁ ଜାଣେ ତୁମେ କଣ ଚାହୁଁଛ ? ମୋର ଭକ୍ତ ସ୍ୱପ୍ନରେ ବି ଯଦି କିଛି ଇଚ୍ଛା କରେ ମୁଁ ତାହା ପୂର୍ଣ୍ଣ କରେ । ତୁମଠାରେ ଇନ୍ଦ୍ରପଦ ଓ ଭୃତ୍ୟପଦ, ଉଭୟ ସମାନ । ତଥାପି ଏକ ମନ୍ୱନ୍ତର ପର୍ଯ୍ୟନ୍ତ ତୁମେ ଇନ୍ଦ୍ରପଦରେ ରହିବା ପରେ ମୁଁ ତୁମକୁ ଗୋଲୋକ-ଧାମ ପଠାଇବି ।”

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଏହାପରେ ପ୍ରହ୍ଲାଦଙ୍କ ସହିତ ମହାରାଜ ବଳି ନିଜର ବନ୍ଧୁବାନ୍ଧବ ଓ ପରିବାରବର୍ଗଙ୍କୁ ନେଇ ସୁତଳଲୋକକୁ ଚାଲିଗଲେ ।

## ଛପ୍‌ପୟ

ପୁନି ହରି ଆୟୁସୁ ପାଇ ଶୁକ୍ର ମଖ ପୂର୍ଣ୍ଣ କରାୟୋ ।
ବଳି ବାମନ କୋ ସୁଯଶ ବହୁଁ ସି ବଳ ଗୁରୁ ନେ ଗାୟୋ ॥
ଜ୍ୟୋଁ କରି ସରବସ୍ୱ ଦାନ ଦୈତ୍ୟପତି ଅତି ହରଷାୟେ ।
ଜଗ ବନ୍ଦନ କୁଁ ତୋଉ ବସ୍ତୁ ଆଧୀନ ବନାୟେ ॥
ଆଗେ କରି ପ୍ରହ୍ଲାଦ କୁଁ, ଜାତି ବନ୍ଧୁ ସବ ସଙ୍ଗ ଲୟେ ।
ରକ୍ଷକ ପ୍ରଭୁ ବାମନ ବନେ, ସୁତଳ ଲୋକ କୁ ଚଲେ ଦୟେ ॥



# ବଳିଙ୍କ ଦ୍ୱାରପାଳ ବାମନ

ନେମଂ ବିରିଞ୍ଚୋ ଲଭତେ ପ୍ରସାଦମ୍
ନ ଶ୍ରୀର୍ନ ଶର୍ବଃ କିମୁତାପରେ ତେ ।
ଯନ୍ନୋଽସୁରାଣାମସି ଦୁର୍ଗପାଲୋ
ବିଶ୍ୱାଭିବନ୍ଦ୍ୟୈରପି ବନ୍ଦିତାଙ୍ଘ୍ରିଃ ॥

(ଭାଗ-୮-୨୩-୬)

## ଛପ୍‌ପୟ

ବଳି କେ ଦ୍ୱାରେ ଦ୍ୱାରପାଳ ବନି ବୈଠେ ଜଗତ୍‌ପତି ।
ବଳି ବିରୁଦ୍ଧ ନିଜ ଦ୍ରୋହ କରେଁ ତିନକୀ ହୋ ଦୁର୍ଗତି ॥
ଇକ ଦିନ ରାବନ ଜାଇ କହେ ବଲି ତେଁ ବଲ ଗର୍ବିତ ।
ବିଷ୍ଣୁ, ବିଜୟ ହୌଁ କରୁଁ କାର୍ଯ୍ୟ କୀଜ୍ୟୋ ଜିନ ନିନ୍ଦିତ ॥
ବଳି ବୋଲେ ପିତୁ ପିତାମହ, ହିରଣକଶିପୁ ହରି ସଙ୍ଗ ଲରେ ।
ଶ୍ରୀ ନରହରି ବନି ବିଷ୍ଣୁ ନେ, ହନେ କାନ କୁଣ୍ଡଳ ଗିରେ ॥

ଭଗବାନ୍ ସ୍ୱେଚ୍ଛାମୟ ପବିତ୍ରତମ । ସର୍ବଦା ଅଶୁଦ୍ଧ ଭବନରେ ନବଦ୍ୱାର-ଯୁକ୍ତ ଦେହରେ ବାସ କରୁଥିବା ଜୀବ, କେବଳ ଜଳ ଓ ମାଟିଦ୍ୱାରା ଶୁଦ୍ଧ-ହୋଇ ସେହି ପବିତ୍ରତମ ପରମ ପୁରୁଷଙ୍କୁ ପାଇବା ସମ୍ଭବ ନୁହେଁ । ଭଗବାନ୍ ଏତେ ଦିବ୍ୟଗୁଣର ଅଧିକାରୀ ଯେ, କେହି ଗର୍ବର ସହିତ କହିପାରିବ ନାହିଁ, ମୁଁ ନିଜ ଗୁଣରେ ପ୍ରଭୁଙ୍କୁ ବଶୀଭୂତ କରିପାରିବି । ନିଜର ଗୁଣ ବଳରେ କେହି ଭଗବାନ୍‌ଙ୍କୁ ନିଜ ଅଧୀନକୁ ଆଣିପାରିବ ନାହିଁ । ସେ କେବଳ କୃପାର ବଶୀଭୂତ ହୁଅନ୍ତି । ସେ କରୁଣା ସାଗର । ସେ ସମସ୍ତଙ୍କୁ ସମାନ ଭାବରେ ସର୍ବଦା କୃପା ପ୍ରଦର୍ଶନ କରନ୍ତି । ସେ ସାଧନାର ନୁହେଁ କୃପାଦ୍ୱାରା ହିଁ ସାଧ୍ୟ । କୃପା ଅପେକ୍ଷାରେ ରହି ଜୀବନକାଳ କଟି ଯାଇପାରେ । ଅହଙ୍କାର ପରିତ୍ୟାଗ କରି, ଛନ୍ଦ, କପଟ ମନରେ ନ ରଖି ଯେ

ତାଙ୍କ ଆଶ୍ରୟ କରେ ତାକୁ ପ୍ରଭୁ ନିଜର କରିନିଅନ୍ତି, ତା' ଉପରେ ଦୟା ବୃଷ୍ଟି କରିଦିଅନ୍ତି । ପ୍ରଭୁ ଏ ସଂସାରରେ କାହାର ଗର୍ବ ରଖନ୍ତି ନାହିଁ । ବହୁ ବଡ଼ ବଡ଼ ପ୍ରତିଭାଶାଳୀ, ପରାକ୍ରମଶାଳୀ ଲୋକ ତାଙ୍କ ପାଖରେ ହାରି ଯାଇଛନ୍ତି । ନିଜକୁ ଦୀନ, ହୀନ କରି ଯେ ତାଙ୍କର ଶରଣ ପ୍ରାର୍ଥନା କରେ ଯେ ତାକୁ ରକ୍ଷା କରନ୍ତି, ତାକୁ ପାଳନ କରନ୍ତି ଏବଂ ତାହାର ସେବକ ହୋଇଯାନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ବଳି ଯେତେବେଳେ ନିଜର ବନ୍ଧୁ, ସ୍ୱଜନଙ୍କୁ ନେଇ ସୁତଳ ଲୋକ ଅଭିମୁଖେ ଯାତ୍ରାକଲେ ସେତେବେଳେ ଭଗବାନ୍ ବାମନ ଏକ ରୂପରେ ତାଙ୍କର ଅନୁଗମନ କଲେ ଏବଂ ଅନ୍ୟ ଏକ ରୂପରେ ସ୍ୱର୍ଗକୁ ଯାଇ ବଳିଠାରୁ ଦାନସୂତ୍ରେ ଗ୍ରହଣ କରିଥିବା ରାଜ୍ୟଗୁଡ଼ିକୁ ପୁଣି ଦେବତା-ମାନଙ୍କୁ ଦେଇଦେଲେ । ମହାରାଜ ବଳିକୁ ବାନ୍ଧିବା ପାଇଁ ଯାଇ ଭଗବାନ୍ ନିଜେ ବନ୍ଦୀ ହୋଇଗଲେ । ଏପର୍ଯ୍ୟନ୍ତ ହାତରେ ଗଦା ଧରି ବଳିଙ୍କ ଦ୍ୱାରଦେଶରେ ଦ୍ୱାରପାଳଭାବେ ରହିଛନ୍ତି । ବଳିଙ୍କ ସହିତ ଯୁଦ୍ଧ କରିବା ପାଇଁ କେହି ଆସିଲେ ପ୍ରଥମେ ତାଙ୍କ ସହିତ ଯୁଦ୍ଧ କରେ । ତେଣୁ ବଳି ସୁତଳ ଲୋକରେ ଆନନ୍ଦରେ ରହିଛି ।"

ଶୌନକ ପଚାରିଲେ—"ହେ ସୂତ ! କେବେ ଯଦି ଦ୍ୱାରପାଳ ଥିବା ପ୍ରଭୁଙ୍କର ଅନ୍ୟ କୌଣସି ଠିକା ଯିବା ଦରକାର ହେଲା ତେବେ କଣ ହେବ ? ବଳି-ଦ୍ୱାରରେ ଭଗବାନ୍ଙ୍କ ସହିତ କେହି କେବେ ଯୁଦ୍ଧ କରିଛି କି ?"

ମହର୍ଷି ସୂତ କହିଲେ—"ମହାଶୟ ! ତାଙ୍କ ସହିତ ଯୁଦ୍ଧ କରିବା ପାଇଁ କାହାର ସାମର୍ଥ୍ୟ ଅଛି ? ଥରେ ରାବଣ ସାହସ କରିଥିଲା କିନ୍ତୁ ହାରିଗଲା ।"

ଶୌନକ ପଚାରିଲେ—"ହେ ସୂତ ! ରାବଣ କାହିଁକି ଭଗବାନ୍ଙ୍କ ସହିତ ଯୁଦ୍ଧ କରିଥିଲା ସେଇ କଥା ଆମକୁ କୁହନ୍ତୁ ।"

ମହର୍ଷି ସୂତ କହିଲେ - "ସେ ଏକ ବଡ଼ କାହାଣୀ । କିନ୍ତୁ ସଂକ୍ଷେପରେ ସେ କଥା ମୁଁ କହୁଛି । ଆପଣମାନେ ମନଦେଇ ଶୁଣନ୍ତୁ ।

ଏକଦା ଦିଗ୍ବିଜୟ କରିବା ଉଦ୍ଦେଶ୍ୟରେ ବାହାରି ରାବଣ ପାତାଳପୁରର ଅନେକ ରାଜ୍ୟ ଜୟକରି ସୁତଳ ଲୋକରେ ଯାଇ ପହଞ୍ଚିଲା । ଦୂରରୁ ମହାରାଜ ବଳିଙ୍କ ଦିବ୍ୟଭବନକୁ ଦେଖି ରାବଣ ମନ୍ତ୍ରୀଙ୍କୁ ପଚାରିଲା— ପ୍ରହସ୍ତ ! ଏହି ସୁନ୍ଦର ପ୍ରାସାଦଟି କାହାର ? ତୁମେ ଯାଇ ବୁଝିଆସ ତ ସେଠାରେ କିଏ ଅଛନ୍ତି ?

ମନ୍ତ୍ରୀ ପ୍ରହସ୍ତ ପ୍ରାସାଦ ଆଡ଼କୁ ଯାଇ ଛଅଟି ବେଢ଼ା ପାର ହେବା ପରେ ସପ୍ତମବେଢ଼ାର ଦ୍ୱାରଦେଶରେ ସହସ୍ର ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ଏକ ପୁରୁଷଙ୍କୁ ଦଣ୍ଡାୟମାନ ଥିବାର ଦେଖିଲେ । ସେ ଅଗ୍ନି ପରି ତେଜୋଦୀପ୍ତ ଦେଖାଯାଉଥିଲେ । ତାଙ୍କୁ ଦେଖି ପ୍ରହସ୍ତଙ୍କ ରୋମ ଟାଙ୍କୁରି ଉଠିଲା । ସେ ଭୟରେ ରାବଣ ପାଖକୁ ଫେରିଆସି କହିଲା—ପ୍ରଭୋ ! ଭିତରେ ଲୁହା ଗଦାଟିଏ ଧରି ଏପରି ଏକ ବ୍ୟକ୍ତି ଠିଆ ହୋଇଛି ଯାହାକୁ ଦେଖିବାମାତ୍ରେ ମୁଁ ଭୟଭୀତ ହୋଇପଡ଼ିଲି ।

ଏହାଶୁଣି ଅଭିମାନୀ ରାବଣ ହସିଦେଇ କହିଲା—ପ୍ରହସ୍ତ ! ତୁମେ ମୋର ମନ୍ତ୍ରୀ ହୋଇ ମଧ୍ୟ ଏପରି ଭୟ କରୁଛ ? ହଉ, ମୁଁ ନିଜେ ଯାଉଛି । ଏହା କହି ରାବଣ ଭିତରକୁ ଗଲା । ରାବଣ, ଦ୍ୱାରଦେଶରେ ସେହି ତେଜୋମୟ ପୁରୁଷଙ୍କୁ ଦେଖିବାମାତ୍ରେ ଭୟରେ ଥରିବାକୁ ଲାଗିଲା । ସାରା ଦେହରୁ ତା'ର ଝାଳ ବହିଗଲା । ତଥାପି ଧୈର୍ଯ୍ୟ ଧାରଣ ପୂର୍ବକ କମ୍ପିତ ସ୍ୱରରେ ପଚାରିଲା—କିଏ ତୁମେ ? ଏହି ପ୍ରସାଦ ଭିତରେ କିଏ ଅଛନ୍ତି ? ଏହି ପ୍ରାସାଦ କାହାର ?

ସେହି ତେଜସ୍ୱୀ ପୁରୁଷ କହିଲେ—ହେ ରାକ୍ଷସେଶ୍ୱର ! ଏହି ପ୍ରାସାଦ ଭିତରେ ପରମ ଯଶସ୍ୱୀ ଦାନବୀର ଶିରୋମଣି ଦୈତ୍ୟ ଦାନବମାନଙ୍କ ଅଧୀଶ୍ୱର ମହାମନସ୍ୱୀ ମହାରାଜ ବଳି ବାସ କରୁଛନ୍ତି । ତୁମେ କଣ ଚାହୁଁଛ । ତୁମର ଯଦି ଯୁଦ୍ଧ କରିବା ଇଚ୍ଛା ଅଛି ତେବେ ପ୍ରଥମେ ମୋ' ସହିତ ଯୁଦ୍ଧ କର, ପରେ ମୋର ପ୍ରଭୁଙ୍କ ପାଖକୁ ଯିବ ।

ରାବଣ କହିଲା—ମୁଁ ତୁମ ସହିତ ଯୁଦ୍ଧ କରିବା ପାଇଁ ଇଚ୍ଛୁକ ନୁହେଁ । ମୁଁ ବଳିଙ୍କ ପାଖକୁ ଯିବି ।

ଦ୍ୱାରପାଳ ରୂପୀ ତେଜସ୍ୱୀ ପୁରୁଷ କହିଲେ—ଠିକ୍ ଅଛି, ତେବେ ଭିତରକୁ ଯାଅ । ଏହା ଶୁଣିବାମାତ୍ରେ ରାବଣ ଭିତରକୁ ଯାଇ ଅସୁରେନ୍ଦ୍ର ମହାରାଜ ବଳିଙ୍କୁ ଦିବ୍ୟ ସିଂହାସନ ଉପରେ ବସିଥିବାର ଦେଖିଲା । ବଳି ମଧ୍ୟ ରାବଣକୁ ଆଦର କରି କୁଶଳବାର୍ତ୍ତା ପଚାରିଲେ । ସବୁ ଲୋକପାଳଙ୍କୁ ଜୟକରି ଆସିଥିବା ରାବଣକୁ ଦେଖି ସେ ଆନନ୍ଦିତ ହେଲେ । ଆଦରରେ ସେ ରାବଣକୁ ନେଇ କୋଳରେ ବସାଇଲେ ଓ ପଚାରିଲେ—ହେ ରାକ୍ଷସେଶ୍ୱର ରାବଣ ! ତୁମର ଅଭିଳାଷ କଣ ? ତୁମର କି ପ୍ରକାର ପ୍ରିୟକାର୍ଯ୍ୟ ମୁଁ କରିପାରିବି ?

ରାବଣ କହିଲା- ହେ ମହାନୁଭବ ! ମାତୃକୁଳ ସମ୍ବନ୍ଧରୁ ଆପଣ ମୋର ପୂଜ୍ୟ । ମୁଁ ଶୁଣିଛି ଯେ, ବାମନ ବିଷ୍ଣୁ କପଟରେ ଆପଣଙ୍କର ସର୍ବସ୍ୱ ଅପହରଣ

କରନେଇ ଏବଂ ବନ୍ଦୀ କରି ଆପଣଙ୍କୁ ପାତାଳପୁରକୁ ପଠାଇଛନ୍ତି । ଯୁଦ୍ଧରେ ମୁଁ ସେହି ବିଷ୍ଣୁଙ୍କୁ ନିହତ କରି ଆପଣଙ୍କୁ ମୁକ୍ତ କରିବା ପାଇଁ ଆସିଛି । ଆପଣ ମୋତେ ସେହି ବିଷ୍ଣୁ କେଉଁଠି ଅଛନ୍ତି କୁହନ୍ତୁ ।

ଏହା ଶୁଣି ମହାରାଜ ବଳି ହସି ହସି କହିଲେ—ଭାଇ ! ଭଗବାନ ବିଷ୍ଣୁଙ୍କୁ ଯୁଦ୍ଧରେ କିଏ ଜୟ କରିପାରିବ ? ସେ ତ ଅଜେୟ ?

ଅହଙ୍କାର ସହକାରେ ରାବଣ କହିଲା—ମୁଁ ଯମ, କୁବେର, ଇନ୍ଦ୍ରାଦି ଲୋକପାଳମାନଙ୍କୁ ଜୟ କରିସାରିଛି । ଆଜି ପର୍ଯ୍ୟନ୍ତ ଯୁଦ୍ଧରେ ମୋତେ କେହି ହଟେଇ ପାରିନାହାନ୍ତି । ଆପଣ କିଛି ଚିନ୍ତା କରନ୍ତୁ ନାହିଁ, ମୁଁ ବିଷ୍ଣୁଙ୍କୁ ହରେଇ ଆପଣଙ୍କୁ ମୁକ୍ତ କରିଦେବି ।

ମହାରାଜ ବଳି କହିଲେ—ଆଚ୍ଛା, ଠିକ୍ ଅଛି । ତୁମେ ଗୋଟିଏ କାମ କର । ଏଇ ଆଗରେ ଯେଉଁ ଚକ୍‌ମକ୍ କରୁଥିବା ଚକ୍ରଟି ଅଛି, ତାକୁ ଉଠାଇ ମୋ' ପାଖକୁ ନେଇଆସ ତ । ତା'ପରେ ଯାହା କରିବା କଥା କରିବ ।

ଏହା ଶୁଣିବାମାତ୍ରେ ରାବଣ ବୀରଦର୍ପରେ ଚକ୍ରଆଡ଼କୁ ମାଡ଼ିଗଲା । ପୁରା ବଳ ଖଟେଇ କରି ସେହି ଜାଜ୍ୱଲ୍ୟମାନ ଚକ୍ରକୁ ଉଠାଇବା ପାଇଁ ଚେଷ୍ଟା କଲା । କିନ୍ତୁ ଚକ୍ରଟି ଟିକିଏ ହେଲେ ହଲ୍‌ଚଲ୍ ହେଲାନାହିଁ । ରାବଣ ମନରେ ଭୀଷଣ ଦୁଃଖ ହେଲା । ଆଉ ଥରେ ପୁରା ଶକ୍ତି ଲଗାଇ ଉଠାଇବାକୁ ଯାଇ ରାବଣ ତଳେ କଚାଡ଼ି ହୋଇ ପଡ଼ିଗଲା । ମୁହଁରୁ ରକ୍ତ ବହିବାକୁ ଲାଗିଲା । ମୂର୍ଚ୍ଛିତ ହୋଇଗଲା ।

ମହାରାଜ ବଳି ପାଖକୁ ଯାଇ ରାବଣକୁ ଉଠାଇ ଆଣିଲେ । ସେ କହିଲେ—ଭାଇ ! ପୂର୍ବକାଳରେ ମୋର ପିତାମହଙ୍କ ପିତା ଜଣେ ତେଜସ୍ୱୀ ବୀର ଥିଲେ । ତାଙ୍କ ନାମ ହେଉଛି ହିରଣ୍ୟକଶିପୁ । ଭଗବାନ୍ ବିଷ୍ଣୁ ନୃସିଂହ ରୂପରେ ସେହି ଅସାଧାରଣ ବୀରଙ୍କୁ ଅବଲୀଳାକ୍ରମେ ହତ୍ୟା କରିଥିଲେ । ନଖରେ ତାଙ୍କ ପେଟକୁ ଚିରି ଦେଇଥିଲେ । ସେତେବେଳେ ତାଙ୍କ ମୁକୁଟ କେଉଁଠି ଖସିପଡ଼ିଗଲା ବା କୁଣ୍ଡଳ କେଉଁଠି ପଡ଼ିଗଲା । ଗୋଟିଏ କୁଣ୍ଡଳ ଏଇ ପାତାଳପୁରୀରେ ଆସି ପଡ଼ିଥିଲା । ଏହା ହେଉଛି ତାଙ୍କର କୁଣ୍ଡଳ । ଏହି ଚକ୍ରବତ୍ କୁଣ୍ଡଳକୁ ସେ କାନରେ ପିନ୍ଧିଥିଲେ । ତୁମେ କହୁଛ ଯେ ଇନ୍ଦ୍ର, ବରୁଣ କୁବେର ପ୍ରଭୃତିଙ୍କୁ ଜୟ କରିଛ । ଯମକୁ ବି ଯୁଦ୍ଧରେ ପରାଜିତ କରିଛ । ଯେଉଁ ବ୍ୟକ୍ତିର କାନରେ ପିନ୍ଧିଥିବା କୁଣ୍ଡଳକୁ ତୁମେ ଉଠାଇ ପାରୁନାହଁ ସେହି ବ୍ୟକ୍ତିକୁ ଖୁଣ୍ଟିରେ, ବିନା ଅସ୍ତ୍ରଶସ୍ତ୍ରରେ ହତ୍ୟା କରିଥିବା ବିଷ୍ଣୁଙ୍କ ସହିତ ତୁମେ କିପରି ଯୁଦ୍ଧ କରିପାରିବ ?

ଏହା ଶୁଣି ରାବଣ ସ୍ତମ୍ଭୀଭୂତ ହୋଇଗଲା । ସେ ପଚାରିଲା—ବିଷ୍ଣୁ କେଉଁଠି ?

ମହାରାଜ ବଳି କହିଲେ—ଦ୍ୱାରଦେଶରେ ଲମ୍ବା ଗଦା ଧରି ଠିଆ ହୋଇ-ଥିବା ଯେଉଁ ତେଜୋମୟ ପୁରୁଷଙ୍କୁ ତୁମେ ଦେଖିଲ ସେ ହେଉଛନ୍ତି ସାକ୍ଷାତ୍ ବିଷ୍ଣୁ । ତୁମେ ହଜାରେ ଇନ୍ଦ୍ରଙ୍କୁ ଜିଣି ପାରିଲେ ମଧ୍ୟ ତାଙ୍କ ସହିତ ଯୁଦ୍ଧରେ ପାରିବ ନାହିଁ । ତୁମେ ଘରକୁ ଫେରିଯାଅ । ମୋତେ ମୁକ୍ତ କରିବା ପାଇଁ ଆଦୌ ବ୍ୟସ୍ତ ହୁଅ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହା ଶୁଣି ମହା ଅହଙ୍କାରୀ ରାବଣ ଭଗବାନ୍ ବାମନଙ୍କ ସହିତ ଯୁଦ୍ଧ କରିବା ପାଇଁ ଦ୍ୱାରଦେଶକୁ ଚାଲିଗଲା । ପ୍ରଭୁ ଭାବିଲେ ଯୁଦ୍ଧ କରିବାମାତ୍ରେ ଏ ରାକ୍ଷସ ମୃତ୍ୟୁବରଣ କରିବ । କିନ୍ତୁ ବର୍ତ୍ତମାନ ଏହାକୁ ମାରିବା ପାଇଁ ମୋର ଇଚ୍ଛା ନାହିଁ । ଏହା ଭାବି ସେ ତୁରନ୍ତ ଅନ୍ତର୍ଦ୍ଧାନ ହୋଇଗଲେ ।

ରାବଣ ଦ୍ୱାରଦେଶରେ ପହଞ୍ଚି ଯେତେବେଳେ ଦେଖିଲା ଭଗବାନ୍ ନାହାନ୍ତି ସେତେବେଳେ ସିଂହନାଦ କରି କହିଲା—ମୁଁ ସୁତଳ ଲୋକକୁ ଜୟକଲି । ଏହା କହି ସେ ସେଠାରୁ ଚାଲିଗଲା ।

ହେ ମୁନିଗଣ ! ରାବଣ ଏହିପରି ଭଗବାନ୍‌ଙ୍କ ପରାକ୍ରମ ଅନୁଭବ କରିଥିଲା । କେହି କେହି କହନ୍ତି ଭଗବାନ୍ ବାମନ ନିଜ ଆଙ୍ଗୁଳି ଅଗରେ ଠୁକେଇ ଦେବାରୁ ରାବଣ ଛିଟିକି ଯାଇ ହଜାରେ ଯୋଜନ ଦୂରରେ ପଡ଼ିଥିଲା । ସମ୍ପୂର୍ଣ୍ଣ ଚରାଚର ବିଶ୍ୱ ଯାହାର ନିଃଶ୍ୱାସରେ ସୃଷ୍ଟି ହୁଏ ତାଙ୍କ ପକ୍ଷରେ କୌଣସି କଥା ଅସମ୍ଭବ ନୁହେଁ । ସେ ନାନା ରୂପରେ କେବଳ ଖେଳିବା ପାଇଁ ନାନାବିଧ ଲୀଳା ରଚନା କରନ୍ତି । ଭଗବାନ୍ ଗୋଟିଏ ଅବସ୍ଥାରେ ସୁତଳ ଲୋକରେ ମହାରାଜ ବଳିଙ୍କ ଦ୍ୱାରପାଳ ଭାବେ ରହିବା ସଙ୍ଗେ ସଙ୍ଗେ ଅନ୍ୟ ଏକ ଅବସ୍ଥାରେ ସ୍ୱର୍ଗରେ ଇନ୍ଦ୍ରଙ୍କ ପାଖରେ ରହି ତିନି ଲୋକକୁ ପାଳନ କରନ୍ତି । ଖୁବ୍ ସଂକ୍ଷେପରେ ଭଗବାନ୍ ବାମନଙ୍କ ଅବତାର କଥା କହିଲି । ଏବେ ଆଉ କଣ ଶୁଣିବା ପାଇଁ ଆପଣମାନେ ଇଚ୍ଛା କରୁଛନ୍ତି ।

ମହର୍ଷି ଶୌନକ ପଚାରିଲେ—ହେ ସୂତ ! ବଳି ପାତାଳପୁରକୁ ଚାଲିଯିବା ପରେ ଭଗବାନ୍ ବାମନ ଆଉ କ'ଣ କାର୍ଯ୍ୟ କଲେ, ତାହା ଆମ୍ଭମାନଙ୍କୁ କହନ୍ତୁ ।

ମହର୍ଷି ସୂତ କହିଲେ—"ବଳିଙ୍କଠାରୁ ଦାନରୂପେ ପୃଥିବୀକୁ ଗ୍ରହଣ କରି ଭଗବାନ୍ ବାମନ କପରି ଉପେନ୍ଦ୍ର ହେଲେ ସେଇକଥା ମୁଁ କହୁଛି । ଆପଣମାନେ ମନଦେଇ ସେକଥା ଶୁଣନ୍ତୁ ।"

## ଛପ୍ପୟ

**ମୃତକ ଅସୁର କେ ପ୍ରଥମ ଜାଇ କୁଣ୍ଡଳହିଁ ଉଠାଓ ।**
**ତବ ଉନ ହରି ତେ ଲଡ଼ନ ହେତୁ ଉନକେ ଢିଙ୍ଗ ଜାଓ ।।**
**ଟସତେ ମସ ନହିଁ ଭୟୋ ଲଗାୟୋ ଦାନବ ବଳ ସବ ।**
**ହଁସି ବୋଲେ ବଳି ବୀର ! ଵିଷ୍ଣୁ ବଳ କଛୁ ସମୁଝେ ଅବ ।।**
**ଜା କୁଣ୍ଡଳ କୁଁ ଜାନ ମହଁ, ଜେ ପହିନତ ତେ ହନେ ହରି ।**
**ଵିଜୟ ପ୍ରାପ୍ତ କୈସେ କରେ, ନତ ପ୍ରଭୁତେଁ ତୁମ ଯୁଦ୍ଧ କରି ।।**



# ଉପେନ୍ଦ୍ର ପଦରେ ବାମନଙ୍କ ଅଭିଷେକ

ଏବଂ ବଳେର୍ମହୀଂ ରାଜନ୍ ଭିକ୍ଷିତ୍ୱା ବାମନୋ ହରିଃ ।
ଦଦୌ ଭ୍ରାତ୍ରେ ମହେନ୍ଦ୍ରାୟ ତ୍ରିଦିବଂ ଯତ୍ପରୈର୍ହୃତମ୍ ॥
ପ୍ରାପ୍ୟ ତ୍ରିଭୁବନଂ ଚେନ୍ଦ୍ର ଉପେନ୍ଦ୍ରଭୁଜ ପାଳିତଃ ।
ଶ୍ରିୟା ପରମୟା ଜୁଷ୍ଟୋ ମୁମୁଦେ ଗତ ସାଧ୍ୱସଃ ॥

(ଭାଗ-୮-୨୩-୧୯, ୨୫)

## ଛପ୍ପୟ

ବଳି ବାମନ କୋ ବିଜୟ ଚରିତ ଯହ ନୃପବର ! ଗାୟୋ ।
ଅବତକ ବଳିକୋ ସୁଯଶ ଚତୁର୍ଦ୍ଦଶ ଭୁବନନ ଛାୟୋ ॥
ସୁତଳ ଲୋକ ବଳି ଗୟେ ବିଷ୍ଣୁ ନିତ ଓହାଁ ବିରାଜେଁ ।
ବଳି ବୈଭବ କୁଁ ନିରଖି ଅମର ସୁରପତି ହୂ ଲାଜେଁ ॥
ୟୋଁ ବଳି ଛଳିକେ ବିଷ୍ଣୁନେ ସ୍ୱର୍ଗ ରାଜ୍ୟ ଦେବନ ଦୟୋ ।
ଅଦିତି କାମନା ପୂର୍ଣ୍ଣ କରି, ପୁନି ଉପେନ୍ଦ୍ର ପଦହୁଁ ଲହ୍ୟୋ ॥

ଭଗବାନ୍‌ଙ୍କ ଅଲୌକିକ ଲୀଳା ମଧ୍ୟରେ ଭକ୍ତବାତ୍ସଲ୍ୟ ଅନ୍ତର୍ନିହିତ ଥାଏ । ତାଙ୍କର ସମସ୍ତ ଚେଷ୍ଟା ଆଶ୍ରିତମାନଙ୍କର ଇଚ୍ଛାପୂର୍ତ୍ତି ପାଇଁ ଉଦ୍ଦିଷ୍ଟ । ଇଚ୍ଛା କଲ-ମାତ୍ରେ ସେ ସବୁକିଛି କରିପାରନ୍ତି । ତେଣୁ ସାକାର ରୂପ ଗ୍ରହଣ କରି ପ୍ରଭୁ ଲୀଳା କରିବାର ପ୍ରଧାନ କାରଣ ହେଉଛି, ତାଙ୍କ ଚରିତ ଗାନ କରାଯାଉ । ଯେଉଁମାନେ ଭଗବାନ୍‌ଙ୍କ ପ୍ରତ୍ୟକ୍ଷ ସାକ୍ଷାତ ପାଇନାହାନ୍ତି ସେମାନେ ସେହି ଚରିତ ଶୁଣି, କହି ଓ ଲେଖି ଏ ଦୁସ୍ତର ସଂସାର ସାଗରକୁ ସହଜରେ ପାରହୋଇ ଯାଇପାରିବେ । କାମିନୀର ରୂପ, ଗୁଣ, ବର୍ଣ୍ଣନା ଶୁଣିଲେ ଯେପରି କାମୁକର ଦେହ ରୋମାଞ୍ଚିତ ହୋଇ ଉଠେ ସେହିପରି ଭକ୍ତ ଭଗବାନ୍‌ଙ୍କ ଚରିତ ଶୁଣି ଭାବ ଜଗତରେ ତାଙ୍କୁ ପ୍ରତ୍ୟକ୍ଷ-

ଭାବେ ଦର୍ଶନ କରେ, ତାଙ୍କର ନାମ ସ୍ମରଣ କରି ତନ୍ମୟ ହୋଇଯାଏ । ଶୟନ, ସ୍ୱପ୍ନ, ଜାଗରଣରେ କାମୁକର ଚିତ୍ତ ଯେପରି କାମିନୀର ହୋଇଯାଏ, ସେହିପରି ଭଗବଦ୍‌ଭକ୍ତ ଭଗବାନ୍‌ଙ୍କ ଚିନ୍ତାରେ ତନ୍ମୟ ହୋଇଯାଏ । ଏଣୁ ସଂସାରରେ ଯଦି ସ୍ମରଣୀୟ ହୋଇ କିଛି ଥାଏ ତାହା ହେଉଛି ଅବତାର କଥା । ହରିକଥା କାନକୁ କେବଳ ମଧୁର ଲାଗେନାହିଁ, ତାହା ଶ୍ରବଣରେ ପାପତାପ ଦୂର ହୋଇଯାଏ । ତେଣୁ ସର୍ବଦା ଶ୍ରଦ୍ଧାର ସହିତ ସଚ୍ଚିଦାନନ୍ଦଙ୍କ ସାକାର ରୂପ ସମୂହର ଚରିତ ଶ୍ରବଣ ଓ ମନନ କରିବା ଉଚିତ ତାହାହିଁ ପୁରୁଷାର୍ଥ ଓ ଶ୍ରେଷ୍ଠ ସାଧନା ।

ମହାରାଜ ପରୀକ୍ଷିତଙ୍କୁ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ ବାମନ ଏହିପରି ବିନା ଅସ୍ତ୍ରରେ ଭିକ୍ଷୁକ ବେଶ ଧାରଣ କରି ମହାରାଜ ବଳିଙ୍କୁ ଜୟ କଲେ ।"

ଶୌନକ ପଚାରିଲେ—"ହେ ସୂତ ! ଆପଣ ଏହାକୁ ବିଜୟ ନ କହି କପଟ ବୋଲି କହନ୍ତୁ । କାରଣ ଏହାକୁ କଣ ବିଜୟ କହନ୍ତି ?"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ମହାଶୟ ! ବ୍ରାହ୍ମଣର ବେଶ ଏହିପରି ଏବଂ ଏହାହିଁ ତା'ର ବିଜୟ । କଥାରେ କହନ୍ତି ଭିକ୍ଷୁକ ପରମେଶ୍ୱରଙ୍କଠାରୁ ବଡ଼ । ତା'ର କେହି କିଛି କରିପାରନ୍ତି ନାହିଁ । ଜୟ କଲେ ବ୍ରାହ୍ମଣର ଜୟ ହୁଏ ଏବଂ ହାରିଗଲେ ବି ସେ ବିଜୟୀ ଘୋଷିତ ହୁଏ । ଏ ବିଷୟରେ ଏକ ସତକଥା ଆପଣମାନଙ୍କୁ କହୁଛି । ଆପଣମାନେ ମନଦେଇ ସେ କଥାଟି ଶୁଣନ୍ତୁ ।

ଭଗବାନ୍ ବିଶ୍ୱନାଥଙ୍କ ନିବାସ କ୍ଷେତ୍ର କାଶୀରେ ଜଣେ ଗୃହସ୍ଥୀ ବ୍ରାହ୍ମଣ ଥିଲେ । ସେ ବେଶ୍ ଲେଖାପଢ଼ା ଜାଣିଥିଲେ । ତାଙ୍କର ଏକ ବଡ଼ ପରିବାର ଥିଲା । ସେଠାରେ ଜଣେ ବଡ଼ ଜମିଦାର ଥିଲେ । ତାଙ୍କର ପର୍ଯ୍ୟାପ୍ତ ଭୂ ସମ୍ପତ୍ତି ଥିଲା । ସେହି ଜମିଦାରଙ୍କ ଗ୍ରାମ ପାଖରେ ବ୍ରାହ୍ମଣର ଏକ ବଡ଼ ଆମ୍ବ ବଗିଚା ଥିଲା । ବାସ୍ତବରେ ସେ ବଗିଚାଟି ଥିଲା ଜମିଦାରଙ୍କର । କିନ୍ତୁ ତାହା ବ୍ରାହ୍ମଣର ଅଧିକାରରେ ଥିଲା । ଜମିଦାର ଥିଲେ ବଡ଼ ବିଳାସୀ । ସେ ଜମିବାଡ଼ି କଥା ଆଦୌ ବୁଝୁ ନ ଥିଲେ । ଚାକରବାକରମାନେ ଜମିଦାରଙ୍କ ଜମିବାଡ଼ି ଦେଖାରଖା କରୁଥିଲେ । ବ୍ରାହ୍ମଣ ପଣ୍ଡିତଙ୍କୁ ସେ ଜମିଦାର ଖୁବ୍ ଆଦର ଓ ସମ୍ମାନ କରୁଥିଲେ । ଦିନେ ଜଣେ କର୍ମଚାରୀ ଆସି ଜମିଦାରଙ୍କୁ କହିଲା—ମହାରାଜ ! ଏଇ ବ୍ରାହ୍ମଣ ବଗିଚାଟିକୁ ଅଧିକାର କରିନେଲେଣି ।"

ଜମିଦାର ହସି ହସି ପଚାରିଲେ—"ପଣ୍ଡିତ ମହାଶୟ ! କହନ୍ତୁ ବଗିଚାଟା କାହାର ?"

ପଣ୍ଡିତେ କହିଲେ—"ମୋର ଆଜ୍ଞା।"

କର୍ମଚାରୀ ଜଣକ ପଚାରିଲେ—"ଆପଣଙ୍କର କପର ହେଲା ? ଖାତାପତ୍ରରେ ତ ଆମ ଜମିଦାରଙ୍କ ନାମ ଅଛି।"

ପଣ୍ଡିତେ କହିଲେ—"ନାଁ। ଯାହାର ଲେଖାଅଛି ଥାଉ, କିନ୍ତୁ ବଗିଚାଟି ମୋର।"

ଜମିଦାର ହସି ହସି କହିଲେ—"ତେବେ ଘଟଣାଟା ବିଚାରାଳୟକୁ ଯାଉ। ଆପଣ କ'ଣ ମକଦ୍ଦମା ଚଳାଇବେ ନା ମୁଁ ମୋକଦ୍ଦମା ଆରମ୍ଭ କରିବ ?"

ବ୍ରାହ୍ମଣ କହିଲେ—ଆପଣ ମକଦ୍ଦମା କରନ୍ତୁ। କିନ୍ତୁ ମୋର ବିଜୟ ନିଶ୍ଚିତ, ଏହା ମୁଁ ଜାଣେ।"

ଜମିଦାର କର୍ମଚାରୀଙ୍କୁ ଆଦେଶ ଦେଇ କହିଲେ—"ଠିକ୍ ଅଛି। ପଣ୍ଡିତଙ୍କ ବିରୁଦ୍ଧରେ ମକଦ୍ଦମା ଆରମ୍ଭ କର। କର୍ମଚାରୀ ଜଣକ ଜମିଦାରଙ୍କଠାରୁ ସେଇକଥା ଆଶା କରୁଥିଲେ। କାରଣ ମକଦ୍ଦମା ଚାଲିଲେ ତାଙ୍କର ଲାଭ। ମକଦ୍ଦମା ଆରମ୍ଭ ହୋଇଗଲା। ପଣ୍ଡିତେ ମଧ୍ୟ ନିଜ ପକ୍ଷରୁ ଯତ୍ନ କରିବାରେ ଲାଗିପଡ଼ିଲେ। ପଇସାପତ୍ର ଦରକାର ହେଲେ ଯାହା ମକଦ୍ଦମା ଚଳାଇବା ପାଇଁ ଆବଶ୍ୟକ, ତାହା ଜମିଦାରଙ୍କ ପାଖରୁ ମାଗି ନେଉଥିଲେ।

ଶେଷରେ ବିଚାରପତି ଜମିଦାରଙ୍କର ବୋଲି ବିଚାରପତି ରାୟ ଦେଲେ। ଜମିଦାର ହସି ହସି ପଚାରିଲେ—"ପଣ୍ଡିତ ମହାଶୟ ! କାହାର ଜୟ ହେଲା ?"

ଦୃଢ଼ ସ୍ୱରରେ ପଣ୍ଡିତ କହିଲେ—"ଆଜ୍ଞା ମୋର ହେଲା।"

ଜମିଦାର ପୁଣି ପଚାରିଲେ—ବଗିଚା କାହାର ?

ପଣ୍ଡିତେ କହିଲେ—"ଯେ ଆମ୍ବ ଖାଇବ ବଗିଚା ତାର। ଦେଖନ୍ତୁ ଆମ୍ବ କିଏ ଖାଉଛି।"

ଜମିଦାର ଆଦେଶ ଦେଲେ ବଗିଚା ନିଜ ଅଧିକାରରେ ରଖିବା ପାଇଁ। କର୍ମଚାରୀମାନେ ଆଦେଶ ପାଳନ କଲେ। ଦୁଇ ତିନିମାସ ପରେ ରକ୍ଷାବନ୍ଧନ ପୂର୍ଣ୍ଣିମା ପଡ଼ିଲା। ପଣ୍ଡିତେ ରାକ୍ଷୀ ନେଇ ଜମିଦାରଙ୍କ ଘରକୁ ଗଲେ ଏବଂ ଜମିଦାରଙ୍କ ହାତରେ ରାକ୍ଷୀ ବାନ୍ଧି ଏହି ମନ୍ତ୍ର ପଢ଼ିଲେ—

ଯେନ ବଦ୍ଧୋ ବଲିଃ ରାଜା ଦାନବେନ୍ଦ୍ରୋ ମହାବଲିଃ।
ତେନ ତ୍ୱାଂ ପ୍ରତିବଧ୍ନାମି ରକ୍ଷ ମା ଚଲ ମା ଚଲ॥

ଜମିଦାର ଅନ୍ୟ ବ୍ରାହ୍ମଣମାନଙ୍କୁ ଯାହା ଦେଉଥିଲେ ତା'ଅପେକ୍ଷା ଦଶ ଗୋଡ଼ାଏଟି ଅଧିକ ମୋହର ପଣ୍ଡିତଙ୍କୁ ଦେଲେ । ପଣ୍ଡିତେ କହିଲେ—ଏ ସୁନା ମୋହର ମୋର ଦରକାର ନାହିଁ । ଜମିଦାର ହସ ହସ ହୋଇ ପଚାରିଲେ—ଆପଣ କ'ଣ ଚାହୁଁଛନ୍ତି ।

ପଣ୍ଡିତ ମହାଶୟ କହିଲେ—"ମହାରାଜ ! ମୋତେ ମୋ ବଗିଚା ଫେରାଇ ଦିଅନ୍ତୁ ।" ଏହାଶୁଣି ଜମିଦାର କହିଲେ—"ପଣ୍ଡିତ ମହାଶୟ ! ଆପଣ ସତରେ ମୋତେ ବାନ୍ଧି ପକାଇଲେ । ହଉ ଯାଆନ୍ତୁ, ଆପଣଙ୍କୁ ବଗିଚାଟି ଦେଇଦେଲି ।" ସେତେବେଳେ ପଣ୍ଡିତେ ପଚାରିଲେ—ମହାରାଜ ! କୁହନ୍ତୁ, କାହାର ଜୟ ହେଲା ?

ହସି ହସି ଜମିଦାର କହିଲେ—"ଆଜ୍ଞା, ବ୍ରାହ୍ମଣଙ୍କୁ କେହି କ'ଣ ଜୟ କରିପାରିବ ? ସେ ଜୟ କରନ୍ତୁ ବା ହାରନ୍ତୁ ବିଜୟ ସବୁବେଳେ ତାଙ୍କର । ବିଜୟ ଆପଣଙ୍କର ହେଲା ଆପଣଙ୍କର ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଯେପରି ହେଲେ ମଧ୍ୟ ଭଗବାନ୍ ବାମନ ତିନି ଲୋକର ରାଜତ୍ୱ ବଳିଠାରୁ ଛଡ଼େଇ ନେଇଥିଲେ । ଏହି କାର୍ଯ୍ୟ ସେ ଶସ୍ତ୍ରବଳରେ ନୁହେଁ ଧର୍ମବଳରେ କରିଥିଲେ । ବଳିର ସର୍ବସ୍ୱ ନେଇ ଭଗବାନ୍ ନିଜର ବଡ଼ ଭାଇ ଇନ୍ଦ୍ରଙ୍କୁ ଦେଇଦେଲେ । କାରଣ ବ୍ରାହ୍ମଣ କେବେ ନିଜ ପାଇଁ ଭିକ୍ଷା ମାଗେ ନାହିଁ । ସେ ଯାହା ପାଆନ୍ତି ସେ ସମସ୍ତ ପରୋପକାର ପାଇଁ ଉତ୍ସର୍ଗ କରନ୍ତି । କାରଣ ବ୍ରାହ୍ମଣ ଭିକ୍ଷାଲବ୍ଧ ଯତ୍ସାମାନ୍ୟ ଉପାଦାନରେ ନିଜର ଜୀବିକା ନିର୍ବାହ କରେ ।

ମହାମୁନି ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହିଲେ—"ରାଜନ୍ ! ଇନ୍ଦ୍ର ଯେତେବେଳେ ପୁଣି ସିଂହାସନରେ ବସିବା କଥା ହେଲା ସେତେବେଳେ ମହାଦେବ, ସନତ୍କୁମାର, ଦକ୍ଷ, ଭୃଗୁ ତଥା ଅଙ୍ଗିରାଦି ସମସ୍ତ ଋଷି, ମୁନିଗଣ ଏକତ୍ରିତ ହେଲେ । ଦେବ, ଉପଦେବ, ପିତୃଗଣ, ରାଜା, ମହାରାଜାମାନେ ଆସି ସେଠାରେ ପହଞ୍ଚିଲେ । ବାମନଙ୍କ ମାତା ପିତା ଅଦିତି ଓ କଶ୍ୟପ ମଧ୍ୟ ସେହି ସମାରୋହରେ ଉପସ୍ଥିତ ଥିଲେ । ଏପରି ଏକ ବିରାଟ ସମାବେଶରେ ବ୍ରହ୍ମା କହିଲେ —ଉପସ୍ଥିତ ମହାନୁଭବ ! ଭଗବାନ୍ ବାମନ ବୁଦ୍ଧି ବଳରେ ବଳିର ସର୍ବସ୍ୱ ନେଇ ଆସିଲେ । ତେଣୁ ଆଜିଠାରୁ ମୁଁ ତାଙ୍କୁ ସମସ୍ତ ଲୋକ, ଲୋକପାଳ, ପ୍ରଜାବର୍ଗ, ବେଦ, ଧର୍ମ, ଯଶ, ଲକ୍ଷ୍ମୀ, ମଙ୍ଗଳ, ବ୍ରତ, ସ୍ୱର୍ଗ ତଥା ଅପବର୍ଗର ପ୍ରଭୁ ରୂପେ ସ୍ୱୀକାର କରୁଛି । ସେ ସମସ୍ତ ପାଳନ କରିବାରେ ସମର୍ଥ । ତାଙ୍କୁ ହିଁ ଇନ୍ଦ୍ରପଦରେ ଅଭିଷେକ କରାଯାଉ ।

ଭଗବାନ୍ କହିଲେ—"ବେଦଗର୍ଭ ! ଆପଣ ଧର୍ମର ମର୍ମ ଜାଣନ୍ତି । ଆପଣ ଏପରି ଅନ୍ୟାୟ କରିବା ଉଚିତ ନୁହେଁ । ବଡ଼ ଭାଇ ଥାଉଁ ଥାଉଁ ଶ୍ରେଷ୍ଠ ଭାଇ ସିଂହାସନରେ କିପରି ବସିବ ? ମୁଁ ତ ସମସ୍ତଙ୍କଠାରୁ ସାନ । ଇନ୍ଦ୍ରାସନରେ ମୋର ବଡ଼ ଭାଇ ଇନ୍ଦ୍ର ହିଁ କେବଳ ବସିପାରିବେ ।"

ଇନ୍ଦ୍ର କହିଲେ—"ପ୍ରଭୋ ! ଆପଣ ସବୁଠାରୁ ବଡ଼ । ଆପଣ ସାନ ବୋଲି କିଏ କହୁଛି ? ଇନ୍ଦ୍ରାସନ ରକ୍ଷା କରିବା ପାଇଁ ମୁଁ ସର୍ବଥା ଅସମର୍ଥ ।"

ଭଗବାନ୍ ବାମନ କହିଲେ—"ଏହା ଠିକ୍ ନୁହେଁ । ଆପଣ ବଡ଼, ଆପଣହିଁ ଇନ୍ଦ୍ରାସନର ଅଧିକାରୀ । ମୁଁ ସେବକ ରୂପେ ଆପଣଙ୍କୁ ରକ୍ଷା କରିବି । ମୋର ବାହୁବଳରେ ପାଳିତ ତ୍ରୈଲୋକ୍ୟ ରାଜ୍ୟ ପ୍ରତି ଶତ୍ରୁ ଛା ଆଚରଣ ପାଇଁ କେହି ସାହସ କରିପାରିବେ ନାହିଁ ।"

ବ୍ରହ୍ମାଦି ଦେବଗଣ କହିଲେ—"ତଥାପି ଆପଣ କୌଣସି ପଦ ଗ୍ରହଣ କରନ୍ତୁ । ପଦାଧିକାରୀ ନ ହେଲେ କାର୍ଯ୍ୟରେ ମନ ଲାଗିବ ନାହିଁ । ଯଦି ଇନ୍ଦ୍ର ହେବା ପାଇଁ ଆପଣ ଆପତ୍ତି କରୁଛନ୍ତି ତେବେ ସହକାରୀ ଇନ୍ଦ୍ର ଅର୍ଥାତ୍ ଉପେନ୍ଦ୍ର ପଦକୁ ଆପଣ ଦୟାପୂର୍ବକ ସ୍ୱୀକାର କରନ୍ତୁ ।"

ଭଗବାନ୍ କହିଲେ—"ଠିକ୍ ଅଛି । ଆପଣମାନେ ଆଗ୍ରହୀ ଥିବାରୁ ମୁଁ ଉପେନ୍ଦ୍ର ହେଉଛି । ସେହି ଦିନଠାରୁ ଭଗବାନ୍ ଇନ୍ଦ୍ରଙ୍କ ସହାୟକ ଉପେନ୍ଦ୍ର ରୂପେ ଅଭିହିତ ହେଲେ । ଭଗବାନ ଉପେନ୍ଦ୍ର ପଦ ଗ୍ରହଣ କରିବାରୁ ସମସ୍ତେ ଆନନ୍ଦିତ ହେଲେ । ସଂସାରରେ ପ୍ରଭାବଶାଳୀ ବ୍ୟକ୍ତି ଶ୍ରେଷ୍ଠ ହେଉ ବା ବଡ଼ ହେଉ ଯେଉଁ ପଦବୀରେ ରହିଲେ ମଧ୍ୟ ତାଙ୍କର ପ୍ରଭାବ ସମସ୍ତଙ୍କ ଉପରେ ପଡ଼େ । ଅଯୋଗ୍ୟ ବ୍ୟକ୍ତି ସଭାପତି ବା ସମ୍ପାଦକ ଯାହା ହେଲେ ବି ସେ ନିଜେ କିଛି କରିପାରେ ନାହିଁ ବରଂ ଅନ୍ୟର ଇଙ୍ଗିତରେ ପରିଚାଳିତ ହୁଏ । କିନ୍ତୁ ଯୋଗ୍ୟ ବ୍ୟକ୍ତି ଯେ କୌଣସି କ୍ଷୁଦ୍ର ପଦରେ ଥିଲେ ମଧ୍ୟ ବା କିଛି ନଥିଲେ ମଧ୍ୟ ସମସ୍ତଙ୍କ ଉପରେ ଅଧିକାର ସାବ୍ୟସ୍ତ କରିଥାଏ । ତେଣୁ କଥାରେ କହିବାକୁ ଗଲେ ଉପେନ୍ଦ୍ର ଇନ୍ଦ୍ରଙ୍କଠାରୁ ସାନ ଥିଲେ । କିନ୍ତୁ ଦେବରାଜ ଇନ୍ଦ୍ର ଉପେନ୍ଦ୍ରଙ୍କ ବାହୁବଳରେ ସୁରକ୍ଷିତ ରହି ତ୍ରିଲୋକର ଶାସନ ପରିଚାଳନା କରୁଥିଲେ । ବ୍ରହ୍ମା, ଶିବ, ଇନ୍ଦ୍ର ତଥା ସମସ୍ତ ଲୋକପାଳ ସର୍ବଦା ଭଗବାନ୍ ଉପେନ୍ଦ୍ରଙ୍କ ଯଶ ଗାନ କରି ନିଜକୁ ଧନ୍ୟ ମନେ କରୁଥିଲେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପରମ ପୁଣ୍ୟପ୍ରଦ, ସର୍ବପାପ,-ନାଶକର, ଯଶ, କୀର୍ତ୍ତି, ଧନ, ଧାନ୍ୟ ବୃଦ୍ଧିକର, ସମସ୍ତ ମନୋଗତ କାମନାକୁ ପୂରଣ କରୁଥିବା ଭଗବାନ୍ ବାମନଙ୍କ ପବିତ୍ର ଚରିତ ଆପଣଙ୍କୁ ଠିକେ ଠିକେ କହିଲି । ପରମେଶ୍ୱର ପ୍ରଭୁଙ୍କ ପୂର୍ଣ୍ଣ ଚରିତକୁ କିଏ ବର୍ଣ୍ଣନା କରିପାରିବ । ଆକାଶରୁ ଝରିପଡ଼ୁଥିବା ଅଜସ୍ର ଜଳବିନ୍ଦୁ ଓ ପୃଥିବୀର ଧୂଳିକଣାକୁ ଗଣନା କରିବା ଯେପରି ଆଦୌ ସମ୍ଭବ ନୁହେଁ ସେହିପରି ପ୍ରଭୁଙ୍କ ମହିମାର ପୂର୍ଣ୍ଣ ବର୍ଣ୍ଣନା ଏପର୍ଯ୍ୟନ୍ତ କେହି କରିପାରି ନାହାନ୍ତି କି ଭବିଷ୍ୟତରେ ମଧ୍ୟ କେହି କରିବା ପାଇଁ ସମର୍ଥ ହେବେ ନାହିଁ । ଭଗବାନ୍ ବାମନଙ୍କ ଚରିତ ଏକ ଶ୍ରେଷ୍ଠ ଚରିତ । ଯେ ଏହାକୁ ଶ୍ରଦ୍ଧାର ସହିତ ଶୁଣେ ଓ ପଢ଼େ ସେ ପରମଗତି ଲାଭ କରେ । ଦୈବକର୍ମ, ଶ୍ରାଦ୍ଧତର୍ପଣ, ପୁତ୍ରଜନ୍ମ, ଉପନୟନ, ବିବାହ ଆଦି ଶୁଭସଂସ୍କାର ପାଳିତ ହେଉଥିବା ସମୟରେ ବାମନଙ୍କ ପୂତ ଚରିତ କୀର୍ତ୍ତନ କଲେ ସମସ୍ତ କାର୍ଯ୍ୟ ନିର୍ବିଘ୍ନରେ ଓ ସର୍ବଶୁଭରେ ସମାହିତ ହୋଇଥାଏ ।"

ମହାରାଜ ପରୀକ୍ଷିତଙ୍କୁ କଥା ପ୍ରସଙ୍ଗରେ ଶ୍ରୀ ଶୁକଦେବ କହିଲେ—"ମହାରାଜ ! ଭଗବାନ୍ ଯେପରି ବାମନ ଅବତାର ଗ୍ରହଣ କଲେ ସେହିପରି ତାଙ୍କର ଅସଂଖ୍ୟ ଅବତାର ଅଛି । ସେ କେବେ ମନୁଷ୍ୟ ରୂପେ ତ କେବେ ଦେବତା, ପଶୁ, ପକ୍ଷୀ, ଜଡ଼, ଚେତନ ଯେ କୌଣସିଠାରେ ଅବତୀର୍ଣ୍ଣ ହୁଅନ୍ତି । କେତେବେଳେ ନଭେଶ୍ୱରୀ ତ କେବେ ଜଳଶ୍ୱରୀ ହୁଅନ୍ତି । ମତ୍ସ୍ୟ, କୂର୍ମଠାରୁ ଆରମ୍ଭ କରି ସେ ନାନାରୂପ ଧାରଣ କରନ୍ତି ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ସମୁଦ୍ର ମନ୍ଥନ ପ୍ରସଙ୍ଗରେ ମୁଁ କଚ୍ଛପ ଅବତାର କଥା ଶୁଣିଥିଲି । କିନ୍ତୁ ମତ୍ସ୍ୟାବତାର କଥା ତ ଏପର୍ଯ୍ୟନ୍ତ ଶୁଣି ନାହିଁ । ମୋତେ ଅବତାର କଥା ଶୁଣିବାକୁ ଖୁବ୍ ଭଲ ଲାଗୁଛି । ସମସ୍ତଙ୍କର ସୁଖଦାୟକ ସେହି ମତ୍ସ୍ୟାବତାର କଥା ଆପଣ ମୋତେ କହିବେ । ଭଗବାନ୍ କାହିଁକି ତୁଚ୍ଛ ମତ୍ସ୍ୟରୂପରେ ଅବତୀର୍ଣ୍ଣ ହୋଇଥିଲେ ତାହା ମୁଁ ଜାଣିବାକୁ ଚାହୁଁଛି । ମତ୍ସ୍ୟ ଅବତାରରେ ପ୍ରଭୁ କି କି କାର୍ଯ୍ୟ କରିଥିଲେ ? ଜୀବ କର୍ମବନ୍ଧନରେ ବନ୍ଧା ରହିଥିବାରୁ ଚଉରାଶି ଲକ୍ଷ ଯୋନିରେ ବାଧହୋଇ ଜନ୍ମଗ୍ରହଣ କରେ । କିନ୍ତୁ ଭଗବାନ୍ କର୍ମ-ବନ୍ଧନରୁ ମୁକ୍ତ । ତାଙ୍କର କର୍ତ୍ତବ୍ୟ ବା ଅକର୍ତ୍ତବ୍ୟ ହୋଇ କିଛି ନାହିଁ । ତଥାପି ସେ ଅତ୍ୟନ୍ତ ତମୋଗୁଣ ସମ୍ପନ୍ନ ମତ୍ସ୍ୟରୂପ ଧାରଣ କଲେ କାହିଁକି ?"

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ମହାରାଜ ପରୀକ୍ଷିତ ଏହିପରି ପ୍ରଶ୍ନ ପଚାରିବାରୁ ମୋର ପୂଜ୍ୟ ଗୁରୁଦେବ ଶ୍ରୀ ଶୁକଦେବ ଯେପରି ପ୍ରଭୁଙ୍କ ମତ୍ସ୍ୟାବତାର

କଥା ବର୍ଣ୍ଣନା କରିଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି । ଆପଣମାନେ ସେହି ପୁଣ୍ୟଦାୟକ ପବିତ୍ର କଥାଟି ମନଦେଇ ଶୁଣନ୍ତୁ ।”

## ଛପ୍ପୟ

ବିବିଧ ବେଶ ବପୁଧାରି ବିଷ୍ଣୁ ବିଶ୍ୱେଶ୍ୱର ବିହରେଁ ।
ରହେଁ ସଦା ରବି କନ୍ତୁ କହେଂ ନର ସୂରଜ ନକରେଁ ।।
କଛ, ମତ୍ସ୍ୟ, ବାରହ, କବହୁଁ ନରହରି ତନୁ ଧାରେ ।।
ସାଧୁନ ରକ୍ଷା କରେ ଦୈତ୍ୟ ଦାନବ ଖଳ ମାରେ ।।
ଲୋକ ବିନନ୍ଦିତ ମତ୍ସ୍ୟତନୁ ଲୀଳାତେ ଶ୍ରୀହରି ଧର୍‌ୟୋ ।।
ପ୍ରଳୟ ସଲିଳ ଘୂମତ ଫିରେ, ଗୋ ଦ୍ୱିଜ, ସୁର କାରଜ କର୍‌ୟୋ ।।



# ମତ୍ସ୍ୟାବତାର ଉପକ୍ରମ

ଗୋ ବିପ୍ରସୁର ସାଧୂନାଂ ଛନ୍ଦସାମପି ଚେଶ୍ୱରଃ ।
ରକ୍ଷାମିଚ୍ଛଂସ୍ତନୂର୍ଦ୍ଧତ୍ତେ ଧର୍ମସ୍ୟାର୍ଥସ୍ୟ ଚୈବ ହି ॥

(ଭା-୮-୨୪-୫)

## ଛପ୍ପୟ

ବୋଲେ ଶୁକ ତେଁ ନୃପତି-ମତ୍ସ୍ୟ ପ୍ରଭୁ ଚରିତ ସୁନାଓଁ ।
ଜ୍ୟୋଁ ହରି ଐସେ ବିଶ୍ୱବିନିନ୍ଦିତ ବେଶ ବନାଓଁ ॥
ଶୁକ ହଁସି ବୋଲେ ଭୂପ ! ବିଷ୍ଣୁ ଘଟ ଘଟ କେ ବାସୀ ।
ବନ୍ଦିତ ନିନ୍ଦିତ କଛୁ ନ ବିଶ୍ୱପତି ଅଜ ଅବିନାଶୀ ॥
ଧେନୁ, ବିପ୍ର, ସୁର, ସନ୍ତ, ଅରୁ, ବେଦନ କୀ ରକ୍ଷା ନିମିତ୍ତ ।
ଧର୍ମ ଅର୍ଥ ରକ୍ଷିତ ରହେ, ଧାରେଁ ତନୁ ଜଗହିତ ଅଜିତ ॥

"ଦେବମନ୍ଦିରକୁ ବା କୌଣସି ପାତକର ଗୃହକୁ ଆଲୋକିତ କରୁଥିଲେ ମଧ୍ୟ ସୂର୍ଯ୍ୟ ସର୍ବଦା ବିଶୁଦ୍ଧ ରହନ୍ତି । ପବନ ଫୁଲରେ ବା ପଚା ମାଂସ ଖଣ୍ଡରେ ବିଚରଣ କଲେ ମଧ୍ୟ ଶୁଦ୍ଧ ରହେ । ଅଗ୍ନି କାଠରେ ବା ମଳରେ ବ୍ୟାପ୍ତ ହେଲେ ବି ଶୁଦ୍ଧ ରହେ । ବିକାର ନ ଥିବାରୁ ଏମାନେ ଶୁଦ୍ଧ ହୋଇ ରହନ୍ତି । ଠିକ୍ ସେହିପରି ନିର୍ଗୁଣ ନିରାକାର ପ୍ରଭୁ, ଶ୍ରେଷ୍ଠ ବଡ଼, ଉଚ୍ଚ ନୀଚ, ଯେ କୌଣସି ଯୋନିରେ ଜନ୍ମଗ୍ରହଣ କଲେ ମଧ୍ୟ ତାଙ୍କୁ ସଂସର୍ଗ ଦୋଷ ଲାଗେନାହିଁ କି ସେ ଶ୍ରେଷ୍ଠ ବା ବଡ଼ ବୋଲି ବିବେଚିତ ହୁଅନ୍ତି ନାହିଁ । ନ୍ୟୂନାଧିକ ଗୁଣଯୁକ୍ତ ବ୍ୟକ୍ତିଠାରେ ସଂସର୍ଗଜନିତ ଫଳାଫଳ ପ୍ରତିଫଳିତ ହୁଏ । ଭଗବାନ୍ ତ ନିର୍ଗୁଣ । ଗୁଣଯୁକ୍ତ ଯୋନି ସହିତ ତାଙ୍କର ସଂସର୍ଗ ବା ସମ୍ପର୍କ ନଥାଏ । ତେଣୁ ସେ ଯେକୌଣସି ଯୋନିରେ ଅବତୀର୍ଣ୍ଣ ହୁଅନ୍ତି । ନାନା ଯୋନିରେ ଅନ୍ତର୍ଯ୍ୟାମୀରୂପେ ସର୍ବଦା ସେ ବିଚରଣ କରନ୍ତି । ତାଙ୍କ ବ୍ୟତୀତ କାହାରି ଅସ୍ତିତ୍ୱ, ମହତ୍ତ୍ୱ, ଅବସ୍ଥା, ବ୍ୟବସ୍ଥା ବା ପ୍ରତିଷ୍ଠା ସମ୍ଭବ ନୁହେଁ ।"

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ବାମନାବତାର କଥା ବର୍ଣ୍ଣନା ପରେ ଯେତେବେଳେ ମହାତ୍ମା ପରୀକ୍ଷିତ ମତ୍ସ୍ୟାବତାର ବିଷୟରେ ପ୍ରଶ୍ନ କଲେ ଏବଂ ପ୍ରଭୁ କାହିଁକି ଲୋକନିନ୍ଦିତ ମତ୍ସ୍ୟରୂପ ଧାରଣ କଲେ ବୋଲି ପଚାରିଲେ ସେତେବେଳେ ଉତ୍ତରଦେବାକୁ ଯାଇ ଭଗବାନ୍ ଶୁକଦେବ ରାଜାଙ୍କୁ ଅବତାର ରହସ୍ୟ ବୁଝାଇଥିଲେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ କାହିଁକି ଅବତାର ଗ୍ରହଣ କରନ୍ତି ତାହା ସେ ଜାଣନ୍ତି । କିନ୍ତୁ ସାଧାରଣତଃ ଗୋରୁ, ବ୍ରାହ୍ମଣ, ଦେବତା, ସାଧୁ, ବେଦ, ଧର୍ମ ଓ ଅର୍ଥର ସୁରକ୍ଷା ପାଇଁ ସେ ଶରୀର ଧାରଣ କରନ୍ତି । ଭଗବାନ୍ ବ୍ରହ୍ମା ରୂପରେ ଜଗତ୍ ସୃଷ୍ଟି କରନ୍ତି । ସେଥିପାଇଁ ମରୀଚ, ଅତ୍ରି, ଅଙ୍ଗିରା ଆଦି ପ୍ରଜାପତି ଭଗବାନ୍ ବ୍ରହ୍ମାଙ୍କର ଅବତାର ବୋଲି ଗଣ୍ୟ ହୁଅନ୍ତି । ବ୍ରହ୍ମାଙ୍କର ଏହି ମାନସପୁତ୍ରମାନେ ସମ୍ପୂର୍ଣ୍ଣ ସୃଷ୍ଟିକୁ ଭଗବାନ୍ ବିଷ୍ଣୁ ରୂପରେହିଁ ପାଳନ କରନ୍ତି । ତେଣୁ ଅଂଶାବତାର, ଯୁଗାବତାର, ମନ୍ୱନ୍ତରାବତାର, ଜ୍ଞାନାବତାର, ଆବେଶାବତାର, କଳାବତାର ତଥା ପୂର୍ଣ୍ଣାବତାର ଆଦି ଅନେକ ଅବତାର ରୂପରେ ପ୍ରଭୁ ଏ ଜଗତରେ କ୍ରୀଡ଼ା କରନ୍ତି ଓ ବିଶ୍ୱକୁ ପାଳନ କରନ୍ତି । ଗୋରୁ ବିନା ବିଶ୍ୱର ପାଳନ ହୋଇପାରେ ନାହିଁ । ଗୌର ଦୁଇଟି ରୂପ । ପୃଥିବୀ ରୂପରେ ସେ ସମସ୍ତଙ୍କୁ ନିଜ ପିଠିରେ ବହନ କରେ ଏବଂ କାମଧେନୁ ରୂପରେ ଇହ ଓ ପରକାଳରେ ପ୍ରାଣୀମାନଙ୍କର କଲ୍ୟାଣ ସାଧନ କରେ । ଗୌର ରୋମ ପବିତ୍ର । ତାର କ୍ଷୀର ବା ଗୋରସ ଅମୃତ । ତା'ର ମୂତ୍ର, ପୁରୀଷ ସମସ୍ତ ପାପ ବିନାଶ କରେ । ତା'ର ଦୁଗ୍ଧ ପ୍ରାଣୀମାନଙ୍କର ପରିପୋଷକ । ପରଲୋକରେ ଯେଉଁସ୍ଥାନକୁ ଆତ୍ମୀୟସ୍ୱଜନ, ଧନରତ୍ନ କିଛି ଯାଇପାରିବ ନାହିଁ, ଯେଉଁ ବୈତରଣୀ ନଦୀକୁ ପ୍ରାଣୀ ପାର ହୋଇପାରେ ନାହିଁ ସେଠାରେ ସେହି ଗାଈର ଲାଙ୍ଗୁଡ଼ ଧରି ସେ ପାର ହୋଇଯାଏ । ସେହି ଗାଈ ଉପରେ କ୍ରୂରକର୍ମୀ ପୁରୁଷ ଯେତେବେଳେ ଅତ୍ୟଧିକ ଅତ୍ୟାଚାର କରେ ସେତେବେଳେ ଭଗବାନ୍ ଅବତୀର୍ଣ୍ଣ ହୋଇ ଦୁଃଖ ଦୂରକରନ୍ତି ।

ଭଗବାନ ଦ୍ୱିତୀୟ ରୂପ ହେଉଛନ୍ତି ବ୍ରାହ୍ମଣ । ଭଗବାନଙ୍କ ମୁଖନିଃସୃତ ବାଣୀ ବେଦକୁ ବ୍ରାହ୍ମଣଧାରଣ କରିଥାଏ । ସଂସାରରେ ବିଷୟାସକ୍ତମାନଙ୍କୁ ସେ ଜ୍ଞାନର ଆଲୋକ ଦେଖାଏ । ଅଜ୍ଞାନମାନଙ୍କୁ ଜ୍ଞାନ ଦାନ କରି ସତ୍‌ମାର୍ଗରେ ପରିଚାଳିତ କରାଏ । ଯାଗ, ଯଜ୍ଞରେ ଭଗବାନଙ୍କୁ ପୂଜାକରି ବ୍ରାହ୍ମଣ ଜୀବଜଗତର କଲ୍ୟାଣ ସାଧନ କରେ । ଯଜ୍ଞରେ ପୂଜିତ ହୋଇ ଦେବତା ଜଳ ବୃଷ୍ଟି କରନ୍ତି । ବୃଷ୍ଟିରୁ ଅନ୍ନ ଜାତ ହୁଏ । ଜୀବଜଗତ୍ ସେହି ଅନ୍ନ ଖାଇ ପ୍ରାଣ ଧାରଣ କରେ । ତେଣୁ ସୃଷ୍ଟି ରକ୍ଷା ପାଇଁ ବ୍ରାହ୍ମଣମାନଙ୍କୁ ରକ୍ଷା କରିବା ଆବଶ୍ୟକ ।

ଦେବଗଣ ଐଶ୍ୱର୍ଯ୍ୟଗୁଣର ଅଧିକାରୀ । ଯଜ୍ଞଭାଗ ସ୍ୱୀକାରପୂର୍ବକ ସେମାନେ ପ୍ରାଣୀମାନଙ୍କୁ ସୁଖ ସମ୍ପଦ ଦାନ କରନ୍ତି । ସେମାନେ ଫୁଲ, ଫଳ ଗ୍ରହଣ କରି ଦୈବୀ-ସମ୍ପଦର ପ୍ରଚାର କରନ୍ତି । ସମଗ୍ର ବିଶ୍ୱରେ ଅଧିଷ୍ଠାତ୍ରୀ ଦେବତା ରୂପେ ବାସ କରନ୍ତି । ଦେବତାମାନଙ୍କଦ୍ୱାରା ଧର୍ମ ମାର୍ଗରେ ଜଗତ୍ ସୁରକ୍ଷିତ ହୁଏ । ଦେବତା ନ ଥିଲେ ଧର୍ମ ରହିବ ନାହିଁ । ଧର୍ମ ବିନା ଜଗତର ସ୍ଥିତି ସମ୍ଭବ ନୁହେଁ ।

ସ୍ୱର୍ଗରେ ଇନ୍ଦ୍ରାଦି ଦେବଗଣ ଓ ପୃଥିବୀରେ ସାଧୁ, ବ୍ରାହ୍ମଣ, ଦେବତା ରୂପେ ରହନ୍ତି । ସେଥିପାଇଁ ବ୍ରାହ୍ମଣମାନଙ୍କୁ ଭୂ-ସୁର କୁହାଯାଏ । ସାଧୁପୁରୁଷ ଧର୍ମକୁ ଧାରଣ୍ଣ କରନ୍ତି ଓ ବୈଦିକ ଧର୍ମମାର୍ଗର ଉପଦେଶ ଦିଅନ୍ତି । ଅର୍ଥ ଓ କାମ ଉପଭୋଗ କରିବାର ବ୍ୟବସ୍ଥା ନିର୍ଦ୍ଦେଶ କରନ୍ତି । ସେହି କାରଣ ଭଗବାନ୍ ନିର୍ଗୁଣରୁ ସଗୁଣ ହୁଅନ୍ତି ଏବଂ ନିରାକାରରୁ ସାକାର ରୂପ ଗ୍ରହଣ କରନ୍ତି । ନାନା ଯୋନିରେ ଅବତୀର୍ଣ୍ଣ ହୋଇ ଭଗବାନ୍ ଲୀଳା କରିବା ସଙ୍ଗେ ସଙ୍ଗେ ପ୍ରାଣୀମାନଙ୍କୁ ନିଜର ଦେବଦୁର୍ଲଭ ଦର୍ଶନ ଦେଇ କୃତାର୍ଥ କରନ୍ତି । ଭକ୍ତମାନଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ କରିବା ଭଗବାନଙ୍କର ମୁଖ୍ୟ କାର୍ଯ୍ୟ । ସେ ଅବତାର ଗ୍ରହଣ କରି ମୁଖ୍ୟତଃ ଦୁଇଟି କାର୍ଯ୍ୟ କରନ୍ତି । ଧର୍ମବଳ କ୍ଷୀଣ ହୋଇ ଆସିଲେ ଧର୍ମର ପୁନଃ ପ୍ରତିଷ୍ଠା ପାଇଁ ସେ ଦୁଷ୍ଟମାନଙ୍କୁ ଦମନ କରନ୍ତି ଏବଂ ସାଧୁମାନଙ୍କୁ ରକ୍ଷା କରନ୍ତି । ଏହାହିଁ ଅବତାର ଗ୍ରହଣର ମୁଖ୍ୟ କାରଣ ।"

ମହର୍ଷି ଶୌନକ ପଚାରିଲେ—"ହେ ସୂତ ! ଦୁଷ୍ଟ ଦମନ ଓ ସଜ୍ଜନ ପାଳନ ପାଇଁ ଭଗବାନ୍ ଅବତୀର୍ଣ୍ଣ ହୁଅନ୍ତି, ଏହା ଠିକ୍ । କିନ୍ତୁ ମନରେ ଏଇ ଇଚ୍ଛା ଆସିବା ମାତ୍ରେ ପ୍ରଭୁ ଯାହା କରିବା କଥା ତାହା ସହଜରେ କରିପାରନ୍ତେ । ସେଥିପାଇଁ ଅବତାର ଗ୍ରହଣ କରିବାର ଆବଶ୍ୟକତା ପଡ଼ୁଛି କାହିଁକି ? କେବଳ ଏଇ କାମ ପାଇଁ ନିର୍ଗୁଣ, ନିରାକାର ପ୍ରଭୁ ସଗୁଣ ଓ ସାକାର ହେବା କ'ଣ ଉଚିତ ମନେ ହେଉଛି ?"

ମହର୍ଷି ସୂତ କହିଲେ—"ଭଗବାନ୍ ! ଶ୍ରୀହରି ନିର୍ଗୁଣ ଓ ସଗୁଣ ଏବଂ ନିରାକାର ଓ ସାକାର ଉଭୟାତ୍ମକ । ସେ ନିର୍ଗୁଣରୁ ସଗୁଣ ଅଥବା ନିରାକାରରୁ ସାକାର ହୁଅନ୍ତି ବୋଲି କହିବା ଭ୍ରମାତ୍ମକ । ସମସ୍ତ ଦିବ୍ୟଗୁଣର ସେ ହେଉଛନ୍ତି ଏକମାତ୍ର ନିତ୍ୟ ଆଶ୍ରୟ, ନିତ୍ୟ ସାକାର ଓ ନିତ୍ୟ ମୂର୍ତ୍ତିମାନ୍ । ସାଧୁ ପାଳନ ଓ ଅସାଧୁ ବିନାଶନ କାର୍ଯ୍ୟ ଇଚ୍ଛା କରିବା ମାତ୍ରେ ସେ ସମାଧାନ କରିପାରିବେ କିନ୍ତୁ କରୁଣା-ବଶତଃ ସେ ଅବତୀର୍ଣ୍ଣ ହୁଅନ୍ତି । ଭଗବାନ୍ ପରମ କାରୁଣିକ । ପ୍ରାଣୀମାନଙ୍କ ଦୁଃଖକୁ

ସେ ଆଦୌ ସହିପାରନ୍ତି ନାହିଁ । ତେଣୁ ଜୀବମାନଙ୍କ ଦୁଃଖ ଦୂର କରିବା ପାଇଁ ସେ ଅବତୀର୍ଣ୍ଣ ହୁଅନ୍ତି । ତାଙ୍କର ବିବିଧ ଅବତାର ଦୟାର ନିଦର୍ଶନ ମାତ୍ର । ଏ ବିଷୟରେ ଏକ କାହାଣୀ ମୁଁ ଆପଣମାନଙ୍କୁ କହୁଛି ।

ପ୍ରାଚୀନ କାଳରେ ଜଣେ ରାଜା ଥିଲେ । ସେ ଥିଲେ ଖୁବ୍ ଯୁକ୍ତିପ୍ରବଣ । ଯୁକ୍ତିତର୍କ ବିନା ସେ ସନ୍ତୁଷ୍ଟ ହେଉ ନ ଥିଲେ । ତାଙ୍କର ମନ୍ତ୍ରୀ ଥିଲେ ଜଣେ ବୁଦ୍ଧିମାନ ବ୍ରାହ୍ମଣ । ରାଜାଙ୍କ ସହିତ ସେ ନାନାପ୍ରକାର ଯୁକ୍ତି କରୁଥିଲେ । ଦିନେ ରାଜା ପଚାରିଲେ—ମନ୍ତ୍ରୀ ମହାଶୟ ! ଭଗବାନ୍ ନିଜେ କାହିଁକି ଅବତୀର୍ଣ୍ଣ ହୁଅନ୍ତି ? ଧର୍ମ ରକ୍ଷା ଓ ଦୁଷ୍ଟଦମନ ପାଇଁ ଯଦି ସେ ଅବତାର ଗ୍ରହଣ କରୁଛନ୍ତି ତେବେ କୌଣସି ଏକ ପାରିଷଦକୁ ନିଜର ଶକ୍ତି ଦେଇ ପଠାଇପାରନ୍ତେ । ଏସବୁ କାମ ତ ତାଙ୍କର ସେବକମାନେ କରିପାରିବେ । ଦେଖ, କୌଣସି ରାଜାଙ୍କ ସହିତ ଯଦି ଯୁଦ୍ଧ ବା ସନ୍ଧି କରିବାର ଆବଶ୍ୟକତା ପଡ଼େ ତେବେ ଆମେ ନିଜେ କ'ଣ ଯାଉଁ ? ଆମେ ଆମର ପ୍ରତିନିଧି ରୂପେ ଦୂତକୁ ପଠାଉଁ । କେହି ଯଦି ଆମ ଉପରେ ଆକ୍ରମଣ କରିବ ତେବେ ଆମେ ନିଜେ ତ ଯୁଦ୍ଧ କରିବାକୁ ଯାଉନୁ । ଯୁଦ୍ଧ କରିବା ପାଇଁ ସେନାପତି ଯାଉଛି । କିନ୍ତୁ ଆମର ନାଁ ହେଉଛି । ସେହିପରି ଭଗବାନ୍ ମଧ୍ୟ ଅନ୍ୟଦ୍ୱାରା କାର୍ଯ୍ୟ କରାଇବା ଉଚିତ । ନିଜେ କାହିଁକି ବିଭିନ୍ନ ବେଶ ଧରି ପୃଥିବୀରେ ଅବତୀର୍ଣ୍ଣ ହେଉଛନ୍ତି ।''

ରାଜାଙ୍କ ପ୍ରଶ୍ନ ଶୁଣି ମନ୍ତ୍ରୀ କହିଲେ—'ମହାରାଜ ! ମୁଁ କିଛିଦିନ ପରେ ଏହାର ଉତ୍ତର ଦେବି । ରାଜାଙ୍କର ଗୋଟିଏ ବୋଲି ପୁଅ ଥିଲା । ରାଜା ପ୍ରାଣଠାରୁ ବଳି ତାକୁ ଭଲ ପାଉଥିଲେ । ରାଜସଭାରେ ବସିଥିବାବେଳେ ମଝିରେ ମଝିରେ ଉଠିଯାଇ ପୁଅକୁ ଦେଖିଆସୁଥିଲେ । ସେ ପିଲାଟି ପ୍ରତି ମମତାରେ ଅନ୍ଧ ହୋଇଯାଇ-ଥିଲେ । ମନ୍ତ୍ରୀ ମହଲରେ ରାଜକୁମାର ପରି ଏକ ଅବିକଳ ମୂର୍ତ୍ତି ତିଆରି କରାଇଲେ । ତାକୁ ଏପରି ରଙ୍ଗ ଦେଲେ ଯେ ମୂର୍ତ୍ତିଟି ଦେଖିବାକୁ ଠିକ୍ ଜୀବନ୍ତ ପରି ମନେ ହେଉଥିଲା । ରାଜକୁମାରଙ୍କର ଯେଉଁ ବସ୍ତ୍ର ଓ ଭୂଷଣ ଥିଲା ସେସବୁ ମୂର୍ତ୍ତିକୁ ପିନ୍ଧାଇ ଦିଆଗଲା । ଅନ୍ତଃପୁରର ଏକ ଦାସୀକୁ ମନ୍ତ୍ରୀ ହାତ କରି ରଖିଥିଲେ ।

ଦିନେ ରାଜା ଉଦ୍ୟାନରେ ଥିବା ସରୋବର କୂଳରେ ମନ୍ତ୍ରୀଙ୍କ ସହିତ ବସିଥାନ୍ତି । ପୋଖରୀରେ ବହୁତ ପାଣି ଥାଏ । ପଦ୍ମଫୁଲ ଫୁଟିଥାଏ । ରଙ୍ଗ ବେରଙ୍ଗର ମାଛ ଖେଳୁଥାନ୍ତି । ଏହି ସମୟରେ ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ଏକ ଦାସୀ ଆସି ପହଞ୍ଚିଲା । ମନ୍ତ୍ରୀ ସେ ଦାସୀକୁ ଆଦେଶ ଦେଲେ—ଯା, ଅନ୍ତଃପୁରରୁ ରାଜକୁମାରଙ୍କୁ ନେଇଆସିବୁ ।

ଦାସୀକୁ ଆଗରୁ ସବୁକଥା ବୁଝାଇ ଦିଆଯାଇଥିଲା । ସେ ପ୍ରକୃତ ରାଜକୁମାରଙ୍କୁ ନ ଆଣି କୃତ୍ରିମ ରାଜକୁମାରକୁ ନେଇଆସିଲା । ମନ୍ତ୍ରୀ ପ୍ରଥମେ ଆଦର ସତ୍କାରରେ ରାଜକୁମାରଙ୍କୁ କୋଳକୁ ନେଇ କିଛି ସମୟ ଖେଳାଇଲେ ଓ ବୁଝାଇଲେ । ରାଜା ଖୁବ୍ ଆନନ୍ଦିତ ହେଉଥିଲେ । ଅନ୍ୟ କେହି ଛୁଆକୁ ଗେହ୍ଲା କରୁଥିବାର ଦେଖିଲେ ବାପା, ମା' ଖୁବ୍ ଖୁସି ହୁଅନ୍ତି । ଏଣୁ ଆନନ୍ଦ ବିଭୋର ହୋଇ ପଡ଼ୁଥିବା-ବେଳେ ମନ୍ତ୍ରୀ ସେ ପିଲାକୁ ଉଠାଇ ପୋଖରୀକୁ ଫିଙ୍ଗିଦେଲେ । ରାଜା ଏହାଦେଖି ବ୍ୟସ୍ତ ହୋଇପଡ଼ିଲେ ଏବଂ ହଠାତ୍ ନିଜର ପରିଧେୟ ସହିତ ପୋଖରୀକୁ ଡ଼େଇଁ-ପଡ଼ିଲେ । ପହଁରିଯାଇ ରାଜା ପିଲାକୁ ଉଠାଇ ଆଣିଲେ ।

ମନ୍ତ୍ରୀ ପୋଖରୀ କୂଳରେ ଠିଆହୋଇ ହସି ହସି କହିଲେ—"ମହାରାଜ ! ମହାରାଜ ! ଏ ଆପଣ କଣ କରୁଛନ୍ତି ? ଏତେ ସେବକ ପାଖେ ପାଖେ ଥାଉଁ ଥାଉଁ ଆପଣ ନିଜେ ଏପରି କରିବା ଠିକ୍ ହେଲାନାହିଁ । ଆପଣ କୌଣସି ସେବକକୁ ଆଦେଶ ଦେଇଥିଲେ ହୋଇଥାନ୍ତା । ଆପଣଙ୍କ ସେବକ ମୁଁ ନିଜେ ଏଠାରେ ଅଛି । ଆପଣ ମୋତେ ବି ଆଦେଶ ଦେଇପାରିଥାନ୍ତେ ?"

ରାଜା ଦେଖିଲେ ପ୍ରକୃତରେ ଏହି ଯଥାର୍ଥ ରାଜକୁମାର ନୁହେଁ । ତେଣୁ ତାଙ୍କ ମନରେ ସନ୍ଦେହ ଆସିଲା । ସେ କ୍ରୁଦ୍ଧହୋଇ ମନ୍ତ୍ରୀକୁ କହିଲେ—"ତୁମେ ମୋ' ସହିତ ଏପରି ଧୃଷ୍ଟତା କଲ କାହିଁକି ?"

ମନ୍ତ୍ରୀ ଉତ୍ତର ଦେଲେ—ମହାରାଜ ! ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ମୁଁ ଏସବୁ କରିଛି । ଆପଣ ପଚାରିଥିଲେ ଭଗବାନ୍ ନିଜେ କାହିଁକି ଅବତାର ଗ୍ରହଣ କରନ୍ତି ? ସେ କାହିଁକି ନିଜର ସେବକମାନଙ୍କୁ ପଠାଉନାହାନ୍ତି ? ମହାରାଜ ! ଯାହାପ୍ରତି ଅଧିକ ସ୍ନେହଥାଏ ତା'ର କାର୍ଯ୍ୟକୁ ନିଜେ କରିବାରେ ଆନନ୍ଦ ମିଳେ । ଅନ୍ୟଦ୍ୱାରା କରାଯାଉଥିବା ସେବାରେ ପ୍ରେମିକକୁ ସନ୍ତୋଷ ମିଳେନାହିଁ । ନିଜେ ଖୁଆଇବା, ପାଦସେବା କରିବାରେ ଯେଉଁ ସୁଖମିଳେ ତାହା ସେବକଦ୍ୱାରା କରାଇଲେ କେଉଁଠୁ ମିଳିବ ? ଭଗବାନଙ୍କର ପ୍ରିୟ ଭକ୍ତମାନେ ଅଛନ୍ତି । ଭକ୍ତମାନଙ୍କ ଦୁଃଖ ଦୂର କରିବାପାଇଁ ସେ ନିଜେ ଅବତୀର୍ଣ୍ଣ ହୁଅନ୍ତି । ଆପଣ ନିଜେ ବିଚାର କରନ୍ତୁ । ଆପଣ ଆଦେଶ ଦେବାମାତ୍ରେ ହଜାରେ ସେବକ ଆସି ପହଞ୍ଚିଥାଆନ୍ତେ ଏବଂ ପୋଖରୀକୁ ଡେଇଁ ପଡ଼ିଥାନ୍ତେ । କିନ୍ତୁ ପୁତ୍ରସ୍ନେହ ହେତୁ ଆପଣ ବସିପାରିଲେ ନାହିଁ । ନିଜେ ପୋଖରୀକୁ ଡେଇଁ ପଡ଼ିଲେ । ସେହିପରି ଭକ୍ତମାନଙ୍କ ପ୍ରତି ଦୟାପରବଶ ହୋଇ ଭଗବାନ୍ ନିଜେ ଅବତାର ଗ୍ରହଣ କରନ୍ତି । ଭକ୍ତଙ୍କ ଡାକ ଶୁଣିଲେ ସେ ବୈକୁଣ୍ଠରେ ସ୍ଥିର ରହିପାରନ୍ତି ନାହିଁ । ସେ ଶୀଘ୍ର ପୃଥିବୀରେ ଅବତୀର୍ଣ୍ଣ ହୋଇ ଭକ୍ତର ଦୁଃଖ ଦୂରକରନ୍ତି ଏବଂ ଧର୍ମସ୍ଥାପନ କରନ୍ତି ।"

ଶୌନକଙ୍କ ପଚାରିଲେ—"ଭଗବନ୍ ! ଦୟାପରବଶ ହୋଇ ଭଗବାନ୍ ଅବତାର ଗ୍ରହଣ କରନ୍ତି, ଏହା ତାଙ୍କର ଭକ୍ତବାତ୍ସଲ୍ୟର ସୂଚନା । କିନ୍ତୁ ସେ ମତ୍ସ୍ୟରୂପ ଧାରଣ କଲେ କାହିଁକି ?"

ମହର୍ଷି ସୂତ ଉତ୍ତର ଦେବାକୁ ଯାଇ କହିଲେ—"ମହାରାଜ ! ମୁଁ ଏଥିପୂର୍ବରୁ କହିଛି, ଭଗବାନ୍ ନିଜ ଇଚ୍ଛା ଅନୁସାରେ ଯେ କୌଣସି ଯୋନିରେ ଜନ୍ମଗ୍ରହଣ କରନ୍ତି । ତାଙ୍କଠାରେ ଶ୍ରେଷ୍ଠ, ବଡ଼, ଉଚ୍ଚ ନୀଚ ଭେଦଭାବ ନାହିଁ । ଜୀବ କର୍ମବନ୍ଧନରେ ପଡ଼ି ନାନା ଯୋନିରେ ପରିଭ୍ରମଣ କରିଥାଏ । ଏହି ଜୀବମାନଙ୍କ ଅନେକ ଅନୁଗ୍ରହ ସୃଷ୍ଟ ଜୀବ ଅଛନ୍ତି । ଭଗବଦ୍‌ଦର୍ଶନ ପାଇବାମାତ୍ରେ ସେମାନଙ୍କର ବନ୍ଧନ ତୁଟିଯାଏ । ସେମାନଙ୍କୁ ଚଉରାଶି ଯୋନିଚକ୍ରରେ ବୁଲିବାକୁ ପଡ଼େନାହିଁ । ଜୀବମାନେ ଆରୋହଣ ଓ ଅବରୋହଣ କ୍ରମରେ ପରିଭ୍ରମଣ କରୁଥିବାର ବୁଝାଯାଏ । ମନେହୁଏ, ଏହି କ୍ରମରେ ଅନେକ ଅନୁଗ୍ରହ ସୃଷ୍ଟ ଜୀବ । ଜଳଚର ଦେହରେ ସ୍ଥାନ ପାଇଥିଲେ । ସେମାନେ ଭଗବାନଙ୍କର ମାନବରୂପ ଦର୍ଶନ ପାଇବେ କିପରି ? ସେଥିପାଇଁ ଭଗବାନ୍ ନିଜେ ଜଳଚର ରୂପରେ ଜନ୍ମଗ୍ରହଣ କରିଥିଲେ । ମତ୍ସ୍ୟରୂପରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ପ୍ରଭୁ ଜଳଚର ଜଗତର ସୁଖ ଦୁଃଖରେ ନିର୍ଲିପ୍ତ ଥିଲେ ।

ରାଜାଙ୍କର ଅନେକ ମିତ୍ର ଥାଆନ୍ତି । କୌଣସି ରାଜ ଅପରାଧ ହେତୁ ଯଦି ସେମାନେ କାରାଗାରରେ ବନ୍ଦୀହୋଇ ରହନ୍ତି, ତେବେ ରାଜା ନିଜେ ବନ୍ଦୀଶାଳାକୁ ଯାଇ ସେମାନଙ୍କୁ ମୁକ୍ତ କରିଦିଅନ୍ତି । କାରାଗୃହକୁ ଗଲେ ମଧ୍ୟ ରାଜାଙ୍କୁ କାରାବାସ ଦୁଃଖ ଭୋଗ କରିବାକୁ ପଡ଼େନାହିଁ । ତଦ୍‌ବ୍ୟତୀତ କାରାବାସରୁ ସମସ୍ତ ବନ୍ଦୀଙ୍କୁ ମଧ୍ୟ ସେ ମୁକ୍ତ କରନ୍ତି ନାହିଁ । ଯାହାପ୍ରତି ତାଙ୍କର ଦୟା ଜାତହୁଏ, ଯାହାକୁ ସେ ଆଦର କରନ୍ତି, କେବଳ ସେହିମାନଙ୍କୁ ରାଜା ମୁକ୍ତକରି ସାଙ୍ଗରେ ନେଇଆସନ୍ତି । ସେହିପରି ଭଗବାନ୍ ନିଜର ଆଶ୍ରିତ ଜଳଚର ଭକ୍ତଙ୍କୁ ଉଦ୍ଧାର କରିବାପାଇଁ ମତ୍ସ୍ୟ-ଅବତାର ଗ୍ରହଣ କରିଥିଲେ । ସପ୍ତର୍ଷିମାନଙ୍କୁ ରକ୍ଷାକରିବା, ପୃଥିବୀର ବୀଜକୁ ବଞ୍ଚାଇ ରଖିବା ଆଦି ବିଭିନ୍ନ କାର୍ଯ୍ୟ ତାଙ୍କର କରିବାର ଥିଲା । ବିଶେଷକରି ଅସୁରମାନଙ୍କ-ଦ୍ୱାରା ଅପହୃତ ହୋଇଥିବା ବେଦକୁ ଉଦ୍ଧାର କରିବାପାଇଁ ଭଗବାନ୍ ମତ୍ସ୍ୟରୂପରେ ଅବତୀର୍ଣ୍ଣ ହୋଇଥିଲେ । ଦ୍ରାବିଡ଼ ଦେଶର ରାଜା ସତ୍ୟବ୍ରତଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ, ଭାବି କଳ୍ପର ରଚନା, କ୍ଷୀଣ ହୋଇଥିବା ଧର୍ମର ଅଭିବୃଦ୍ଧି ପ୍ରଭୃତି ବିଭିନ୍ନ କର୍ତ୍ତବ୍ୟ ସମ୍ପାଦନ କରିବା ଥିଲା ମତ୍ସ୍ୟାବତାରର ଲକ୍ଷ୍ୟ ।

ଭଗବଦ୍ ଧର୍ମହିଁ ତାଙ୍କର ପ୍ରକୃତ ରୂପ । ଯେତେବେଳେ ଧର୍ମ କ୍ଷୀଣ ହୋଇଯାଏ ତା'ର ପୁନଃ ଅଭିବୃଦ୍ଧି ପାଇଁ, ବେଦର ପୁନରୁଦ୍ଧାର ଓ ବୈଦିକ

କର୍ମ ସମ୍ପାଦନ ପାଇଁ ଭଗବାନ୍ ସ୍ୱୟଂ ଅବତାର ଧାରଣ କରନ୍ତି । ଧର୍ମ ତାଙ୍କର ଦେହ ଏବଂ ସେ ଧର୍ମର ମୂର୍ତ୍ତି ପ୍ରତୀକ । ଥରେ ସେ ଧର୍ମଙ୍କ ପୁତ୍ର ରୂପେ ନରନାରାୟଣ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ସେ ଧର୍ମର କ୍ଷୟ ଅବସ୍ଥାକୁ ସହିପାରନ୍ତି ନାହିଁ । ଯେତେବେଳେ ଯେଉଁପ୍ରକାର ଧର୍ମ ସ୍ଥାପନ କରିବାପାଇଁ ଇଚ୍ଛାକରନ୍ତି ସେତେବେଳେ ତଦନୁରୂପ ଅବତାର ଗ୍ରହଣ କରନ୍ତି । ସେଥିପାଇଁ ପ୍ରତ୍ୟେକ ଯୁଗ ଶେଷରେ ଯୁଗାବତାର, ମନ୍ୱନ୍ତର ଆରମ୍ଭରେ ମନ୍ୱନ୍ତରାବତାର ଏବଂ କେବେ କେବେ ବିଶେଷ ଅବତାର ଧାରଣ କରି ଧର୍ମସ୍ଥାପନା କରନ୍ତି ।

ଶୌନକ ପଚାରିଲେ—"ହେ ସୂତ ! ଧର୍ମତ ନିତ୍ୟ, ଭଗବଦ୍‌ସ୍ୱରୂପ ଓ ସନାତନ । ତେଣୁ ଧର୍ମରକ୍ଷୟ ଘଟେ କିପରି ? ଧର୍ମ କାହିଁକି କ୍ଷୟହୁଏ ଓ ବୃଦ୍ଧିଲାଭ କରେ !

ମହର୍ଷି ସୂତ କହିଲେ—"ଭଗବନ୍ ! ପତିବ୍ରତା ଦ୍ୱାରା ଧର୍ମ ଅଭିଶପ୍ତ ହୋଇଥିବାରୁ ଚନ୍ଦ୍ରଙ୍କପରି ତାଙ୍କର କ୍ଷୟବୃଦ୍ଧି ଘଟେ । କ୍ଷୟ ଧୀରେ ଧୀରେ ହୁଏ, ମାତ୍ର ବୃଦ୍ଧି ଏକ ସମୟରେ ଘଟେ । ତେଣୁ ଘୋର କଳିଯୁଗ ପରେ ଶୁଦ୍ଧ ସତ୍ୟଯୁଗ ଆସିଯାଏ ।"

"ଧର୍ମ ଯଦି ଅକ୍ଷୟ ଓ ସନାତନ ତାହା ଅଭିଶାପଗ୍ରସ୍ତ ହୁଏ କିପରି ? ଏହା ବଡ଼ ସନ୍ଦେହଜନକ କଥା । ଶୌନକଙ୍କର ଏହି ସନ୍ଦେହ ଦୂର କରିବା ପାଇଁ ମହର୍ଷି ସୂତ କହିଲେ—ଭଗବନ୍ ! ଆପଣ ସବୁ ଜାଣିଶୁଣି ସନ୍ଦେହ କରୁଛନ୍ତି କିପରି ? ସବୁ ଭଗବାନଙ୍କ ଲୀଳା । ଧର୍ମ କଥା ଛାଡ଼ନ୍ତୁ ସ୍ୱୟଂ ଭଗବାନ୍ ମଧ୍ୟ ଅଭିଶପ୍ତ ହୋଇ ଅବତାର ଗ୍ରହଣ କରନ୍ତି । ମହର୍ଷି ଭୃଗୁ ଭଗବାନଙ୍କୁ ଅଭିଶାପ ଦେଇଥିଲେ ଦଶବାର ପୃଥିବୀରେ ଅବତୀର୍ଣ୍ଣ ହେବା ନିମିତ୍ତ । ସେହି ଅଭିଶାପ ଫଳ ଭଗବାନ୍ ଭୋଗ-କରୁଛନ୍ତି । ସଦାଚାର ପରିପାଳନାପାଇଁ ପ୍ରଭୁ ଋଷିଙ୍କ ଅଭିଶାପକୁ ସ୍ୱୀକାର କରିନେଇଥିଲେ । ଶାପଦେବା ଓ ଗ୍ରହଣ କରିବା ସବୁ ତାଙ୍କର ଲୀଳା । ସେହିପରି ଭଗବାନ୍‌ଙ୍କ ଇଚ୍ଛା ଅନୁସାରେ ଧର୍ମ ପତିବ୍ରତାଦ୍ୱାରା ଅଭିଶପ୍ତ ହୋଇଥିଲେ ।"

ଶୌନକ ପଚାରିଲେ—"ହେ ସୂତ ! କେଉଁ ପତିବ୍ରତା ଧର୍ମଙ୍କୁ ଅଭିଶାପ ଦେଇଥିଲା ସେହିକଥା ପ୍ରଥମେ କୁହନ୍ତୁ । ତାହାପରେ ଆମକୁ ମତ୍ସ୍ୟାବତାର କଥା କହିବେ ।"

ମହର୍ଷି ସୂତ କହିଲେ—ଠିକ୍ ଅଛି । ଧର୍ମ କପରି ଅଭିଶପ୍ତ ହେଲେ ସେଇକଥା ମୁଁ କହୁଛି । ଆପଣମାନେ ମନଦେଇ ଶୁଣନ୍ତୁ ।

## ଛପ୍‌ପୟ

ଧର୍ମ ମୂଳ ଭଗବାନ୍ ଧର୍ମ ଧରନୀ କୁଁ ଧାରେଁ ।
ଜଗ ମହଁ ହୋଇହୁଁ ନ ଧର୍ମ ମାରୁ ସନ୍ତତ କୁଁ ମାରେଁ ।।
ଦୃଢ଼ତର ରକ୍ଷିତ ଧର୍ମ କରେଁ ରକ୍ଷକ କୀ ରକ୍ଷା ।
ଲୈଁ କେଁ ହରି ଅବତାର ଧର୍ମ କୀ ଦେବେଁ ଶିକ୍ଷା ।।
ସତ୍ୟ ସନାତନ ଧର୍ମ କୀ, ପ୍ରଭୁ ଯୁଗ ଯୁଗ ରକ୍ଷା କରତ ।
ଜଳଚର ଥଳଚର ଗଗନଚର ଧର୍ମ ହେତୁ ହରି ତନ ଧରତ ।।



# ଧର୍ମକୁ କ୍ଷୟ ହେବାପାଇଁ ଅଭିଶାପ

ଯଦା ଯଦେହ ଧର୍ମସ୍ୟ କ୍ଷୟୋ ବୃଦ୍ଧିଶ୍ଚ ପାପ୍ମନଃ ।
ତଦା ତୁ ଭଗବାନୀଶ ଆତ୍ମାନଂ ସୃଜତେ ହରିଃ ।।

( ଭା-୯-୨୪-୫୬ )

## ଛପ୍ପୟ

ପ୍ରଥମ ଏକ ପଦ ରହେଁ ଧର୍ମ ସତ ଯୁଗ ହୀ ହୋଉଁ ।
ତନ୍ତୁ କପଟ ବ୍ୟବହାର ନତ୍ୟତା ନର ନୀ ଖୋଉଁ ।।
ପିପ୍ଲାଦ ମୁନ ପତ୍ନୀ ପରୀକ୍ଷା ଲଇ ଧର୍ମ କବ ।
କହେ ଅଟପଟେ ବଚନ ସତୀ ଅତ କ୍ରୁଦ୍ଧ ଭଇତବ ।।
ପତିବ୍ରତା କେ ଶାପବଶ, ଧର୍ମ ବୃଦ୍ଧି କ୍ଷୟ ଯୁତ ଭୟେ ।
ତ୍ରେତା, ଦ୍ୱାପର, ସତ୍ୟ, କଲି ତବଇ ତେ ଯୁଗ ବନଗୟେ ।।

ସତ୍ୟ ପ୍ରଭୁଙ୍କ ଲୀଳା ମଧ୍ୟ ସତ୍ୟ, ତାଙ୍କ ରଚିତ ଜଗତ୍ ସତ୍ୟ ଏବଂ ତାଙ୍କର କ୍ରୀଡ଼ା ମଧ୍ୟ ସତ୍ୟ । ଗୁଣମୟୀ ମାୟା ସଂସର୍ଗରେ ପଡ଼ି ଅଜ୍ଞାନବଶତଃ ଅସତ୍ୟକୁ ସତ୍ୟ ବୋଲି ମନେ କରି ପ୍ରାଣୀ ସତ୍ୟତାଠାରୁ କ୍ରମଶଃ ଦୂରେଇ ଯିବା ସଙ୍ଗେ ସଙ୍ଗେ ଦୃଷ୍ଟି ପାଲଟିଯାଏ । ଏହି ସଂସାର ସର୍ବାନ୍ତର୍ଯାମୀ ପ୍ରଭୁଙ୍କ କ୍ରୀଡ଼ାଭୂମି, ତାଙ୍କର ରଙ୍ଗଶାଳା ଏବଂ ସଂସାର ରୂପକ ରଙ୍ଗଶାଳାରେ ସେ ନାନାପ୍ରକାର ଅଭିନୟ କରିଥାନ୍ତି । ପ୍ରଭୁଙ୍କ ବିନୋଦ ବ୍ୟତୀତ ଏସବୁର ସତ୍ତା ବୋଲି କିଛି ନାହିଁ । ସେ ନାନା ରୂପ ଧାରଣ କରି ନାନାବିଧ କ୍ରୀଡ଼ା କରନ୍ତି । ତେଣୁ ସୁଖ, ଦୁଃଖ, ଆନନ୍ଦ, ନିରାନନ୍ଦ, ଶୋକ, ମୋହ ସବୁକିଛି ଭଗବାନଙ୍କ ଲୀଳା ବୋଲି ଯେ ଭାବେ, ଅନୁଭବ କରେ, ସେ ସୁଖୀ ହୁଏ । ଯେଉଁମାନେ ଅନ୍ୟଭାବ ପୋଷଣ କରନ୍ତି ସେମାନେ ଭ୍ରମରେ ପଡ଼ନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଧର୍ମ କାହିଁକି କ୍ଷୟିଷ୍ଣୁ ହେବାପାଇଁ ଅଭିଶାପ ପାଇଲେ ବୋଲି ଆପଣମାନେ ମୋତେ ପଚାରିଛନ୍ତି । ମୁଁ ବର୍ତ୍ତମାନ ସେଇକଥା କହୁଛି ।"

ମହାରାଜ ମନୁଙ୍କ ବଂଶରେ ଅନରଣ୍ୟ ନାମରେ ଜଣେ ତେଜସ୍ୱୀ, ମହାପରାକ୍ରମୀ ଓ ଧାର୍ମିକ ରାଜା ଥିଲେ । ସେ ପ୍ରଜାମାନଙ୍କୁ ପୁତ୍ରପରି ପାଳନ କରୁଥିଲେ । ତାଙ୍କର ଶହେ ପୁଅ ଥିଲେ ମଧ୍ୟ ଝିଅ ଗୋଟିଏ ହେଲେ ନ ଥିଲା । ଆପଣମାନେ ଜନ୍ମରୁ ଘରଦ୍ୱାରଠାରୁ ଦୂରରେ ଅଛନ୍ତି । ଗାର୍ହସ୍ଥ୍ୟ ଜଞ୍ଜାଳରେ ପଶିନାହାନ୍ତି । ଗୃହସ୍ଥମାନଙ୍କ ଘରେ ଝିଅ ଜନ୍ମ ନ ହୋଇ ପୁଅ ଜନ୍ମ ହେଲେ ସେମାନେ ଅଧିକ ଆନନ୍ଦିତ ହୁଅନ୍ତି । କେବଳ ସେତିକି ନୁହେଁ, ଗୋଟିକ ପରେ ଗୋଟିଏ କରି ଯଦି ଝିଅ ଜନ୍ମ ହେଲେ ତେବେ ଦୁଃଖର ସୀମା ରହେ ନାହିଁ । ତଥାପି ଗୋଟିଏ ବା ଦୁଇଟି ଝିଅ ହୁଅନ୍ତୁ ବୋଲି ସବୁ ଗୃହସ୍ଥ ଇଚ୍ଛା କରନ୍ତି । କନ୍ୟାଦାନକୁ ସର୍ବଶ୍ରେଷ୍ଠ ଦାନ ବୋଲି ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି । ପୁଅ ଯୋଗ୍ୟ ହେଲେ ନିଜ ବଂଶର ସମ୍ମାନ ବଢ଼ାଇଥାଏ । କିନ୍ତୁ ଝିଅ ଯୋଗ୍ୟା ହେଲେ ମାତୃକୁଳ, ପିତୃକୁଳ ଓ ପତିକୁଳ, ଏପରି ତିନିକୁଳର ସମ୍ମାନ ବଢ଼ାଏ । ସେଥିପାଇଁ ସମସ୍ତେ ଗୁଣବତୀ କନ୍ୟାଟିଏ ପାଇବା ପାଇଁ ଇଚ୍ଛା କରନ୍ତି ।"

ମହାରାଜ ଅନରଣ୍ୟଙ୍କର ଶତପୁତ୍ର ଥିଲେ ମଧ୍ୟ କନ୍ୟାଟିଏ ନ ଥିଲା । ରାଜା ଓ ରାଣୀ ଝିଅଟିଏ ପାଇବା ପାଇଁ ବ୍ୟାକୁଳ ହେଉଥିଲେ । ସାଧାରଣତଃ ସ୍ତ୍ରୀଲୋକେ ପୁଅକୁ ଖୁଆଇବା ଅପେକ୍ଷା ଜୋଇଁଙ୍କୁ ଖୁଆଇବାରେ ଅଧିକ ସନ୍ତୋଷ ଲାଭ କରନ୍ତି । ଶେଷରେ ଭଗବାନ୍ ରାଜା ଓ ରାଣୀଙ୍କ ଅଭିଳାଷ ପୂର୍ଣ୍ଣ କଲେ । ତାଙ୍କର ଝିଅଟିଏ ଜନ୍ମହେଲା । ଝିଅଟି ସାଧାରଣ ଝିଅ ନୁହେଁ, ଠିକ୍ ଲକ୍ଷ୍ମୀ ପ୍ରତିମା ପରି ଦେଖିବାକୁ ସୁନ୍ଦର ହୋଇଥିଲା । ଝିଅଟିର ଗଠନ, ଅଙ୍ଗପ୍ରତ୍ୟଙ୍ଗ ଏପରି ସୁଗଠିତ ଓ ସୁନ୍ଦର ଥିଲା ଯେ ଦେଖିବା ଲୋକର ଆଖି ଲାଖି ରହୁଥିଲା । ତା'ର ଦେହର ରଙ୍ଗ ଥିଲା ଚମ୍ପାକଢ଼ି ପରି ହଳଦିଆ । ସଂକ୍ଷେପରେ କହିଲେ ଝିଅଟି ଶୋଭା ସମ୍ପଦର ଏକ ମୂର୍ତ୍ତିମନ୍ତ ପ୍ରତିମା ଥିଲା । ଏପରି ସୁନ୍ଦର କନ୍ୟାଟିଏ ପାଇ ରାଜା ଓ ରାଣୀ ଖୁସି ହୋଇଥିଲେ ।

ଶୁକ୍ଳ ପକ୍ଷର ଚନ୍ଦ୍ରକଳା ବଢ଼ିଲା ପରି ଝିଅଟି ରାଜନଅରରେ ବଢ଼ିବାକୁ ଲାଗିଲା । ବୟସ ଓ ଦେହ ବଢ଼ିବା ସଙ୍ଗେ ସଙ୍ଗେ ଝିଅଟି ଅଧିକରୁ ଅଧିକ ସୁନ୍ଦର ଦେଖାଗଲା । ପଦ୍ମଧାରିଣୀ ଲକ୍ଷ୍ମୀଙ୍କ ପରି ଦେଖାଯାଉଥିବାରୁ ପିତା, ମାତା ଓ ରାଜପୁରୋହିତ ଝିଅଟିର ନାମ ରଖିଲେ ପଦ୍ମା । କ୍ରମଶଃ ବାଲ୍ୟ, ପୌଗଣ୍ଡ ଓ

କୈଶୋର ଅବସ୍ଥା ଅତିକ୍ରମ କରି ପଦ୍ମା ଯୌବନରେ ପଦାର୍ପଣ କଲା । ଯୌବନସ୍ଥିତା ପଦ୍ମାର ଦେହରୁ ଏକ ଅପୂର୍ବ ଆଭା ପ୍ରକଟିତ ହେବାକୁ ଲାଗିଲା । ତା'ର କଥାବାର୍ତ୍ତା, ଚାଲିଚଳନ, ହସଖୁସିରେ ଏକ ବିଚିତ୍ର ପରିବର୍ତ୍ତନ ଦେଖାଗଲା । କନ୍ୟାକୁ ଯୁବତୀ ହେବାର ଦେଖି ପିତାମାତା ତା'ର ଯୋଗ୍ୟ ପତିଟିଏ ପାଇବାପାଇଁ ଚିନ୍ତା କରିବାକୁ ଲାଗିଲେ । ପିତାମାତାଙ୍କ ଇଚ୍ଛା ଥିଲା ଦେଶର ସର୍ବଶ୍ରେଷ୍ଠ ସୁନ୍ଦର, ବୀରପୁରୁଷ ତାଙ୍କ କନ୍ୟାର ପାଣିଗ୍ରହଣ କରିବା ଆବଶ୍ୟକ । ସେଥିପାଇଁ ସେମାନେ ଦେଶ ଦେଶାନ୍ତରକୁ ଦୂତ ପ୍ରେରଣ କଲେ । ବହୁ ରାଜା ଏପରିକି କେତେକ ଦେବତା ମଧ୍ୟ ପଦ୍ମାର ପାଣିଗ୍ରହଣ ପାଇଁ ଆସି ରାଜାଙ୍କୁ ନିବେଦନ କଲେ । କିନ୍ତୁ ମହାରାଜ କହିଲେ— ମୋର ଝିଅ ଏହି ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିଛି । ତେଣୁ ମର୍ତ୍ତ୍ୟଲୋକର ଏକ ଯୋଗ୍ୟ ବରସହିତ ତାକୁ ମୁଁ ବିବାହ କରାଇବି । ଯୋଗ୍ୟ ବରଟିଏ ପାଇବାପାଇଁ ରାଜା ଓ ରାଣୀ ସବୁବେଳେ ଚିନ୍ତା କରିବାକୁ ଲାଗିଲେ ।

ସେ ସମୟରେ ମହାରାଜ ଅନରଣ୍ୟଙ୍କ ରାଜ୍ୟରେ ଦଧୀଚି ମୁନିଙ୍କ ପୁତ୍ର ପିପ୍ପଲାଦ ଘୋର ତପସ୍ୟା କରୁଥିଲେ । ଦଧୀଚି ମୁନି ଦେବତାମାନଙ୍କର କଲ୍ୟାଣ-ପାଇଁ ଯେତେବେଳେ ନିଜକୁ ଉତ୍ସର୍ଗ କରିଦେଲେ ସେତେବେଳେ ପିପ୍ପଲାଦ ମାତୃ-ଗର୍ଭରେ ଥିଲେ । ଦଧୀଚିଙ୍କ ସ୍ୱେଚ୍ଛା ମୃତ୍ୟୁରେ ତାଙ୍କ ପତ୍ନୀ ଦୁଃଖରେ ଅଭିଭୂତା ହୋଇ ପେଟକୁ ଚିରି ପିପ୍ପଲାଦଙ୍କୁ ବାହାର କରିଥିଲେ ଏବଂ ଶିଶୁକୁ ଏକ ପିପ୍ପଳ ବୃକ୍ଷ କୋଟରରେ ରଖିଦେଇ ନିଜେ ପତିଙ୍କ ଚିତାଗ୍ନିରେ ଆତ୍ମାହୁତି ଦେଇ ସତୀ ହୋଇଯାଇଥିଲେ । ପିପ୍ପଳ ବୃକ୍ଷର ଅଧିଷ୍ଠାତୃ ଦେବଗଣ ବାଳକକୁ ରକ୍ଷା କରିଥିଲେ । ପିପ୍ପଳ ଫଳ ଖାଇ ପିଲାଟି ବଡ଼ ହେବାରୁ ସେ ପିପ୍ପଲାଦ ନାମରେ ଅଭିହିତ ହେଲା । ସେ ହଜାର ହଜାର ବର୍ଷ ଧରି କଠୋର ନିୟମ ମଧ୍ୟରେ ତପସ୍ୟା କରିବାକୁ ଲାଗିଲେ । ତପସ୍ୟାରେ ନିମଗ୍ନ ରହି ସେ ବୃଦ୍ଧ ହୋଇଯାଇଥିଲେ । ସେ ବିବାହ କରି ନଥିଲେ କି ଗୃହସ୍ଥ ଧର୍ମ କ'ଣ ଜାଣି ନଥିଲେ । ସାରା ଜୀବନ ସେ ତପସ୍ୟାରେ ହିଁ ଲାଗି ରହିଥିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଏ ମନକୁ ବିଶ୍ୱାସ କରିହେବ ନାହିଁ, କେତେବେଳେ କୁଆଡ଼େ ଖସିଯିବ ତାହା କହିହେବ ନାହିଁ । ଦେହରେ ପ୍ରାଣ ଥିବାଯାଏ ମନ ଉପରେ ଭରସା ରଖିହେବ ନାହିଁ । ତେଣୁ ମନକୁ ସବୁବେଳେ ନିଜ ଆୟତ୍ତରେ ରଖିବା ଉଚିତ୍ । ଦସ୍ୟୁକୁ ଯେପରି ବିଶ୍ୱାସ କରାଯାଏ ନାହିଁ ସେହିପରି ମନକୁ ବିଶ୍ୱାସ କରିହେବ ନାହିଁ । ବେଳେବେଳେ ମନରେ ଧାରଣା ଆସେ ଯେ ଆଉ କିଛି କାମନା, ବାସନା ନାହିଁ । କିନ୍ତୁ ପୁଣି କେତେବେଳେ ମନ ବିଷୟ ସମ୍ମୁଖରେ

ଚଞ୍ଚଳ ହୋଇଉଠେ ଆଉ ବିବେକକୁ ଘୁଞ୍ଚିଦେଇ ଜୀବ ଉପରେ ଆଧିପତ୍ୟ ବିସ୍ତାର କରିଥାଏ । ମହାମୁନି ପିପ୍‌ପଲାଦ ଜଣେ ବଡ଼ ଜିତେନ୍ଦ୍ରିୟ ଓ ଧୈର୍ଯ୍ୟବାନ୍ ଋଷି ଥିଲେ । କିନ୍ତୁ ପ୍ରାରବ୍‌ଧବଶତଃ ମନ ତାଙ୍କପ୍ରତି ବିଶ୍ୱାସଘାତକତା କଲା । ବସନ୍ତ ଋତୁର ଏକ ସକାଳରେ ବଣରୁ ଫୁଲ, ଫଳ, ମୂଳ, ସମିଧ, କୁଶ ସଂଗ୍ରହ କରି ମୁନି ନିଜେ ଆଶ୍ରମକୁ ଫେରୁଥିଲେ । ଫେରିବା ବାଟରେ ସେ ଦେଖିଲେ ଏକ ଗନ୍ଧର୍ବ ନିଜର ସୁନ୍ଦରୀ ପତ୍ନୀମାନଙ୍କୁ ସାଙ୍ଗରେ ନେଇ ନଦୀ ତୀରରେ ବସିଥିଲା । କଳକଳ ନାଦିନୀ, ସ୍ୱଚ୍ଛସଲିଳା, ଦ୍ରୁତବେଗରେ ପ୍ରବାହିତା ନଦୀର ଜଳଧାରାରେ ମାଦକତା ପୂରି ରହିଥିଲା । ନିକଟବର୍ତ୍ତୀ ପର୍ବତର ଉପତ୍ୟକାରେ ନବୀନ ଶ୍ୟାମଳ ଦୂର୍ବାଦଳ ପୂରି ରହିଥିଲା । ସମସ୍ତ ଗ୍ରେଟ, ବଡ଼, ବୃକ୍ଷ ଫୁଲ ଓ ଫଳରେ ପୂରି ରହିଥିଲା । ମନ୍ଦ, ସୁଗନ୍ଧିତ, ସୁଖକର ଶୀତଳ ବାୟୁ ବହୁଥିଲା । ଚାରିଆଡ଼େ ପୁଷ୍ପିତ ଲତାଗୁଡ଼ିକ ଦୋହଲୁଥିଲା । ଗନ୍ଧର୍ବାଙ୍ଗନାଗଣ ଅତି ଆନନ୍ଦରେ ଗନ୍ଧର୍ବର ସେବାରେ ବ୍ୟାପୃତ ଥିଲେ । ନିଜର ସର୍ବସ୍ୱ ସମର୍ପଣ କରି ସ୍ନେହ ପୂର୍ଣ୍ଣ ହୃଦୟରେ ସେମାନେ ସ୍ୱାମୀର ଉପାସନା କରୁଥିଲେ । ଗନ୍ଧର୍ବ ମଧ୍ୟ ନିଜର ସମସ୍ତ ସ୍ନେହ ସେମାନଙ୍କ ଉପରେ ଅଜାଡ଼ି ଦେଉଥିଲା । କିଏ ଗାଉଥିଲା ତ କିଏ ନାଚୁଥିଲା । କିଏ ଧୀରେ ଧୀରେ ପଦ-ସମ୍ବାହନ କରୁଥିଲା ଅନ୍ୟ କିଏ କୋଳରେ ସ୍ୱାମୀର ମସ୍ତକକୁ ରଖି ସାଉଁଳୁଥିଲା । କିଏ ସ୍ନେହସିକ୍ତ ନୟନରେ ଚାହିଁ ରହିଥିଲା ତ ଆଉ କିଏ ନିଜର ଅଙ୍ଗବାସରେ ବିଞ୍ଚୁଥିଲା । ସମସ୍ତେ ଆତ୍ମବିସ୍ମୃତ ହୋଇ ପରସ୍ପରକୁ ସୁଖୀ କରୁଥିଲେ । ଉଭୟଙ୍କ ପକ୍ଷରୁ ଅନୁରାଗର ବନ୍ୟା ଖେଳି ଯାଉଥିଲା ।

ମହାମୁନି ପିପ୍‌ପଲାଦ ଦୂରରୁ ଥାଇ ସେମାନଙ୍କର କାମକ୍ରୀଡ଼ା ଦେଖୁଥିଲେ । ମନ ତାଙ୍କର ସେଠାରେ ଅଟକିଗଲା । ପାଦ ସ୍ଥିର ହୋଇଗଲା । ଚିତ୍ତ ଚଞ୍ଚଳ ହୋଇ-ଉଠିଲା । ମୁନି ଭାବିଲେ, ସାରାଜୀବନ କଠୋର ନିୟମ ପାଳନ କଲି, କେବେହେଲେ ମେଟପୂରା ଖାଦ୍ୟ ଖାଇନାହିଁ କି ଦିନେହେଲେ ହସି ହସି କାହାରି ସହିତ କଥାବାର୍ତ୍ତା କରିନାହିଁ । କଠୋର ନିୟମ ଭିତରେ ରହି ହୃଦୟ ମୋର ପଥର ପରି କଠୋର ହୋଇଯାଇଛି । ଏହି ପର୍ବତର ଶିଳାଖଣ୍ଡ ଓ ମୋ' ଭିତରେ କି ପାର୍ଥକ୍ୟ ଅଛି ? ଯେଉଁ ହୃଦୟରେ ସରଳତା ନାହିଁ ତାହା ଲୁହା ଓ ପାଷାଣ ପରି ନିର୍ଜୀବ । ଏହି ଗନ୍ଧର୍ବ ଦମ୍ପତି ଯେଉଁ ଆନନ୍ଦ ଅନୁଭବ କରୁଛନ୍ତି ଏତେଦିନ ତପସ୍ୟା କରି ମଧ୍ୟ ମୁଁ ସେ ଆନନ୍ଦ ଅନୁଭବ କରିନାହିଁ । ମୁଁ ବି ଏମାନଙ୍କ ପରି ଗାର୍ହସ୍ଥ୍ୟ ସୁଖ ଅନୁଭବ ନ କରିବି କାହିଁକି ? ବହୁଦିନ ହେଲା ଗୁଡ଼ିଏ କଷା, ପିତା ଫଳଖାଇ ତପସ୍ୟା କଲି । ତେଣୁ ଏବେ କିଛି ମଧୁର ଅନୁଭୂତି ଅର୍ଜନ କରିବା ଆବଶ୍ୟକ ।

ମହର୍ଷି ସୂତ କହିବାକୁ ଲାଗିଲେ—"ମୁନିଗଣ ! ହୃଦୟ ଯେତିକ ନିର୍ବିକାର ହୋଇଥାଏ ସେଥିରେ ଥରେ ବିକାର ଆରମ୍ଭ ହେଲେ ତାହା ତତୋଽଧିକ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରେ । ମୁନି ପିପ୍ପଳାଦ ସମିଧ ବିଡ଼ାଟି ଫିଙ୍ଗିଦେଲେ, ଫୁଲ, ଫଳ, କୁଶ ସବୁକିଛୁ ଏଣେତେଣେ ଫିଙ୍ଗିଦେଲେ ଏବଂ ବିବାହ କରିବା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ଯାଉଁ ଯାଉଁ ପିପ୍ପଳାଦ ପୁଷ୍ପଭଦ୍ରାନଦୀ କୂଳରେ ପହଞ୍ଚିଲେ । ନଦୀଟି ସୁକୁମାରୀ କ୍ଷୀଣାଙ୍ଗୀ ବାଳିକାପରି ଅତି ଦ୍ରୁତଗତିରେ ପ୍ରବାହିତା ହେଉଥିଲା । ଦୈବବଶାତଃ ସେଦିନ ଏକ ବିଶେଷ ପର୍ବ ଥିଲା । ରାଜକୁମାରୀ ପଦ୍ମା ନିଜର ସଖୀମାନଙ୍କ ସହିତ ପୁଷ୍ପଭଦ୍ରାକୁ ସ୍ନାନ କରିବାପାଇଁ ଆସିଥିଲେ । ଭାଗ୍ୟବଶାତଃ ମୁନିଙ୍କ ଦୃଷ୍ଟି ରାଜକୁମାରୀ ଉପରେ ପଡ଼ିଲା । ପଦ୍ମାର ଅନନ୍ୟ ସାଧାରଣ ସୌନ୍ଦର୍ଯ୍ୟ, ଅନୁପମ ଲାବଣ୍ୟ ଦେଖି ମୁନି ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ । ଏପରି ସୁନ୍ଦରୀ କନ୍ୟା ସେ ଦେବଲୋକରେ ମଧ୍ୟ ଦେଖିବାକୁ ପାଇ ନଥିଲେ । ଏପର୍ଯ୍ୟନ୍ତ ଏତେ ସୁନ୍ଦରୀ ଯୁବତୀ ମୁନି ଦେଖି ନଥିଲେ । ମୁନି ସେବକ ଓ ଅନୁଚରମାନଙ୍କଠାରୁ ରାଜକୁମାରୀଙ୍କ ପରିଚୟ ସଂଗ୍ରହ କଲେ ଏବଂ କୁମାରୀ ଅବିବାହିତା ଥିବାର ଜାଣି ଖୁସିହେଲେ । ମହାମୁନି ପିପ୍ପଳାଦ ସେଇଠୁ ଯାଇ ମହାରାଜ ଅନରଣ୍ୟଙ୍କ ରାଜସଭାରେ ଉପସ୍ଥିତ ହେଲେ ।

ମହାମୁନି ପିପ୍ପଳାଦଙ୍କୁ ଆସୁଥିବାର ଦେଖି ରାଜା ସହସା ସିଂହାସନ ଛାଡ଼ି ଠିଆ ହୋଇଗଲେ । ପାଦ୍ୟ, ଅର୍ଘ୍ୟ, ମଧୁପର୍କ ଆଦିନେଇ ସେ ମୁନିଙ୍କ ପାଦପୂଜା କଲେ । ନାନାମତେ ମୁନିଙ୍କ ସନ୍ତୋଷ ବିଧାନ କରି ଆସିବାର କାରଣ ପଚାରିବାକୁ ରାଜା କହିଲେ—"ମୁନିବର ! ମହାପୁରୁଷମାନେ ଆମପରି ଅଧମ ଗୃହସ୍ଥଙ୍କୁ କୃତାର୍ଥ କରିବା ପାଇଁ ପର୍ଯ୍ୟଟନ କରନ୍ତି । ଆପଣ ସଦୟ ହୋଇ ଏହି ସେବକକୁ ଦର୍ଶନ ଦେଇଥିବାରୁ ମୁଁ ଓ ମୋର ପ୍ରଜାବର୍ଗ କୃତାର୍ଥ ହୋଇଛୁ । ତଥାପି ଆପଣ କେଉଁ ବିଶେଷ ପ୍ରୟୋଜନ ନେଇ ଏଠାରେ ଉପସ୍ଥିତ ହୋଇଛନ୍ତି ତାହା ଜାଣିବା ପାଇଁ ମନ ବ୍ୟାକୁଳ ହେଉଛି ।"

ମୁନି ଗମ୍ଭୀର ହୋଇ କହିଲେ—"ମହାରାଜ ! ଆଜି ଏକ ବିଶେଷ କାର୍ଯ୍ୟ ପାଇଁ ମୁଁ ଆପଣଙ୍କ ପାଖକୁ ଆସିଛି । ମୋର ଅଭିଳାଷ ଆପଣଙ୍କୁ ପୂର୍ଣ୍ଣ କରିବାକୁ ପଡ଼ିବ ।"

ଅତୀବ ଆଗ୍ରହ ଓ ଆନନ୍ଦରେ ରାଜା କହିଲେ—"ବ୍ରହ୍ମନ୍ ! ଆପଣ ମୋର ସେବାକୁ ଯୋଗ୍ୟସେବା ବୋଲି ବିଚାର କରିଥିବାରୁ ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି । ମୁଁ ଆଜି କୃତାର୍ଥ ହୋଇଛି । ମୋର ରାଜ୍ୟ, କୋଷ ଓ ସର୍ବସ୍ୱ ଆପଣଙ୍କର । ଆପଣ ବିନା ଦ୍ୱିଧାରେ ଯେ କୌଣସିଟି ମାଗିନିଅନ୍ତୁ ।"

ମହାମୁନି ପିପ୍‌ପଲାଦ କହିଲେ—"ରାଜନ୍‌ ! ଆପଣଙ୍କ ଗୁଣ ଅନୁରୂପ କଥା ଆପଣ କହୁଛନ୍ତି । ଆପଣଙ୍କଠାରୁ କୌଣସି ଯାଚକ କେବେ ନିଷ୍ଫଳ ହୋଇ ଫେରିଯାଇ-ନାହିଁ ମହାରାଜ ! ଗୃହସ୍ଥ ହେବାପାଇଁ ମୋର ଇଚ୍ଛା ଜାତ ହୋଇଛି । ଆପଣ ନିଜର କନ୍ୟା ପଦ୍ମାକୁ ମୋତେ ବିବାହ ପାଇଁ ଦାନ କରନ୍ତୁ ।

ମୁନିଙ୍କ କଥା ଶୁଣିବା ମାତ୍ରେ ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ତାଙ୍କ ସାରିଦେହରୁ ଝାଳ ବହିଗଲା । ସମଗ୍ର ସଂସାର ତାଙ୍କୁ ଶୂନ୍ୟ ମନେହେଲା । ସେ ମୁନିଙ୍କ ପ୍ରସ୍ତାବକୁ ହଁ ବା ନାଁ କିଛି କହିପାରିଲେ ନାହିଁ । ସେ ନୀରବରେ ମୁଣ୍ଡ-ତଳକୁ କରି ଭୂଇଁଥିବାକୁ ଚାହିଁ ରହିଲେ ।

ମୁନିବର ରାଜାଙ୍କ ଆଡ଼କୁ ଚାହିଁ ତାଙ୍କ ମନୋଭାବ ବୁଝିପାରିଲେ । ମାତ୍ର ଛଅଟି ମାସ ତପସ୍ୟାଦ୍ୱାରା ଲୋକ ମନରେ ଅସରନ୍ତି ଅଭିମାନ ସୃଷ୍ଟି ହୋଇଯାଏ । ପିପ୍‌ପଲାଦଙ୍କ ପାଖରେ ହଜାର ହଜାର ବର୍ଷର ତପସ୍ୟା ଫଳ ସଞ୍ଚିତ ଥିଲା । ତାଙ୍କ ଆଗରେ ରାଜା, ମହାରାଜାଙ୍କର ମୂଲ୍ୟ ବା କଣ ? ନିଜର ଅଭିଳାଷରେ ବ୍ୟାଘାତ ସୃଷ୍ଟି ହେବାର ଦେଖି କାମୀ ମୁନିଙ୍କ ମନରେ କ୍ରୋଧ ଜାତହେଲା । ସେ କ୍ରୋଧରେ ଆଖି ଲାଲ୍‌ କରି କହିଲେ—"ରାଜନ୍ ! ମୁଁ ତୁମର ମନୋଭାବ ଜାଣିପାରୁଛି । କିନ୍ତୁ ତୁମେ ବିଶ୍ୱାସ କର, ମୋର ଅଭିଳାଷ ପୂର୍ଣ୍ଣ ନହେଲେ ମୁଁ ଅଭିଶାପ ଦ୍ୱାରା ତୁମର ସର୍ବସ୍ୱ ନଷ୍ଟ କରିଦେବି ।"

ମୁନିଙ୍କ କଥାଶୁଣି ରାଜାଙ୍କ ଧୈର୍ଯ୍ୟ ତୁଟିଗଲା । ସେ ପିଲାଙ୍କ ପରି ଧକେଇ ଧକେଇ କାନ୍ଦିବାକୁ ଲାଗିଲେ । ପ୍ରାଣଠାରୁ ବଳି ପ୍ରିୟ, ନିଜର ସୁକୁମାରୀ କନ୍ୟା ପାଇଁ ସେ କେତେ କେତେ କଥା ଭାବିଥିଲେ । ମନରେ କେତେ ଅଭିଳାଷ ପୋଷଣ କରିଥିଲେ । ସର୍ବଗୁଣ ସମ୍ପନ୍ନ ଧୀର, ବୀରବର ବିଷୟରେ କେତେ କେତେ ସ୍ୱପ୍ନ ଦେଖିଥିଲେ । କିନ୍ତୁ ଆଜି ଫୁଲପରି କୋମଳାଙ୍ଗୀ କନ୍ୟାକୁ ଏହି ବୃଦ୍ଧ, ଜୀର୍ଣ୍ଣଦେହ, ଶ୍ଳଥଚର୍ମ, ରୁକ୍ଷ ଶ୍ମଶ୍ରୁଯୁକ୍ତ, ଜଟାଜୂଟ ମୁନିଙ୍କୁ ଦାନକରି କିପରି ଜୀବନ ଧାରଣ କରିବେ ବୋଲି ରାଜା ଭାବି ଭାବି ଅସ୍ଥିର ହୋଇପଡ଼ିଲେ । ଅତି ଯତ୍ନରେ ପାଳିଥିବା ଗାଈକୁ କଂସେଇ ହାତକୁ ଟେକିଦେବା ଯେପରି ଦୁଃଖଦାୟକ ପଦ୍ମାକୁ ବୃଦ୍ଧ ପିପଲାଦଙ୍କୁ ଦାନକରିବା ସେହିପରି ଦୁଃଖକର । ମୁନିଙ୍କ ଭୟରେ ରାଜା ଥରୁଥିଲେ । ତାଙ୍କ ଦୁଇ-ନେତ୍ରରୁ ଅବାରିତ ଅଶ୍ରୁଧାରା ବହିଯାଉଥିଲା । ଏହି ଘଟଣା କ୍ଷଣକ ମଧ୍ୟରେ ରାଜଅାଡ଼େ ପ୍ରଚାରିତ ହୋଇଗଲା । ଅନ୍ତଃପୁରରେ ଏହି ସମ୍ବାଦ ପହଞ୍ଚିବା ମାତ୍ରେ

କୁରଙ୍ଗୀ ପକ୍ଷୀପରି ସମସ୍ତେ ରୋଦନ କରିବାକୁ ଲାଗିଲେ । କନ୍ୟାର ଜନନୀ ଶୋକରେ ମୂର୍ଚ୍ଛିତା ହୋଇ ପଡ଼ିଗଲେ । ରାଜସଭାରେ ନିସ୍ତବ୍ଧତା ଛାଇଗଲା । ସମାଚାର ପାଇ ପୁରୋହିତ ଓ ରାଜଗୁରୁ ଆସି ପହଞ୍ଚିଲେ ।

ରାଜ ପୁରୋହିତ ଓ ରାଜଗୁରୁ ରାଜାଙ୍କର ଦୟନୀୟ ଅବସ୍ଥା ଲକ୍ଷ୍ୟକରି ବଡ଼ ଚିନ୍ତିତ ହୋଇପଡ଼ିଲେ । ଉଭୟ ମିଠାକଥା କହି ରାଜାଙ୍କୁ ଧର୍ମତତ୍ତ୍ୱ ସମ୍ବନ୍ଧରେ ବୁଝାଇବାକୁ ଯାଇ କହିଲେ—"ମହାରାଜ ! ଆଜିହେଉ ବା କାଲିହେଉ ଆପଣ କାହାକୁ ହେଲେବି କନ୍ୟା ଦାନ କରିବେ । ଯୁବତୀ କନ୍ୟାକୁ କେହି ସବୁ ସମୟ ପାଇଁ ଘରେ ରଖିପାରେ ନାହିଁ । ଯୁବତୀ କନ୍ୟା ଅଧିକକାଳ ପିତୃଗୃହରେ ରହିବା ଉଚିତ ନୁହେ । ପିତାମାତା, ଅନ୍ୟର କଲ୍ୟାଣ ପାଇଁ ଅତି ସ୍ନେହରେ କନ୍ୟାକୁ ଲାଳନ-ପାଳନ କରନ୍ତି । ଉପଯୁକ୍ତ ବର ପାଇବା ମାତ୍ରେ ପିତା ଯଥାଶୀଘ୍ର କନ୍ୟା ଦାନ କରନ୍ତି ।"

ମହାରାଜ ! ଏ ସଂସାରରେ ବ୍ରାହ୍ମଣଠାରୁ ବଳି ସତ୍‌ପାତ୍ର ନାହାନ୍ତି । ଆପଣଙ୍କ ସୌଭାଗ୍ୟ ଯେ, ଏତେବଡ଼ ତପୋଧନ ମୁନି ସ୍ୱୟଂ ଆପଣଙ୍କ ପାଖକୁ ଆସି କନ୍ୟାର ପାଣି ଗ୍ରହଣ ପାଇଁ ନିବେଦନ କରୁଛନ୍ତି । ଆପଣ ମୋହବଶତଃ ଯଦି କନ୍ୟାଦାନ ନ କରିବେ ତେବେ ମୁନି କ୍ରୁଦ୍ଧହୋଇ ଆପଣଙ୍କ ସର୍ବସ୍ୱ ନଷ୍ଟ କରିଦେବେ । କ୍ରୁଦ୍ଧ ହୋଇଥିବା ତପସ୍ୱୀ ବ୍ରାହ୍ମଣ ହିଂସ୍ର ବ୍ୟାଘ୍ରଠାରୁ ମଧ୍ୟ ଅଧିକ ଭୟଙ୍କର ହୋଇଯାଏ । ତେଣୁ କେବଳ କନ୍ୟାଟି ପାଇଁ ଆପଣ ସମଗ୍ର ରାଜ୍ୟ ଓ ଅସଂଖ୍ୟ ପ୍ରଜାଙ୍କ ଧନଜୀବନକୁ ନଷ୍ଟକରିବା ଉଚିତ ନୁହେଁ । ଆପଣ ଆନନ୍ଦର ସହିତ କନ୍ୟାକୁ ମୁନି ପିପ୍ପଳାଦଙ୍କ ହସ୍ତରେ ସମର୍ପଣ କରନ୍ତୁ ।"

ରାଜା ବୁଦ୍ଧିମାନ୍ ଓ ବିଚାର ସମ୍ପନ୍ନ ଥିଲେ । ଗୁରୁ, ପୁରୋହିତ ଓ ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ରାଜ୍ୟ ପରିଚାଳନା କରୁଥିଲେ, କୁଳ ପୁରୋହିତ ଓ କୁଳଗୁରୁଙ୍କ ପରାମର୍ଶ ଶୁଣି, ବହୁଦୃଷ୍ଟିରୁ ଆଗପଛ ବିଚାର କରି, କନ୍ୟାଦାନଦ୍ୱାରାହିଁ ରାଜ୍ୟର କଲ୍ୟାଣ ସାଧିତ ହେବବୋଲି ବୁଝିପାରି ମୁନିଙ୍କୁ କନ୍ୟା ସମର୍ପଣ ପାଇଁ ସ୍ୱୀକୃତି ଦେଲେ । ମନରେ ପ୍ରସନ୍ନତା ନଥିଲେ ମଧ୍ୟ ସେ ଚିନ୍ତାକଲେ—ଜଣକୁ ତ୍ୟାଗକଲେ ଯଦି ଗଣର ସର୍ବସ୍ୱ ରକ୍ଷାହେବ ତେବେ ଜଣକୁ ତ୍ୟାଗ କରିବା ବାଞ୍ଛନୀୟ ! ଏହାଭାବି ମହାରାଜ ଅନରଣ୍ୟ କନ୍ୟାକୁ ବସ୍ତ୍ର, ଅଳଙ୍କାରରେ ଭୂଷିତ କରି ଶାସ୍ତ୍ରୀୟ ବିଧି ଅନୁସାରେ ମୁନିଙ୍କୁ ଦାନକଲେ । କମଳା ସଦୃଶୀ କନ୍ୟା ପଦ୍ମାଙ୍କୁ ପାଇ ମୁନି ପିପ୍‌ପଳାଦ ଖୁସିହୋଇ ଆଶ୍ରମକୁ ଫେରିଗଲେ । କନ୍ୟାର ବିଦାୟ ପରେ ମହାରାଜ

ନିଜର କୀର୍ତ୍ତିମାନ୍ ପୁତ୍ର ହସ୍ତରେ ସମସ୍ତ ରାଜ୍ୟଭାର ସମର୍ପଣ କରି ତପସ୍ୟା କରିବା-ପାଇଁ ବନକୁ ଚାଲିଗଲେ । କନ୍ୟାର ମାତା ଦୁଃଖ, ଶୋକରେ ଅଭିଭୂତା ହୋଇ ମୃତ୍ୟୁବରଣ କଲେ । ମହାରାଜ ଅନରଣ୍ୟ ମଧ୍ୟ ଭଗବତ୍ ଆରାଧନା କରି ଶେଷରେ ପରଲୋକ ଗମନ କଲେ ।

ମହାମୁନି ପିପ୍ପଲାଦ ନବବିବାହିତା ପତ୍ନୀ ପଦ୍ମାଙ୍କ ସହିତ ଦାମ୍ପତ୍ୟ ସୁଖ ଉପଭୋଗ କରିବାକୁ ଲାଗିଲେ । ସଂସ୍କାରବଶତଃ ତାଙ୍କ ମନରେ ଗୃହସ୍ଥ ହେବାର ଅଭିଳାଷ ଯିବା ଜାତ ହୋଇଥିଲା, ନୋହିଲେ ସେ ସଦାଗ୍ରସ୍ତ, ତପସ୍ୱୀ ମୁନିଥିଲେ । ସେଥିପାଇଁ ସେ ଧର୍ମୀୟ ରୀତିରେ ବିବାହ ହୋଇ ଗାର୍ହସ୍ଥ୍ୟ ଧର୍ମ ପାଳନ କରିବାକୁ ଲାଗିଲେ । କିନ୍ତୁ ସର୍ବଶ୍ରେଷ୍ଠ ସୁନ୍ଦରୀ ପଦ୍ମାପରି ପତ୍ନୀଙ୍କୁ ପାଇ ମଧ୍ୟ ସେ ଲମ୍ପଟ ହୋଇପଡ଼ି ନଥିଲେ । ନିଜର ଚରିତ୍ରକୁ ଆୟତ୍ତରେ ରଖି ସେ ଧର୍ମବ୍ୟବସ୍ଥା ଅନୁରୂପ ବ୍ୟବହାର କରୁଥିଲେ । ପଦ୍ମା ମଧ୍ୟ ମୁନିଙ୍କୁ ନିଜର ସର୍ବସ୍ୱ ବୋଲି ମନେ କରୁଥିଲେ । ସେ ସର୍ବାନ୍ତଃକରଣରେ ମୁନିଙ୍କଠାରେ ଆତ୍ମସମର୍ପଣ କରିଥିଲେ । ମୁନିଙ୍କ ସହିତ ଆଶ୍ରମକୁ ଆସିବା ଦିନଠାରୁ ସେ ରାଜକୁମାରୀ ସୁଲଭ ଅଭିମାନ ପରିତ୍ୟାଗ କରି ଜଣେ ସାଧାରଣ ଗୃହିଣୀ ପରି ସମସ୍ତ କାର୍ଯ୍ୟ ନିଜେ ନିଜେ କରୁଥିଲେ । ସାରାଦିନ ପତିଙ୍କ ସେବାରେ ନିଯୁକ୍ତ ଥିବାର ଦେଖି ମୁନି ପିପ୍ପଲାଦ ପଦ୍ମାଙ୍କ ପ୍ରତି ବିଶେଷ ପ୍ରସନ୍ନ ଥିଲେ । ସେ ପ୍ରତିଦିନ ପୁଷ୍ପଭଦ୍ରା ନଦୀକୁ ଜଳ ଆଣିବା ପାଇଁ ଯାଉଥିଲେ ଏବଂ ଜଳପୂର୍ଣ୍ଣ ପାତ୍ରଧରି ଫେରୁଥିଲେ ।

ଦିନେ ପଦ୍ମା ନଦୀକୁ ଜଳ ଆଣିବା ପାଇଁ ଯାଉଥିବାବେଳେ ବାଟରେ ସୁବର୍ଣ୍ଣମଣ୍ଡିତ ରଥରେ ଜଣେ ତେଜସ୍ୱୀ ଓ ସୁନ୍ଦର ରାଜାଙ୍କୁ ବସିଥିବାର ଦେଖିଲେ । ଘୋର ବନରେ ମଳିନ ବସନ ପରିହିତା ଏକ ଅପୂର୍ବ ସୁନ୍ଦରୀ ନାରୀଙ୍କୁ ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ରଥରୁ ଓହ୍ଲାଇ ଆସି ଦ୍ରୁତ ପଦରେ ପଦ୍ମାଙ୍କ ପାଖରେ ପହଞ୍ଚିଲେ ଓ କହିଲେ—ଦେବି ! ତୁମେ ରାଜରାଣୀ ହେବାପାଇଁ ଯୋଗ୍ୟ । ତୁମେ ଏ ନିର୍ଜନ ବନକୁ କିପରି ଆସିଲ ? ତୁମର ଅନୁପମ ଯୌବନ ଓ ରୂପଲାବଣ୍ୟ ପାଖରେ ଜଣେ ବୃଦ୍ଧ ତାପସ ଆଦୌ ସୁନ୍ଦର ମନେ ହେଉନାହିଁ । ତୁମପ୍ରତି ଏପରି ଅନ୍ୟାୟ କରିବା ଉଚିତ ହୋଇନାହିଁ । ରତିକୁଶଳ ଯୁବକ ମିଳିଲେ ହିଁ ଯୁବତୀର ଯୌବନ ସଫଳ ହୁଏ । ସୁନ୍ଦର ଯୁବକ ପୁରୁଷ ମଧ୍ୟ ଅନୁରୂପ ଯୁବତୀ ପତ୍ନୀ ପାଇଲେ ଜୀବନ ସାର୍ଥକ ହୁଏ ।

ହେ ଭାମିନି ! ମୁଁ ଏକ ଦେଶର ରାଜା । ମୋର ଅନେକ ରାଣୀ ଅଛନ୍ତି । ତୁମେ ମୋ' ସହିତ ଚାଲ ଏବଂ ପାଟରାଣୀ ହୋଇ ସୁଖରେ ଜୀବନକୁ ଉପଭୋଗ

କର । ବୃଦ୍ଧ, ଜର୍ଜର ମୁନିଙ୍କୁ ପରିତ୍ୟାଗ କରି ମୋତେ ତୁମର ଦାସରୂପେ ଗ୍ରହଣ କର । ନିର୍ଜନ ବନ, ଉପବନ, କାନନ, ରମ୍ୟ, ପର୍ବତ, ନଦୀ ଓ ନିର୍ଝର କୂଳରେ ମୋ'ସହିତ ବିହାର କରି ନିଜର ଯୌବନକୁ ସଫଳ କର । ଧର୍ମ, କର୍ମର ପଙ୍କିଳ ପଥକୁ ପରିତ୍ୟାଗ କର । କେତେକ ସ୍ୱାର୍ଥପର ଲୋକ ପତିବ୍ରତା ଧର୍ମର ପ୍ରଚାର କରନ୍ତି । ଯାହାଦ୍ୱାରା ଇନ୍ଦ୍ରିୟସୁଖ ଲାଭହୁଏ ତାହାହିଁ ପ୍ରକୃତ ଧର୍ମ । ଏପରି ନାନା କଥା କହି ସେହି ରାଜା ପଦ୍ମାଙ୍କ ମନକୁ ଚଞ୍ଚଳ କରିବା ପାଇଁ ଚେଷ୍ଟାକଲେ ।

ପଦ୍ମା ଜଣେ ଅଜ୍ଞାତ କୁଳଶୀଳ ପୁରୁଷ ଅଶିଷ୍ଟ ବ୍ୟକ୍ତିଙ୍କର ସୁଲଭ କଥା ଶୁଣି ଅତିଶୟ କ୍ରୋଧାନ୍ୱିତ ହୋଇ କହିଲେ—"ନୀଚ ! ଯଥାଶୀଘ୍ର ଏ ସ୍ଥାନ ପରିତ୍ୟାଗ କର । ପାପାତ୍ମା ! ତୁ ଯଦି କାମଭାବ ମୋ' ପ୍ରତି ପୋଷଣ କରିବୁ ତେବେ ତତ୍‌କ୍ଷଣାତ୍ ଭସ୍ମ ହୋଇଯିବୁ । ଏପରି ଧର୍ମବିରୁଦ୍ଧ କଥା କହିବା ଉଚିତ ନୁହେଁ । ତପୋଧନ ମହାମୁନି ପିପ୍‌ପଳାଦଙ୍କ ପ୍ରତି କଳ୍ପନାରେ ମଧ୍ୟ ମୁଁ ଅଶ୍ରଦ୍ଧା ପ୍ରକାଶ କରିପାରିବି ନାହିଁ । ତୋ' ପରି ସ୍ୱୈରୀ, କାମୁକ, ଲମ୍ପଟ ବ୍ୟକ୍ତିକୁ ଦେଖିବା ମହାପାପ । ତୁ ନୀଚତାର ସୀମା ଲଙ୍ଘନ କରିଛୁ । ମାତୃବୁଦ୍ଧିରେ ମୋତେ ତୁ ଦେଖି-ପାରିଥାନ୍ତୁ । ତୁ ଯେହେତୁ ମୋତେ କାମାନ୍ଧ ହୋଇ ଦେଖିଛୁ ତୋତେ କ୍ଷୟରୋଗ ହେଉ ।"

ଏହା ଶୁଣିବାମାତ୍ରେ କପଟବେଶ ପରିତ୍ୟାଗ କରି ସେହି ପୁରୁଷ ନିଜରୂପ ଧାରଣ କଲେ । ବାସ୍ତବରେ ସେ ରାଜା ନୁହେଁ, ସାକ୍ଷାତ୍ ଧର୍ମଦେବତା ପଦ୍ମାଙ୍କୁ ପରୀକ୍ଷା କରିବା ପାଇଁ ଆସିଥିଲେ । ବୃଦ୍ଧ ପତିଙ୍କୁ ପାଇ ପଦ୍ମାଙ୍କ ମନ ସନ୍ତୁଷ୍ଟ ହୋଇଛି କି ନାହିଁ, ଏହା ଜାଣିବା ଥିଲା ଧର୍ମଙ୍କ ଉଦ୍ଦେଶ୍ୟ । କିନ୍ତୁ ଧର୍ମଦେବତା ହାରିଗଲେ । ପଦ୍ମାଙ୍କ ଅଭିଶାପ ବଚନ ଶୁଣି ସେ ତାଙ୍କ ଆଗରେ ଠିଆହୋଇ ଥରି ଥରି କହିଲେ —ଜନନୀ ! ମୁଁ ହେଉଛି ଧର୍ମଦେବତା । ମୁଁ ପରୀକ୍ଷା କରିବା ପାଇଁ ଆସିଥିଲି । ମୋର ଆଦୌ ଦୁଷ୍ଟଭାବନା ନାହିଁ । ଆପଣ ନିଜର ପାତିବ୍ରତ୍ୟ ପ୍ରଭାବରେ ମୋତେ ଅଭିଶାପ ଦେଲେ । ଏହା ବିଧିର ବିଧାନ, ତେଣୁ ଆପଣ ଉଚିତ କାର୍ଯ୍ୟ କରିଛନ୍ତି । ପରମେଶ୍ୱରଙ୍କ ଇଚ୍ଛା ଅନୁସାରେ ଜଗତର କଲ୍ୟାଣକାରୀ ଶିବ ସୃଷ୍ଟି ପାଇଁ ମୋତେ କ୍ଷୟିଷ୍ଣୁ ହେବାପାଇଁ ଇଚ୍ଛା କରୁଥିଲେ । ଆପଣଙ୍କ ଅଭିଶାପଦ୍ୱାରା ତାହା ପୂର୍ଣ୍ଣ ହୋଇଛି । ଏହି ଘଟଣାକୁ ଆଧାର କରି ସର୍ବେଶ୍ୱର ନାନା ଅବତାର ଗ୍ରହଣ କରିବେ । ଯେଉଁ ପ୍ରଭୁ ଚରାଚର ବିଶ୍ୱକୁ ନିଜର ଲୀଳାଦ୍ୱାରା ପରିପାଳନ କରୁଛନ୍ତି ତାଙ୍କୁ ମୋର ପ୍ରଣାମ ଜଣାଉଛି । ଏହା କହି ଧର୍ମ ଶାନ୍ତଭାବରେ ପତିବ୍ରତାଙ୍କ ଆଗରେ ଠିଆହୋଇ ରହିଲେ ।

ପିପ୍‌ପଲାଦ ମୁନିଙ୍କ ପତ୍ନୀ ପଦ୍ମା ନିଜ ସମ୍ମୁଖରେ ମୂର୍ତ୍ତିମାନ୍ ଧର୍ମଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବିସ୍ମୟାନ୍ୱିତ ହୋଇ ଦେବୀ ପଦ୍ମା କହିଲେ—"ଧର୍ମଦେବ ! ଆପଣ ସମସ୍ତଙ୍କ ପାପପୁଣ୍ୟର ସାକ୍ଷୀ ହୋଇ ମଧ୍ୟ ମୋ' ପ୍ରତି ଅନୁଚିତ ବ୍ୟବହାର କଲେ କାହିଁକି ? ମୋର ଚିତ୍ତକୁ ଆନ୍ଦୋଳିତ କଲେ କାହିଁକି ? ମୁଁ ଅଜ୍ଞାତସାରରେ ଆପଣଙ୍କୁ ଅଭିଶାପ ଦେଇଛି । ସେଥିପାଇଁ ଆପଣ ମୋତେ କ୍ଷମା ଦିଅନ୍ତୁ । ମୋର ଅଭିଶାପ ମିଥ୍ୟା ହେବନାହିଁ । ତେଣୁ ବର୍ତ୍ତମାନ ଏହି ବ୍ୟବସ୍ଥା ହେଉ, ଯାହାଦ୍ୱାରା ସତ୍ୟଯୁଗରେ ଆପଣ ଚାରିପାଦ ଅବସ୍ଥାନ କରିବେ ଏବଂ ତ୍ରେତା, ଦ୍ୱାପର ଓ କଳିରେ ଯଥାକ୍ରମେ ଆପଣଙ୍କ ସ୍ଥିତି ତିନିପାଦ, ଦୁଇପାଦ ଓ ଏକପାଦ ହୋଇ ରହିବ । କଳିଯୁଗ ଶେଷଭାଗରେ ଆପଣଙ୍କର ଚାରିପାଦ ନଷ୍ଟ ହୋଇଯିବ । ପୁଣି ସତ୍ୟଯୁଗରେ ଆପଣ ଚାରିପାଦରେ ଅବସ୍ଥାନ କରିବେ । ଭଗବାନ୍ ଆପଣଙ୍କୁ ରକ୍ଷା କରନ୍ତୁ । ଆପଣ ଏଥର ବିଦାୟ ନିଅନ୍ତୁ । ପତିସେବା କାର୍ଯ୍ୟରେ ମୋର ବିଳମ୍ବ ହେଉଛି ।"

ଏହା ଶୁଣି ଧର୍ମଦେବତା ପ୍ରସନ୍ନ ହୋଇ କହିଲେ—"ଦେବି ! ମୁଁ ତୁମର ପତିବ୍ରତରେ ସନ୍ତୁଷ୍ଟ ହୋଇଛି । ତୁମର ପତି ସୁନ୍ଦର ଯୁବକ ଅବସ୍ଥା ଲାଭ କରନ୍ତୁ ବୋଲି ମୁଁ ବରଦାନ କରୁଛି । ଆପଣ ଦଶପୁତ୍ରର ଜନନୀ ହୁଅନ୍ତୁ । ଆପଣଙ୍କ ପରିବାରରେ ସର୍ବଦା ସମୃଦ୍ଧି ଲାଗିରହୁ । ଆପଣଙ୍କ ମତି ମୋ' ଠାରେ ରହୁ । ଆପଣଙ୍କର କେବେହେଲେ କୌଣସି ବସ୍ତୁର ଅଭାବ ନ ରହୁ । ଆପଣ ସର୍ବଦା ସୌଭାଗ୍ୟବତୀ ହୁଅନ୍ତୁ ।"

ଧର୍ମଙ୍କଠାରୁ ବର ଲାଭ କରି ପଦ୍ମା ସନ୍ତୋଷ ଲାଭ କଲେ । ସେ ଧର୍ମଙ୍କ ପାଦତଳେ ମୁଣ୍ଡ ଲଗାଇ ପ୍ରଣାମ କଲେ ଏବଂ ତାଙ୍କୁ ପ୍ରଦକ୍ଷିଣ କଲେ । ଧର୍ମଙ୍କ ଆଦେଶ ପାଇ ପଦ୍ମା ପୁଷ୍କରିଣୀରୁ ଜଳ ନେଇ ଆଶ୍ରମକୁ ଫେରିଗଲେ । ସେଠାରେ ନିଜର ପତିଙ୍କୁ କାମଦେବ ତୁଲ୍ୟ ସୁନ୍ଦର ରୂପ ଧାରଣ କରି ବସିଥିବାର ଦେଖିଲେ । ଚାରିଆଡ଼େ ସମୃଦ୍ଧିର ସୂଚନା ପ୍ରକାଶ ପାଉଥିଲା । ଏକ ମନୋହର ପ୍ରାସାଦ ଆଗରେ ଦେଖିଲେ । ନିଜର ପ୍ରାଣପ୍ରିୟା ପତ୍ନୀଙ୍କ ପ୍ରଭାବରେ ଏ ସମସ୍ତ ବସ୍ତୁ ମିଳିଥିବାର ଜାଣି ପିପ୍‌ପଲାଦ ଆନନ୍ଦିତ ହୋଇଥିଲେ । ଯଥାସମୟରେ ପଦ୍ମାଙ୍କଠାରୁ ପରମ ତେଜସ୍ୱୀ ଦଶଜଣ ମୁନି ଜନ୍ମଗ୍ରହଣ କରିଥିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଧର୍ମ କିପରି କ୍ଷୟିଷ୍ଣୁ ହେଲେ ତାହା ମୁଁ ଆପଣମାନଙ୍କୁ କହିଲି । କ୍ଷୀଣ ହୋଇଥିବା ଧର୍ମଙ୍କର ପୁନଃ ପ୍ରତିଷ୍ଠା ପାଇଁ ଭଗବାନ୍ ଅବତୀର୍ଣ୍ଣ ହୁଅନ୍ତି ଧରାଧାମରେ । ଯେତେବେଳେ ଯେଉଁ ରୂପର ଆବଶ୍ୟକତା ପଡ଼େ ସେତେବେଳେ ପ୍ରଭୁ ସେହି ରୂପରେ ଅବତୀର୍ଣ୍ଣ ହୋଇ ଧର୍ମ ସ୍ଥାପନା

କରନ୍ତୁ । ଭଗବାନ୍ ମତ୍ସ୍ୟ ଅବତାର ଗ୍ରହଣ କରି ଯେଉଁସବୁ କାର୍ଯ୍ୟ କରିଥିଲେ, ସେ ବିଷୟରେ ମହାରାଜ ପରୀକ୍ଷିତ ପଚାରିବାରୁ ମୋର ଗୁରୁଦେବ ଶୁକଦେବ ଯେଉଁ ଉତ୍ତର ଦେଇଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି । ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶୁଣନ୍ତୁ ।”

## ଛପ୍‌ପୟ

ହୋହି ଧର୍ମକୀ ହାନି ତବ ହ୍ୟୁଁ ହରି ପ୍ରକଟିତ ହୋୱେଁ ।
ତାନି ତ୍ରୁପଟା ଅନ୍ୟ ସମୟ୍ ପୟନିଧି ମହଁ ସୋୱେଁ ।।
ଜବ ଜସ ଅବସର ଲଖେଁ ତବହିଁ ତସ ବେଷ ବନାୱେଁ ।
ନାନା ଲୀଲା କରେଁ ବେଦହୂ ପାର ନ ପାୱେଁ ।।
ନୈମିତ୍ତିକ ଲୟ୍ ଜବ ଭୟୋ, ବ୍ରହ୍ମାଜୀ ନିଦ୍ରିତ ଭୟେ ।
ସତ୍ୟବ୍ରତ ରାଜର୍ଷି ହିତ, ଶ୍ରୀହରି ମଛଲୀ ବନି ଗୟେ ।।



# ମହାରାଜ ସତ୍ୟବ୍ରତ ଓ
# ମତ୍ସ୍ୟରୂପଧାରୀ ଭଗବାନ୍

ଏକଦା କୃତମାଲାୟାଂ କୁର୍ବତୋ ଜଲତର୍ପଣମ୍ ।
ତସ୍ୟାଞ୍ଜଲ୍ୟୁଦକେ କାଚିଚ୍ଛଫର୍ୟେକାଭ୍ୟପଦ୍ୟତ ।।
ସତ୍ୟବ୍ରତୋଽଞ୍ଜଲିଗତାଂ ସହ ତୋୟେନ ଭାରତ ।
ଉତ୍ସସର୍ଜ ନଦୀତୋୟେ ଶଫରୀଂ ଦ୍ରବିଡେଶ୍ୱରଃ ।।

(ଭାଗ-୮-୨୪-୧୨, ୧୩)

## ଛପ୍ପୟ

କୃତମାଲା ମହଁ କରହୁଁ ଦ୍ରବିଡ଼ପତି ଜଲ ତୈଁ ତରପନ ।
ଅଞ୍ଜଲି ମହ ଲଘୁ ମତ୍ସ୍ୟ ନିରଖି କୀୟୋ ଜଲ ଅରପନ ।।
ମଛଲୀ ହ୍ୱୈ କେ ଦୀନ କହେଁ—ନୃପ ରକ୍ଷା କୀଜୈ ।
ଆଇ ତୁମର ଶରନ ସତ୍ୟବ୍ରତ ଆଶ୍ରୟ ଦୀଜୈ ।।
ଦୀନ ବଚନ ସୁନି ଲଇ ନୃପ, କଲସ ରଖି ସୋ ବଢି ଗଈ ।।
ନାଦ, ସରୋବର, ତାଲ ମହଁ, ଧରୀ ତହଁ। ଲମ୍ବୀ ଭଈ ।।

ଭଗବାନ୍, ଇଚ୍ଛା ଅନୁସାରେ ରୂପ ଧାରଣ କରନ୍ତି । କିନ୍ତୁ ଯେତେ ଲୁଚେଇଲେ ମଧ୍ୟ ପ୍ରଭୁଙ୍କ ଅନନ୍ତ ଐଶ୍ୱର୍ଯ୍ୟ ଲୁଚିପାରେ ନାହିଁ । ଅଗ୍ନିକୁ ଯେତେ ପରସ୍ତ କନା ଦେଇ ଗୁଡ଼େଇ ବାନ୍ଧିଲେ ମଧ୍ୟ ତାହା କିଛି ସମୟ ପରେ ପ୍ରକାଶ ପାଇଯାଏ । ସେହିପରି ଭଗବାନ୍ ଯେଉଁ ଦେହରେ ଅବତାର ଗ୍ରହଣ କଲେ ମଧ୍ୟ ନିଜ ମହିମାରେ ପ୍ରକଟିତ ହୁଅନ୍ତି । ସେ ଭାଗ୍ୟବାନ୍ ଲୋକମାନଙ୍କୁ ନିଜର ଦର୍ଶନ ଦେଇ କୃତାର୍ଥ କରନ୍ତି । ଯେଉଁମାନେ ପ୍ରଭୁଙ୍କ ସାକ୍ଷାତ ଲାଭ କରିଛନ୍ତି ସେମାନେ ତାଙ୍କ ଇଚ୍ଛାର ଅଧୀନ ହୋଇଯାନ୍ତି । ତାଙ୍କ ଇଚ୍ଛା ବିନା ଗଛର ପତ୍ରଟିଏ ବି ହଲେନାହିଁ । ତଥାପି

ଅଜ୍ଞାନ ବ୍ୟକ୍ତିଗଣ ପ୍ରଭୁଙ୍କର ଏଇ ବିଭୂତି ଓ ରହସ୍ୟକୁ ବୁଝିପାରନ୍ତି ନାହିଁ । ପ୍ରଭୁଙ୍କ ଆଶ୍ରିତ ଭକ୍ତ ଏହି ସତ୍ୟକୁ ବୁଝି, ସବୁ କାର୍ଯ୍ୟରେ ତାଙ୍କର ଅଦେଖା ହାତର ଇଙ୍ଗିତକୁ ଅନୁଭବ କରି ଶାନ୍ତିଭାବରେ ଜୀବନଯାପନ କରେ । ଜ୍ଞାନୀ ଅଜ୍ଞାନ ଓ ସାଧାରଣ ତଥା ଭକ୍ତଙ୍କ ମଧ୍ୟରେ ଏହି ପାର୍ଥକ୍ୟ ଦେଖାଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରଚଳିତ ଥିବା ଶ୍ୱେତବାରାହ କଳ୍ପ ପୂର୍ବରୁ ଏକ କଳ୍ପରେ ବ୍ରହ୍ମାଙ୍କର ଘଟଣାଟିଏ ହୋଇଥିଲା । ରାତି ଆସିବାପରେ ବ୍ରହ୍ମା ଯେତେବେଳେ ଯୋଗନିଦ୍ରାରେ ଶୋଇବା ପାଇଁ ଉଦ୍ୟତ ହେଲେ ସେତେବେଳେ ତାଙ୍କ ମୁଖରୁ ହୟଗ୍ରୀବ ନାମକ ରାକ୍ଷସ ବାହାରି ହଠାତ୍ ପଳାୟନକଲା । ଘରର ଦ୍ୱାର ଖୋଲା ଦେଖି ଚୋର ଯେପରି ପଶିଯାଏ ଦୈତ୍ୟ ସେହିପରି ବାହାରକୁ ଆସି ଦେଖିଲା ବେଦ ପଡ଼ି ରହିଛି । ଯେତିକି ମିଳିଲା ସେତିକି ଯଥେଷ୍ଟ ବୋଲି ଭାବି ଦୈତ୍ୟ ବେଦକୁ ନେଇ ପାତାଳରେ ଲୁଚିଗଲା । ବ୍ରହ୍ମା ଶୋଇ ପଡ଼ିଥିବାରୁ ବେଦ ଚୋରି ହେବାର ଜାଣିପାରିଲେ ନାହିଁ । କିନ୍ତୁ ସମସ୍ତେ ଶୋଇବା ପରେ ବି ଯେ ଜାଗ୍ରତ ଥାଆନ୍ତି, ସେହି ହରି ଏସବୁ ଘଟଣା ଦେଖୁଥିଲେ । ତେଣୁ ମତ୍ସ୍ୟରୂପ ଧରି ପାତାଳରେ ପ୍ରବେଶ କଲେ ଏବଂ ହୟଗ୍ରୀବ ଦୈତ୍ୟକୁ ମାରି ବେଦକୁ ଉଦ୍ଧାର କରିଥିଲେ ।

ମହର୍ଷି ଶୌନକ ଏହା ଶୁଣି ସୂତଙ୍କୁ ପଚାରିଲେ—ବ୍ରହ୍ମନ୍ ! ଆପଣ ଯାହା କହିଲେ ମୁଁ ଆଦୌ ବୁଝିପାରିଲି ନାହିଁ । ପ୍ରଳୟ ଘଟିଗଲା ପରେ ସେ ରାକ୍ଷସ ଆସିଲା କେଉଁଠୁ ? କାରଣ ପ୍ରଳୟ ପରେ ତ କୌଣସି ଜୀବ ରହିବା କଥା ନୁହେଁ । ଆପଣ କହୁଛନ୍ତି ବ୍ରହ୍ମାଙ୍କ ପାଖରେ ପଡ଼ିଥିବା ବେଦକୁ ସେ ରାକ୍ଷସ ଚୋରିକରି ନେଇଗଲା । ବେଦ ଗ୍ରନ୍ଥକୁ ନେଇ ପାତାଳକୁ ଯିବାବେଳେ ତାହା ଜଳରେ ନଷ୍ଟ ହେଲାନାହିଁ କିପରି ? ଭଗବାନ୍ ମତ୍ସ୍ୟରୂପରେ କିପରି ବେଦକୁ ଉଦ୍ଧାର କଲେ, ସେ ଦୈତ୍ୟ ରହିଲା କେଉଁଠି ? କାରଣ ସେତେବେଳେ ତ ପାତାଳ ବୋଲି କିଛି ନଥିଲା ।

ଶୌନକଙ୍କ ପ୍ରଶ୍ନଶୁଣି ହସି ହସି ମହର୍ଷି ସୂତ କହିଲେ—ମହାଶୟ ! ଏସବୁ ସୂକ୍ଷ୍ମ ଜଗତର କଥା । ପ୍ରଳୟ କାଳରେ ଜୀବ କଣ ପୁରାପୁରି ବିଲୋପ ପାଇଯାନ୍ତି ? ସମସ୍ତେ ବ୍ରହ୍ମାଙ୍କ ଉଦରରେ ବାସ କରନ୍ତି । ଯେପରି ଜଣେ ଦୋକାନୀ ଦୋକାନରେ ବିଭିନ୍ନ ବସ୍ତୁକୁ ଦିନରେ ସଜାଇ ରଖେ ଓ ରାତିହେଲେ ଦୋକାନ ବନ୍ଦକରି ଶୋଇପଡ଼େ ଏବଂ ସକାଳେ ପୁଣି ଦୋକାନକୁ ପୂର୍ବପରି ସଜାଇ ଦିଏ, ସେହିପରି କଳ୍ପକାଳ ଆରମ୍ଭରେ କର୍ମଫଳ ଅନୁଯାୟୀ ଜୀବ ପୁଣି ସୃଷ୍ଟି ହୋଇଯାଆନ୍ତି । ବ୍ରହ୍ମା ଦୋକାନୀ ପରି ଜଗତର ସମସ୍ତ ବସ୍ତୁକୁ ପୂର୍ବପରି ତିଆରି କରି ସଜେଇ

ରହିଥାନ୍ତି । ଏହିପରି ଜୀବ ପ୍ରବାହ ଅନାଦି କାଳରୁ ଚାଲିଆସୁଛି । ବହୁ ଦୈତ୍ୟ, ଦାନବ, ଦେବତା କଳ୍ପଜୀବୀ ହୋଇଥାନ୍ତି । କେତେକ ମଧ୍ୟ ବ୍ରହ୍ମାଙ୍କ ପରି ଦୀର୍ଘାୟୁ ଥାଆନ୍ତି । ଅନେକ ଏକାଧିକ ବ୍ରହ୍ମାଙ୍କୁ ଦେଖିଛନ୍ତି ଅର୍ଥାତ୍ ବ୍ରହ୍ମାଙ୍କଠାରୁ ମଧ୍ୟ ଅଧିକକାଳ ରହିଛନ୍ତି । ପ୍ରଳୟ ହୋଇଗଲେ ମଧ୍ୟ ଅନେକ ଦୈତ୍ୟ, ଦେବତା, ମୁନି, ଋଷି ସୂକ୍ଷ୍ମ ଶରୀରରେ ଅବସ୍ଥାନ କରନ୍ତି ।

ସମସ୍ତ ବସ୍ତୁର ଅଧିଷ୍ଠାତୃ ଦେବତା ଅଛନ୍ତି । ବେଦର ମଧ୍ୟ ଅଧିଷ୍ଠାତ୍ରୀ ଦେବତା ଅଛନ୍ତି । ପୁସ୍ତକରେ ବୈଦିକ ଜ୍ଞାନର ଉଲ୍ଲେଖ ଥାଏ, କିନ୍ତୁ ପୁସ୍ତକକୁ ବେଦ କୁହାଯାଏ ନାହିଁ । ଆମେ ଯେପରି 'ରା' ଓ 'ମ' ଲେଖୁ ଏବଂ କେହି ପଚାରିଲେ ଆମେ କହୁ ରାମ । କିନ୍ତୁ ବାସ୍ତବରେ ତାହା ରାମ ନୁହେଁ । ସେ ଅକ୍ଷରଠାରୁ ରାମଙ୍କ ସ୍ଥିତି ଅଲଗା । ତଥାପି ସେହି ଲେଖାରୁ ଆମେ ରାମଙ୍କୁ ଅନୁଭବ କରୁଁ । ସେହିପରି ବେଦର ପୋଥି ବେଦର ଦ୍ୟୋତକ । ଯେତିକି ସଂହିତା ଆମେ ଜାଣିଛୁ ବେଦ ସେତିକିରେ ସୀମାବଦ୍ଧ ନୁହେଁ । ବେଦ ଅନନ୍ତ । ହୟଗ୍ରୀବ ରାକ୍ଷସ ସୂକ୍ଷ୍ମ ଶରୀରରେ ବେଦର ଅଧିଷ୍ଠାତୃ ଦେବତାଙ୍କୁ ଚୋରିକରି ନେଇଥିଲା । ବ୍ରହ୍ମା ବେଦହୀନ ହୋଇଗଲେ । ବେଦ ବିନା ସେ ଯଜ୍ଞ କିପରି କରିବେ, ସୃଷ୍ଟି କିପରି କରିବେ ? ସୃଷ୍ଟିର ଧାରା ବନ୍ଦ ନହେବା ପାଇଁ ଭଗବାନ୍ ମତ୍ସ୍ୟ ଅବତାର ଧାରଣ କରି ବେଦକୁ ଉଦ୍ଧାର କଲେ । ସେତେବେଳେ ପୃଥିବୀ ଜଳମଗ୍ନ ଥିଲା । ସାତସମୁଦ୍ର ଏକାକାର ହୋଇ ଯାଇଥିଲେ । ସେହି ଦୈତ୍ୟ ଜଳ ଭିତରକୁ ଯାଇ ଲୁଚିଗଲା । ମାଛ କେବଳ ଅଗାଧ ଜଳରେ ପ୍ରବେଶ କରିପାରେ । ସେଥିପାଇଁ ଭଗବାନ୍ ମତ୍ସ୍ୟରୂପ ଧାରଣ କରିଥିଲେ ।

ମହାରାଜ ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ—ପ୍ରଭୋ ! ଆପଣ ମତ୍ସ୍ୟାବତାର କଥା ଯଥାକ୍ରମେ ବର୍ଣ୍ଣନା କରନ୍ତୁ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଶ୍ୱେତବାରାହ କଳ୍ପ ପୂର୍ବରୁ ସତ୍ୟବ୍ରତ ନାମରେ ଜଣେ ରାଜା ଥିଲେ । ସେ ବଡ଼ ଧାର୍ମିକ, ସତ୍ୟବାଦୀ ଓ ଯଶସ୍ୱୀ ରାଜା ଥିଲେ । ଭାରତବର୍ଷର ଦକ୍ଷିଣରେ ଥିବା ଦ୍ରାବିଡ଼ ଦେଶର ସେ ଥିଲେ ଅଧୀଶ୍ୱର । ସେ ରାଜ୍ୟସୁଖ ଭୋଗ ପରିତ୍ୟାଗ କରି କୃତମାଳା ନାମକ ପୁଣ୍ୟତୋୟା ନଦୀକୂଳରେ ରହି ଭଗବଦ୍ ଉପାସନା କରୁଥିଲେ । ଫଳମୂଳ ଆହାର ତ୍ୟାଗ କରି ସେ କେବଳ ଜଳ ପାନକରି ତପସ୍ୟାରତ ଥିଲେ ।

ଦିନେ ରାଜର୍ଷି ସତ୍ୟବ୍ରତ କୃତମାଳା ନଦୀ ଜଳରେ ପଶି ଋଷି ତଥା ପିତୃଗଣଙ୍କ ଉଦ୍ଦେଶ୍ୟରେ ତର୍ପଣ କରୁଥିଲେ । ଏହି ସମୟରେ ତାଙ୍କ ଅଞ୍ଜଳି ଜଳରେ ଏକ

କ୍ଷୁଦ୍ରମତ୍ସ୍ୟ ଥିବାର ସେ ଦେଖିଲେ । ରାଜା ଭାବିଲେ—ମାଛଟି ଖୁବ୍ ସୁନ୍ଦର ଦେଖା-ଯାଉଛି । କିନ୍ତୁ ଏହାର ଆଧାର ହେଉଛି ଜଳ । ଯଦି ଏହାକୁ ଶୁଖିଲାକୁ ଫିଙ୍ଗିଦେବି ତେବେ ଏହା ନିଶ୍ଚୟ ମରିଯିବ । ତେଣୁ ସେ ମାଛଟିକୁ ସେଇ ନଦୀରେ ଛାଡ଼ିଦେଲେ । ଏହାପରେ ମାଛଟି ମଣିଷ ସ୍ୱରରେ କହିଲା—"ରାଜନ୍ ! ଆପଣ ଜଣେ ଧର୍ମାତ୍ମା ପୁରୁଷ । ଦୀନଦରିଦ୍ରମାନଙ୍କ ପ୍ରତି ଆପଣ ଦୟାଶୀଳ ଓ ଶରଣଦାତା । ଶରଣାର୍ଥୀକୁ ରକ୍ଷାକରିବା ଆପଣଙ୍କ ଧର୍ମ । ଆପଣ ମୋତେ ପରିତ୍ୟାଗ କରୁଛନ୍ତି କିପରି ? ଦେଖନ୍ତୁ, ବଡ଼ ମାଛ ଗ୍ରେଟ ମାଛକୁ ଖାଇଯାଆନ୍ତି । ଗ୍ରେଟଗୁଡ଼ ସମସ୍ତେ ବଡ଼ ହୁଅନ୍ତି । ମୁଁ ଆତ୍ମସ୍ୱଜନ ହୋଇ ବୁଲୁଛି । ଆପଣ ମୋତେ ରକ୍ଷା କରନ୍ତୁ । ନୋହିଲେ ବଳୁଆ ମାଛଗୁଡ଼ିକ ମୋତେ ଖାଇଯିବେ ।"

ମହାରାଜ ସତ୍ୟବ୍ରତ ମାଛଠାରୁ ମଣିଷ ସୁଲଭ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ-ଗଲେ । ତଥାପି ସେ ମାଛଟିକୁ ସାଧାରଣ ମାଛବୋଲି ଭାବି ତାକୁ ରକ୍ଷା କରିବା ପାଇଁ ମନେ ମନେ ସ୍ଥିରକଲେ । ସେ ପୁଣି ମାଛଟିକୁ ଜଳରୁ ଉଠାଇ ଆଣିଲେ । ସ୍ନାନ ସାରି କମଣ୍ଡଳୁରେ ଜଳ ଆଣିବା ଏକ ଆବଶ୍ୟକ କର୍ତ୍ତବ୍ୟ । ତେଣୁ ଫେରିବା-ବେଳେ ସେ କମଣ୍ଡଳୁରେ ଜଳ ପୂର୍ଣ୍ଣକରି ମାଛଟିକୁ ସେଥିରେ ଛାଡ଼ିଦେଲେ ଓ କମଣ୍ଡଳୁ ଧରି ଆଶ୍ରମକୁ ଆସିଲେ । ଆଶ୍ରମରେ ପହଞ୍ଚି ରାଜା ଦେଖିଲେ ମାଛଟି ବଡ଼ ହୋଇଯାଇଛି ଏବଂ କମଣ୍ଡଳୁରେ ତା' ପାଇଁ ସ୍ଥାନ ହେଉନାହିଁ । ସେ ମାଛକୁ କମଣ୍ଡଳୁରୁ ବାହାର କରି ଏକ ବଡ଼ କଳସୀରେ ଛାଡ଼ିଦେଲେ ଏବଂ ସାୟଂକୃତ୍ୟ ଶେଷ କରି ଶୋଇପଡ଼ିଲେ ।

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଭଗବାନ୍ କିପରି ନିଜର କାୟା ବିସ୍ତାର କଲେ ତାହା ମୁଁ କହିବି । ଆପଣ ଆନନ୍ଦରେ ସେହି ପୁଣ୍ୟପ୍ରଦ ପ୍ରସଙ୍ଗ ଶୁଣନ୍ତୁ ।

## ଛପ୍‌ପୟ

ଏକ ଦିବସ ମହିଁ ମତ୍ସ୍ୟ ବଢ଼େ୍ୟା ନୃପ ଚକିତ ଭୟେ ଅତି ।<br>
ବାଢ଼େ କ୍ଷଣ କ୍ଷଣ ମାହିଁ ବୃଦ୍ଧି କୀ ଅତି ଅଦ୍‌ଭୁତ ଗତି ।।<br>
ଶତ ଯୋଜନ ସର ଘୋର ଲୟୋ ନହିଁ ବୃଦ୍ଧି ରୁକୀ ଜବ ।<br>
ହେଁ କେ ଅତି ହୀ ଦୀନ ମୀନ ନୃପ ତେଁ ବୋଲୀ ତବ ।।<br>
ନୃପ ! ନିବାହ ନ ହୋହି ମମ, ସର ଛୋଟୋ ହୌଁ ବଡ଼ୀ ବହୁ ।<br>
କୈସେ ଜୀବିତ ରହି ସକୂଁ, ସୋଚ ସମୁଝି ଭୂପତି କହହୁ ।।

# ମତ୍ସ୍ୟାବତାର

ନୈବଂବୀର୍ଯ୍ୟୋ ଜଳଚରୋ ଦୃଷ୍ଟୋଽସ୍ମାଭିଃ ଶ୍ରୁତୋଽପି ଚ ।
ଯୋ ଭବାନ୍ ଯୋଜନଶତମହ୍ନାଭିବ୍ୟାନଶେ ସରଃ ॥
ନୂନଂ ତ୍ୱଂ ଭଗବାନ୍ ସାକ୍ଷାଦ୍ଧରିର୍ନାରାୟଣୋଽବ୍ୟୟଃ ।
ଅନୁଗ୍ରହାୟ ଭୂତାନାଂ ଧତ୍ସେ ରୂପଂ ଜଳୌକସାମ୍ ॥

( ଭାଗ-୮-୨୪-୨୬, ୨୭ )

## ଛପ୍ପୟ

ବିସ୍ମିତ ନୃପବର ଭୟୋ ବିହଁସି କେ ବୋଲେ ବାନୀ ।
ନହୀ ମତ୍ସ୍ୟ ହୌଁ ଆପ ବିଷ୍ଣୁ ଅବ୍ୟୟ ହୌଁ ଜାନୀ ॥
କାହେ କାରନ ଧରୟୋ ରୂପ ମଛଲୀ କୋ ପ୍ରଭୁବର ।
ନିତ ନବ ଲୀଳା କରୌ ଭକ୍ତ ଭୟହାରୀ ସୁଖକର ॥
ହରି ହଁସି ବୋଲେ ସାତହିନ, ମହୁଁ ହୋଏଁଗେ ତ୍ରୈଲୋକ୍ୟଲୟ ।
ଏକ ହୋହିଁ ସାତୋଁ ଉଦଧି, ଜଗତ୍ ହୋହି ସବ ସଲିଳମୟ ॥

ଭଗବାନଙ୍କ ପରାକ୍ରମ ଅଗାଧ, ତା'ର ସୀମା ନାହିଁ । କିନ୍ତୁ କ୍ଷୁଦ୍ର ପ୍ରାଣୀ ନିଜକୁ ସର୍ବେସର୍ବା ବୋଲି ଭାବି ନିଜ ନିଜ ସହିତ ଅନ୍ୟକୁ ତୁଳନା କରିବାରେ ଅଭ୍ୟସ୍ତ ହୋଇଯାଇଛି । ସେ ନିଜ ସହିତ ଅନ୍ୟର ତୁଳନା କରେ । ଭଗବାନ୍ ବାମନ ଯେତେବେଳେ ନିଜ ପାଦ ମାପରେ ତିନିପାଦ ଭୂମି ମାଗିଲେ ମହାରାଜ ବଳି ହସି ହସି ଗଡ଼ିଗଲେ । କାରଣ ବଟୁ ନିଜ ପାଦରେ ତିନିପାଦ ଭୂମି ମାଗିବା ତାଙ୍କର ପସନ୍ଦ ହେଲନାହିଁ । ସେ ନିଜ ପାଦ ସହିତ ବଟୁଙ୍କ ପାଦର ତୁଳନା ମନେ ମନେ କରି ବସିଲେ । କିନ୍ତୁ ଆମେ ଯେତେବେଳେ ପର ଆପଣାର ଭେଦଭାବ ମନରୁ ପରିତ୍ୟାଗ କରି ପ୍ରଭୁ ଅନନ୍ତ, ଅଚ୍ୟୁତଙ୍କ ସହିତ ତୁଳନା କରିବସିବା ସେତେବେଳେ ବିସ୍ମୟ ଓ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ରହିବ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ସତ୍ୟବ୍ରତ ମାଛଟିକୁ ରାତରେ ଏକ ବଡ଼ କଳସୀରେ ରଖିଦେଇ ଥିଲେ । ସକାଳେ ସେ ଉଠିବା ମାତ୍ରେ ମତ୍ସ୍ୟ ଭଗବାନ୍ ସେହି କଳସୀରେ ଥାଇ କହିଲେ—ରାଜନ୍ ! ଆପଣ ଯେତେବେଳେ ମୋତେ ଆଶ୍ରୟ ଦେଇଛନ୍ତି ସେତେବେଳେ ଏକ ଶ୍ରେଷ୍ଠ ପାତ୍ରରେ ମୋତେ ଜବରଦସ୍ତ ରଖି କଷ୍ଟ ଦେଉଛନ୍ତି କାହିଁକି ? ମୁଁ ଏ କଳସୀ ଭିତରେ ରହିପାରୁ ନାହିଁ । ଏକ ବଡ଼ ପୋଖରୀରେ ମୋତେ ନେଇ ରଖନ୍ତୁ । ମତ୍ସ୍ୟଙ୍କ ଅନୁରୋଧ ରକ୍ଷାକରି ସତ୍ୟବ୍ରତ ତାଙ୍କୁ ପାଖରେ ଥିବା ଏକ ପୋଖରୀରେ ଛାଡ଼ି ସ୍ନାନ କରିବାକୁ ଚାଲିଗଲେ ।"

ରାଜର୍ଷି ସତ୍ୟବ୍ରତ ସ୍ନାନସାରି ଫେରିବା ବାଟରେ ପୁଣି ମତ୍ସ୍ୟଙ୍କ ବାଣୀ ଶୁଣିଲେ । ମତ୍ସ୍ୟ କହିଲେ—"ରାଜନ୍ ! ଏହି ଶ୍ରେଷ୍ଠ ପୋଖରୀରେ ମୁଁ ରହିପାରୁ ନାହିଁ । ମୋତେ "ଏକ ବଡ଼ ପୋଖରୀରେ ନେଇ ଛାଡ଼ନ୍ତୁ ।"

ରାଜା ଦେଖିଲେ ଏକ ଯୋଜନ ବିସ୍ତୃତ ସରୋବରରେ ମତ୍ସ୍ୟର କଳେବର ପୂର୍ଣ୍ଣ ହୋଇଯାଇଛି । ସେ ଚିନ୍ତା କରିବାକୁ ଲାଗିଲେ—"ଏତେବଡ଼ ମାଛକୁ ମୁଁ ଏକୁଟିଆ ଉଠେଇବି କିପରି ?" ମହାରାଜଙ୍କ ମନରେ ଏଇ ଭାବନା ଆସିବାମାତ୍ରେ ମତ୍ସ୍ୟ ଭଗବାନ୍ କହିଲେ—"ରାଜନ୍ ! ଆପଣ ମୋତେ ଉଠାଇ ନିଅନ୍ତୁ । ଚିନ୍ତା-କରିବାର କିଛି କାରଣ ନାହିଁ ।"

ରାଜା ଯେତେବେଳେ ଉଠାଇଲେ ସେତେବେଳେ ମାଛଟି ଫୁଲପରି ହାଲୁକା ହୋଇଗଲା । ରାଜା ମାଛକୁ ନେଇ ଏକ ଦଶଯୋଜନ ବିସ୍ତୃତ ସରୋବରରେ ଛାଡ଼ିଦେଲେ । ମୁହୂର୍ତ୍ତିକ ମଧ୍ୟରେ ରାଜାଙ୍କ ଆଖି ଆଗରେ ମାଛଟି ସେହି ପୋଖରୀକୁ ବ୍ୟାପିଗଲେ । ରାଜା ପୁଣି ମାଛକୁ ଉଠାଇଲେ । ଦଶଯୋଜନ ପରିବ୍ୟାପ୍ତ ମାଛଟି ଫୁଲଟିଏ ପରି ମନେହେଲା । ରାଜା ମାଛକୁ ନେଇ ପ୍ରଥମେ ପଚିଶ ଯୋଜନ ଓ ପରେ ପରେ ଶହେ ଯୋଜନ ବିସ୍ତୃତ ସରୋବରରେ ଛାଡ଼ିଲେ । ସେଠାରେ ମଧ୍ୟ ସ୍ଥାନ ଯଥେଷ୍ଟ ନ ହେବାର ଦେଖି ମତ୍ସ୍ୟ କହିଲେ—ରାଜନ୍ ! ମୋତେ ଏକ ଅକ୍ଷୟ ଜଳରାଶିପୂର୍ଣ୍ଣ ସ୍ଥାନରେ ଛାଡ଼ନ୍ତୁ । ମତ୍ସ୍ୟଙ୍କ ଇଚ୍ଛା ଅନୁସାରେ ରାଜା ସତ୍ୟବ୍ରତ ମାଛକୁ ନେଇ ସମୁଦ୍ରରେ ପକାଇଦେଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଶହେ ଯୋଜନ ବିସ୍ତୃତ ହୋଇ ମଧ୍ୟ ମତ୍ସ୍ୟ ଏକ ବଡ଼ ଫୁଲପରି ନରମ ଓ ହାଲୁକା ମନେ ହୋଇଥିଲେ ।

ସମୁଦ୍ରରେ ଛାଡ଼ିଦେବା ପରେ ମତ୍ସ୍ୟ କହିଲେ—"ରାଜନ୍ ! ଆପଣ ମୋତେ ସମୁଦ୍ରରେ ଛାଡ଼ିଦେଲେ ମଧ୍ୟ ନିରାପଦ କରିବେ ନାହିଁ । ମୋତେ ଏଠାରେ

କେହି ଖାଇଦେଇପାରେ । ମହାରାଜା ସତ୍ୟବ୍ରତ ଫୁଲପରି ହାଲୁକା ହୋଇ ଉଠିଆସି-ଥିବା ଶତଯୋଜନ ପରବ୍ୟାପ୍ତ ମତ୍ସ୍ୟଙ୍କ ଧୀନତା ପୂର୍ଣ୍ଣ ବଚନ ଶୁଣି ଚିନ୍ତା କରିବାକୁ ଲାଗିଲେ । ସେ ଭାବିଲେ, ଯେ ଦିନକ ମଧ୍ୟରେ ଶହେ ଯୋଜନ ବଢ଼ିପାରେ, ଯେ ମଣିଷ ରୂପେ ସ୍ପଷ୍ଟ ଭାବରେ କଥା କହିପାରେ, ସେ ସାଧାରଣ ଜଳଚର ନୁହେଁ । ଏ ଯେ ସାକ୍ଷାତ୍ ନାରାୟଣ, ଏଥିରେ ସନ୍ଦେହ ନାହିଁ । ତେଣୁ ବିନୀତ ହୋଇ କହିଲେ—ପ୍ରଭୋ ! ଆପଣ ମତ୍ସ୍ୟ ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ଆପଣଙ୍କର କାର୍ଯ୍ୟ ଅଲୌକିକ, ଅସାଧାରଣ, ଆପଣ କିଏ ? ମତ୍ସ୍ୟ ରୂପରେ ମୋତେ ମୋହଗ୍ରସ୍ତ କରୁଛନ୍ତି କାହିଁକି ? ଏପରି ଅପାର ବଳ, ପରାକ୍ରମ, ଐଶ୍ୱର୍ଯ୍ୟ ମୁଁ ଅନ୍ୟ କୌଣସି ଜଳଚରଠାରେ ଏପର୍ଯ୍ୟନ୍ତ ଦେଖିନାହିଁ । ଗୋଟିଏ ଦିନରେ ଆପଣ ନିଜର କଳେବରକୁ ଶହେ ଯୋଜନ ପର୍ଯ୍ୟନ୍ତ ବଢ଼ାଇଛନ୍ତି । ଆପଣ ଯେ ସାଧାରଣ ଜୀବ ନୁହନ୍ତି ଏହା ମୁଁ ଜାଣିପାରୁଛି । ମୋର ମନ କହୁଛି, ଆପଣ ସାକ୍ଷାତ୍ ନାରାୟଣ । ଆପଣ ଅଚ୍ୟୁତ, ଅବିନାଶୀ ଭୂମାପୁରୁଷ । ତଥାପି ଆପଣ କିଏ, କହନ୍ତୁ ।”

ଭଗବାନ୍ ମତ୍ସ୍ୟ ହସି ହସି କହିଲେ—“ମୁଁ ଜନ୍ମଗ୍ରହଣ କରିଛି । ଆପଣ ମୋତେ ଅଜନ୍ମା, ଅଚ୍ୟୁତ ବୋଲି କହୁଛନ୍ତି କିପରି ?”

ରାଜର୍ଷି ସତ୍ୟବ୍ରତ କହିଲେ—ପ୍ରଭୋ ! ଆପଣ ଅଜ ହୋଇ ମଧ୍ୟ ଲୋକ କଲ୍ୟାଣ ସାଧନ ପାଇଁ ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତି । ଆପଣ ଅଜନ୍ମା ହୋଇ ମଧ୍ୟ ଧର୍ମସଂସ୍ଥାପନ ପାଇଁ ଜନ୍ମଗ୍ରହଣ କରନ୍ତି । ଜୀବମାନଙ୍କ ଉପରେ ଦୟା ପ୍ରଦର୍ଶନ ପାଇଁ ଆପଣ ଜଳଚର ରୂପ ଧାରଣ କରିଛନ୍ତି ।”

ରାଜାଙ୍କ କଥାଶୁଣି ମତ୍ସ୍ୟ ଭଗବାନ୍ କହିଲେ—“ରାଜନ୍ ! ଆପଣ ସତ୍ୟ ଓ ସଂକଳ୍ପ ସ୍ୱରୂପ ! ଆପଣଙ୍କ ବାକ୍ୟ ଅସତ୍ୟ ନୁହେଁ ।”

ଭଗବାନ୍ ମତ୍ସ୍ୟାବତାର ଧାରଣ କରିଛନ୍ତି ବୋଲି ରାଜା ନିଶ୍ଚିତଭାବେ ଜାଣିଲେ । ଭଗବାନ୍‌ଙ୍କର ଭକ୍ତବାତ୍ସଲ୍ୟକୁ ସ୍ମରଣ କରି ସେ ଆନନ୍ଦିତ ହେଲେ । ତାଙ୍କ ଆଖିରୁ ଆନନ୍ଦର ଅଶ୍ରୁଧାରା ବହିଗଲା । ଦେହ ରୋମାଞ୍ଚିତ ହୋଇଉଠିଲା । ସେ ଗଦ୍‌ଗଦ କଣ୍ଠରେ ପ୍ରଭୁଙ୍କୁ ସ୍ତୁତି କରିବାକୁ ଲାଗିଲେ । ସେ କହିଲେ—“ପ୍ରଭୋ ! ଆମପରି ଶରଣାଗତ ଭକ୍ତମାନଙ୍କର ଆପଣହିଁ ଏକମାତ୍ର ଗତି, ଆପଣ ଆମର ସର୍ବସ୍ୱ । ଆପଣ ଏହି ଚରାଚର ବିଶ୍ୱର ସ୍ରଷ୍ଟା । ନାନା ଅବତାରରେ ଅବତୀର୍ଣ୍ଣ ହୋଇ ଆପଣ ବିଶ୍ୱକୁ ପାଳନ କରୁଛନ୍ତି ଏବଂ ଶେଷରେ ଆପଣ ରୁଦ୍ର ରୂପ ଧାରଣପୂର୍ବକ ସଂହାର କରୁଛନ୍ତି । ଆପଣ ଯାହା କରନ୍ତି ସବୁକିଛି ପ୍ରାଣୀର ମଙ୍ଗଳ ପାଇଁ କରନ୍ତି । ହେ

ଅଶରଣ ଶରଣ ! ଆପଣ କାହିଁକି ବିଶେଷ ଜଳଚର ରୂପେ ଅବତାର ଧାରଣ କରିଛନ୍ତି ତାହା ଜାଣିବା ପାଇଁ ମୋର ଇଚ୍ଛା ଜାତ ହେଉଛି । ନିଜର ଅଧମ ଦାସକୁ ଯେତେବେଳେ ଆପଣ ନିଜର ବୋଲି ଗ୍ରହଣ କରିଛନ୍ତି ସେତେବେଳେ ଆପଣଙ୍କୁ ଛାଡ଼ି ଆମେ କାହାର ଆଶ୍ରୟ ନେବା ? ଜଗତରେ ଆପଣହିଁ ଆଶ୍ରୟର ଏକମାତ୍ର ସ୍ଥଳ । ଆପଣ ଏହି ବିଶେଷ ଅବତାର ଧାରଣର କାରଣ କହି ମୋତେ ନିଜର ସେବକ ରୂପେ ଗ୍ରହଣ କରନ୍ତୁ ।”

ମତ୍ସ୍ୟରୂପଧାରୀ ଭଗବାନ୍ ରାଜା ସତ୍ୟବ୍ରତଙ୍କୁ କହିଲେ—“ରାଜନ୍ ! ମୁଁ ପ୍ରଳୟର ବନ୍ୟାରୁ ତୁମକୁ ରକ୍ଷାକରିବା ପାଇଁ ଆସିଛି ।”

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—“ପ୍ରଭୋ ! କେଉଁ ବନ୍ୟା ?”

ଭଗବାନ୍ ବୁଝାଇବାକୁ ଯାଇ କହିଲେ—“ରାଜନ୍ ! ଆଜିଠାରୁ ସାତଦିନ ପରେ ବ୍ରହ୍ମାଙ୍କ କଳ୍ପକାଳ ଶେଷହେବ । ଭୂ, ଭୁବ ଓ ସ୍ୱଃ ଏହି ତିନିଲୋକ ନଷ୍ଟ ହୋଇଯିବ । ଚରାଚର ଜୀବଙ୍କୁ ବ୍ରହ୍ମା ନିଜ ଉଦର ଭିତରେ ରଖି ଶୋଇପଡ଼ିବେ । ସେ ଯୋଗନିଦ୍ରାରେ ଶୋଇବା ପରେ ମୁଁ ତୁମକୁ ପ୍ରଳୟକାଳର ଦୃଶ୍ୟ ଦେଖାଇଦେବି । ଆଗାମୀ କଳ୍ପରେ ତୁମକୁ ମୁଁ ମନୁରୂପେ ନିଯୁକ୍ତ କରିବାକୁ ଚାହୁଁଛି । ତେଣୁ ତୁମେ ପୃଥିବୀର ଶ୍ରେଷ୍ଠବଡ଼ ସମସ୍ତ ବୀଜକୁ ଆଜିଠାରୁ ରକ୍ଷାକର । ସପ୍ତର୍ଷିମାନଙ୍କ ସହିତ ନିଜକୁ ମଧ୍ୟ ରକ୍ଷାକର । ପ୍ରଳୟ ଶେଷ ପର୍ଯ୍ୟନ୍ତ ମୋ’ ସହିତ ଜଳରେ ବିହାର କର ।”

ସତ୍ୟବ୍ରତ ବିସ୍ମୟାନ୍ୱିତ ହୋଇ ପଚାରିଲେ—“ମହାରାଜ ! ପ୍ରଳୟଜଳରେ ମୁଁ ରହିବି କିପରି ? ପ୍ରଳୟର ଉତ୍ତାଳ ତରଙ୍ଗକୁ ମୁଁ କିପରି ସହିପାରିବି ? ସପ୍ତର୍ଷି-ମାନଙ୍କୁ କେଉଁଠି ପାଇବି ?”

ଭଗବାନ୍ କହିଲେ—“ରାଜନ୍ ! ତୁମକୁ କିଛି ଖୋଜାଖୋଜି କରିବାକୁ ପଡ଼ିବ ନାହିଁ । ଆଜିଠାରୁ ସପ୍ତମ ଦିନରେ ତୁମଠାରେ ଏକ ସୁନ୍ଦର ନୌକା ଆସି ପହଞ୍ଚିବ ଆପେ ଆପେ । ସମସ୍ତ ବୀଜକୁ ନେଇ ସପ୍ତର୍ଷିଗଣ ମଧ୍ୟ ତୁମ ପାଖରେ ପହଞ୍ଚିବେ । ତୁମେ ସେହି ନୌକାରେ ଚଢ଼ିଯିବ । ସେହି ନୌକାକୁ ବାସୁକୀ ରୂପକ ଦଉଡ଼ିରେ ବାନ୍ଧି ଦଉଡ଼ିର ଏକ ପାଖ ମୋ ଶିଙ୍ଗରେ ବାନ୍ଧିଦେବ । ସେହି ନୌକାକୁ ଟାଣି ଟାଣି ମୁଁ ପ୍ରଳୟ ଜଳରେ ବିହାର କରିବି । ତୁମକୁ ପ୍ରକୃତ ଆନନ୍ଦର ସ୍ୱାଦ-ଦେବି ଏବଂ ଅଦ୍ଭୁତ କଥାସବୁ ଶୁଣାଇବି । ସେତେବେଳେ ତୁମେ ଯାହା ପଚାରିବ ସମସ୍ତ ପ୍ରଶ୍ନର ଉତ୍ତର ଧୀରେ ସୁସ୍ଥେ ଦେବି । ମୁଁ ସେତେବେଳେ ତୁମକୁ ମୋ’ ମହିମା ଜଣାଇବି ।”

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦ୍ରବିଡ଼େଶ୍ୱର ମହାରାଜ ସତ୍ୟବ୍ରତଙ୍କୁ ଏହିପରି ଆଦେଶ ଦେଇ ମତ୍ସ୍ୟ ଭଗବାନ୍ ଅନ୍ତର୍ହିତ ହୋଇଗଲେ । ସତ୍ୟବ୍ରତଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଭଗବାନ୍ଙ୍କ ଦୟା ଅନୁଭବ କରି ଆନନ୍ଦ ବିଭୋର ହୋଇପଡ଼ିଲେ । କ୍ଷଣକାଳ ତାଙ୍କ ପକ୍ଷରେ ଯୁଗପରି ମନେହେଲା । କିପରି ସାତୋଟି ଦିନ କଟିବ, ପୁଣି କିପରି ଭଗବାନ୍ଙ୍କ ସାକ୍ଷାତ୍ ଲାଭହେବ ତାହାହିଁ ସେ ଭାବିବାକୁ ଲାଗିଲେ । ପ୍ରତୀକ୍ଷାକାଳ ଲମ୍ବି ଯାଉଥିଲା । ବଡ଼ କଷ୍ଟରେ ସେ ସମୟ କଟାଇବାକୁ ଲାଗିଲେ । ସେ କୁଶାସନରେ ପୂର୍ବମୁଖ ହୋଇ ବସି ସୁସ୍ଥ ମନରେ ଭଗବାନ୍ଙ୍କୁ ପ୍ରାର୍ଥନା ଏବଂ ଖୁବ୍ ଉତ୍ସୁକ ହୋଇ ପ୍ରତୀକ୍ଷା କରିବାକୁ ଲାଗିଲେ ।"

## ଛପ୍ପୟ

ମମ ଇଚ୍ଛା ତେଁ ତରଣି ନିକଟ ଇକ ତୁମରେ ଆଓୈ ।
ସପ୍ତର୍ଷିନ କେ ସଙ୍ଗ ଚଢ଼ାଓୈ ତୁମହୁଁ ବଚୈଓୈ ।।
ବାସୁକି ବରତ ବନାଇ ସୀଂଗ ମେଁରେ ମହଁ ବାଁଧୌ ।
ଜଳ ବିହାର ମମସଙ୍ଗ କରୌ ପରମାରଥ ସାଧୌ ।।
କହି ହରି ଅନ୍ତର୍ହିତ ଭୟେ, କରୈଁ ପ୍ରତୀକ୍ଷା ଭୂପ ଅବ ।
ଅତି ଉତ୍କଣ୍ଠା ହିୟ ବଢ଼ୀ, ଆଓୈ ନୌକା ଦିବ୍ୟ କବ ।।



## ମତ୍ସ୍ୟ ଭଗବାନଙ୍କ ଉପଦେଶ

ସୋଽନୁଧ୍ୟାତସ୍ତତୋ ରାଜ୍ଞା ପ୍ରାଦୁରାସୀନ୍ମହାର୍ଣ୍ଣବେ ।
ଏକ ଶୃଙ୍ଗଧରୋ ମତ୍ସ୍ୟୋ ହୈମୋ ନିୟୁତଯୋଜନଃ ॥
ନିବଧ୍ୟ ନାବଂ ତଚ୍ଛୃଙ୍ଗେ ଯଥୋକ୍ତୋ ହରିଣା ପୁରା ।
ବରତ୍ରେଣାହିନା ତୁଷ୍ଟସ୍ତୁଷ୍ଟାବ ମଧୁସୂଦନମ୍ ॥

(ଭା-୮-୨୪-୪୪, ୪୫)

### ଛପ୍ପୟ

ସାତ ଦିବସ ଜବ ଭୟେ ଭଇ ପୃଥିବୀ ଜଳମୟ ସବ ॥
ଆଇ ନୌକା ଏକ ଋଷିନ ସଙ୍ଗ ଚଢ଼େ ଭୂପ ତବ ॥
ବାନ୍ଧୀ ଶଫରୀ ଶିଙ୍ଗ୍ ପ୍ରଳୟ ଜଳ ମହଁ ବିଚରେଁ ହରି ।
ପୁଛେ ପାବନ ପ୍ରଶ୍ନ ନୃପତି ନେ ଅତି ବିନତୀ କରି ॥
ଜୋ ଜଗମୟ ଜଗ ତେଁ ପୃଥକ୍, ଦେହୁଁ ଜ୍ଞାନଗୁରୁ ରୂପଧର ।
ଗୁରୁ କେ ଗୁରୁ ହରି ହୋ ତୁମହୁଁ, ନାମ ସୁମିର ବହୁ ଗୟେ ତର ॥

ଭଜନ, ଭୋଜନ ଓ ପ୍ରେମଭାବ ଏକାନ୍ତରେହିଁ କରାଯାଇଥାଏ । ସମସ୍ତଙ୍କ ଆଗରେ, ସମସ୍ତେ ଚାହିଁ ରହିଥିବା ବେଳେ ଯେଉଁ ଭୋଜନ କରାଯାଏ, ତାହା ନିୟମର ପୂର୍ଣ୍ଣତା ପାଇଁ ବା ଦମ୍ଭ ପ୍ରଦର୍ଶନ ପାଇଁ ଉଦ୍ଦିଷ୍ଟ । ଶିଷ୍ଟାଚାରବଶତଃ ଅଥବା ପର୍ବ, ଉତ୍ସବାଦିରେ ସମସ୍ତଙ୍କ ସହିତ ଭୋଜନ କରାଯାଏ । ସେହିପରି ସମସ୍ତଙ୍କ ଆଗରେ ଯେଉଁ ପ୍ରେମଭାବ ପ୍ରକାଶ କରାଯାଏ ବା ଭକ୍ତିଭାବ ଦେଖେଇ ଦିଆଯାଏ ସେଥିରେ ଶିଷ୍ଟାଚାର, ସ୍ୱାର୍ଥ, ଦମ୍ଭ, ଦେଖେଇ ହେବାର ମାତ୍ରା ଅଧିକ ଥାଏ । କିନ୍ତୁ ଏକାନ୍ତରେ ପତି ଆଗରେ ପତ୍ନୀ ଯେପରି ନିଜର ହୃଦୟ ଖୋଲିଦିଏ ଏବଂ ପତି ପତ୍ନୀଠାରେ ଯେପରି ନିଜର ସର୍ବସ୍ୱ ଅର୍ପଣ କରିଥାଏ ସେହିପରି ଉତ୍ତମ ଶିଷ୍ୟ ଏକାନ୍ତରେ ଗୁରୁଙ୍କ ଆଗରେ

ନିଜର ମନୋଭାବ ପ୍ରକାଶ କରେ ଏବଂ ସଦ୍‌ଗୁରୁ ମଧ୍ୟ ଏକାନ୍ତରେ ଶିଷ୍ୟଙ୍କୁ ରହସ୍ୟ ତତ୍ତ୍ୱ ଉପଦେଶ ଦିଅନ୍ତି । ଏକାନ୍ତରେହିଁ ହୃଦୟର ଝରଣା ପ୍ରବାହ ସୃଷ୍ଟି ହୁଏ ଏବଂ ଅବାରିତ ଗତିରେ ବହିଚାଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମତ୍ସ୍ୟଭଗବାନ୍ ଯେତେବେଳେ ରାଜର୍ଷି ସତ୍ୟବ୍ରତଙ୍କୁ ଉପଦେଶ ଦେଇ ଅନ୍ତର୍ହିତ ହୋଇଗଲେ ସେତେବେଳେ ଅତୀବ ଉତ୍କଣ୍ଠାର ସହିତ ନୌକା ଓ ଭଗବାନଙ୍କ ଆସିବା ବାଟକୁ ଚାହିଁ ରହିଲେ । କୌଣସିମତେ ସାତୋଟି ଦିନ କଟିଗଲା । ସପ୍ତମ ଦିନ ଆକାଶରେ ଅତି ତୀବ୍ର ଶବ୍ଦ ସୃଷ୍ଟି ହେଲା । ସତେଯେପରି ପୃଥିବୀ ଫାଟିଯିବ । ହଠାତ୍ ବର୍ଷା ଆରମ୍ଭ ହେଲା । ଏତେ ପ୍ରବଳ ବର୍ଷାହେଲା ଯେ ଆକାଶ ପୃଥିବୀ ମଧ୍ୟରେ ଆଉ ପାର୍ଥକ୍ୟ ରହିଲା ନାହିଁ । ହାତୀଶୁଣ୍ଢ଼ ଆକାରରେ ଜଳଧାରା ବର୍ଷିବାକୁ ଲାଗିଲା । କ୍ଷଣକ ମଧ୍ୟରେ ସମଗ୍ର ପୃଥିବୀ ଜଳମଗ୍ନ ହୋଇଗଲା । ଜୀବଜଗତ୍ ଜଳରେ ବୁଡ଼ିଗଲା । ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା କିଛି ଦେଖାଗଲେ ନାହିଁ । ଭିତରୁ ପାତାଳ ଗଙ୍ଗାର ପ୍ରବାହ ଉପରକୁ ଉଠିଲା ଏବଂ ଉପରୁ ଆକାଶ ଗଙ୍ଗାର ଧାରା ଛୁଟିଲା । ସପ୍ତଦ୍ୱୀପା ମେଦିନୀ ଜଳରେ ନିଶ୍ଚିହ୍ନ ହୋଇଗଲା । ସାତ ସମୁଦ୍ର ମିଶି ଏକାକାର ହୋଇଗଲେ । ମହାରାଜ ସତ୍ୟବ୍ରତ ଭୟଭୀତ ହୋଇପଡ଼ିଲେ । ଏହି ସମୟରେ ଜଳରେ ଏକ ନୌକା ଦେଖାଗଲା । ସେହି ନୌକାଟି ଧୀରେ ଧୀରେ ଆସି ପାଖରେ ପହଞ୍ଚିଲା । ସେଥିରେ ଥିବା ସପ୍ତର୍ଷିଗଣ ରାଜାଙ୍କୁ କହିଲେ—"ରାଜନ୍ ! ଆଉ ବିଳମ୍ବ କରିବା ଉଚିତ ନୁହେଁ । ଆପଣ ଶୀଘ୍ର ଆମ ନୌକା ଉପରକୁ ଆସନ୍ତୁ ।"

ଋଷିମାନଙ୍କ ଆଦେଶ ପାଇ ରାଜା ନୌକା ଉପରକୁ ଚଢ଼ିଗଲେ । ଋଷିଗଣ ଔଷଧିର ବୀଜଗୁଡ଼ିକୁ ଧରି ନୌକାରେ ବସିଗଲେ । ରାଜା ପ୍ରଳୟକାଳୀନ ପ୍ରବଳ ଜଳ ତରଙ୍ଗକୁ ଦେଖି ଭୟରେ ଥରୁଥିଲେ । ତାଙ୍କୁ ଏପରି ଭୟଭୀତ ହୋଇ ଥରୁଥିବାର ଦେଖି ଋଷିମାନେ କହିଲେ—"ରାଜନ୍ ! ଆପଣ ମନରୁ ଭୟ ଦୂରକରି ଭଗବାନ୍ ମଧୁସୂଦନଙ୍କୁ ସ୍ମରଣ କରନ୍ତୁ, ସେ ତୁମକୁ ସବୁ ଦିଗରୁ ରକ୍ଷାକରିବେ ଏବଂ ବିପଦରୁ ଉଦ୍ଧାର କରିବେ । ବର୍ତ୍ତମାନ ସେହି ଅଚ୍ୟୁତ, ଅଜ, ଭୂମା ପୁରୁଷହିଁ ଆମର ଏକମାତ୍ର ସହାୟ ।"

ରାଜା ସୁସ୍ଥହୋଇ କହିଲେ—"ନାଁ ନାଁ ଡରିବାର କିଛି କାରଣ ନାହିଁ । ପ୍ରଭୁତ ମୋତେ ଆଦେଶ ଦେଇଯାଇଛନ୍ତି । ସେ ଏବେ ମତ୍ସ୍ୟ ରୂପରେ ଏଇଠି ପ୍ରକଟ ହେବେ । ପ୍ରଳୟ ପୟୋଧି ଜଳରେ ବିଚରଣଶୀଳ ସେହି ପ୍ରଭୁଙ୍କୁ ମୁଁ ସ୍ମରଣ

କରୁଛୁ । ଭକ୍ତର ଡାକ ଶୁଣିବା ମାତ୍ରେ ସେ ଉପସ୍ଥିତ ହେବେ । ଏହାକହି ରାଜର୍ଷି ସତ୍ୟବ୍ରତ ଭଗବାନଙ୍କୁ ଧ୍ୟାନ କରିବାକୁ ଲାଗିଲେ । ସତ୍ୟବ୍ରତଙ୍କ ସ୍ମରଣମାତ୍ରେ ଭଗବାନ୍ ମତ୍ସ୍ୟ ସେଠାରେ ଉପସ୍ଥିତ ହେଲେ ।"

ପ୍ରଭୁଙ୍କ କଳେବର ସହସ୍ର ସହସ୍ର ବିଦ୍ୟୁତ୍ ଝଲକଠାରୁ ଅଧିକ ତେଜୋମୟ ଓ ସୁନ୍ଦର ଦେଖାଯାଉଥିଲା । ସତେଯେପରି ସମସ୍ତ ସୌନ୍ଦର୍ଯ୍ୟ ଏକତ୍ର ଠୁଳ ହୋଇଛି, ତାହାହିଁ ମନେ ହେଉଥିଲା । ତାଙ୍କର ଆକାର ଏତେବଡ଼ ଦେଖାଯାଉଥିଲା ଯେ ତାଙ୍କୁ ମାପିବାର କୌଣସି ଉପାୟ ନଥିଲା । ସମୁଦ୍ରରେ ଲକ୍ଷ ଲକ୍ଷ ଯୋଜନ ବିସ୍ତୃତ ପର୍ବତର ଏକ ଟାପୁପରି ଦେଖାଯାଉଥିଲେ । ତାଙ୍କ ଶିରୋ ଭାଗରେ ଚକ୍‌ଚକ୍ କରୁଥିବା ଏକ ସୁନ୍ଦର ଶୃଙ୍ଗ ଶୋଭା ପାଉଥିଲା । ଭଗବାନଙ୍କୁ ଏହି ରୂପରେ ଦେଖି ସମସ୍ତେ ସନ୍ତୋଷ ଲାଭକଲେ । ପ୍ରଳୟ ଜଳର ବନ୍ୟାରେ ବାସୁକି ମଧ୍ୟ ଭାସି ଭାସି ଆସି ପହଞ୍ଚିଲେ । ମହାରାଜ ସତ୍ୟବ୍ରତ ସମୁଦ୍ର ମନ୍ଥନ କାଳରେ ଦଉଡ଼ି ରୂପେ ବ୍ୟବହୃତ ହୋଇଥିବା ସେହି ମହାସର୍ପକୁ ହଠାତ୍ ଧରିପକାଇଲେ । ବାସୁକି ମଧ୍ୟ ଜଳତରଙ୍ଗର ଆଘାତରେ କ୍ଳାନ୍ତ ହୋଇ ପଡ଼ିଥିଲେ । ତେଣୁ ମହାରାଜ ଧରିବାମାତ୍ରେ ବାସୁକି ନୌକା ଉପରକୁ ଉଠିଆସିଲେ । ଏହି ସମୟରେ ମତ୍ସ୍ୟ ଭଗବାନ୍ ନୌକା ନିକଟକୁ ଚାଲିଆସିଲେ । ମହାରାଜ ବାସୁକିର ମୁଣ୍ଡକୁ ଭଗବାନଙ୍କ ଶିଙ୍ଗରେ ଏବଂ ଲାଞ୍ଜକୁ ଡଙ୍ଗାରେ ଭଲକରି ବାନ୍ଧିଦେଲେ । ମତ୍ସ୍ୟ ଭଗବାନ୍ ଆନନ୍ଦରେ ଡଙ୍ଗାକୁ ଟାଣି ଟାଣି ବିହାର କରିବାକୁ ଲାଗିଲେ । ମସ୍ତକରେ ଚନ୍ଦନଟୋପା ଲଗାଇ ପୁରୁଷ ବୁଲିଲା ପରି ମତ୍ସ୍ୟଭଗବାନ୍ ନିଜ ଇଚ୍ଛା ଅନୁସାରେ ନୌକାକୁ ଟାଣି ବୁଲିଲେ । ପୁରୁଷର ମସ୍ତକସ୍ଥିତ ଚନ୍ଦନବିନ୍ଦୁ ଯେପରି କୌଣସି ଭାରସୂଚକ ହୁଏନାହିଁ ସେହିପରି ନୌକାକୁ ଟାଣିବା ପ୍ରଭୁଙ୍କ ପକ୍ଷରେ ଆଦୌ କଷ୍ଟକର ମନେ ହେଉ ନଥିଲା । ମହାରାଜ ଏକାନ୍ତ ଅବସ୍ଥା ଅନୁଭବ କରି ଭଗବାନଙ୍କୁ କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ସ୍ତୁତିକଲେ ।

"ଭଗବନ୍ ! ଏହି ଜୀବ ଭୟାନକ ଅରଣ୍ୟରେ କେଉଁକାଳରୁ ପଥଭ୍ରଷ୍ଟ ହୋଇ ଘୂରିବୁଲୁଛି । କାରଣ ଜୀବର ସହଜ ଜ୍ଞାନକୁ ଅବିଦ୍ୟା ଆଚ୍ଛାଦନ କରି ରହିଛି । ପୁରୁଷ ଜ୍ଞାନଭ୍ରଷ୍ଟ ହୋଇ ଧନ, ସ୍ତ୍ରୀ, ପୁତ୍ରାଦିଙ୍କୁ ସତ୍ୟ ଓ ସ୍ଥିରବୋଲି ବିଚାରି ବହୁକାଳ ହେଲା ଅଜସ୍ର ଦୁଃଖକଷ୍ଟ ବରଣ କରିଆସୁଛି । ସତ୍ୟ ସ୍ୱରୂପ ଆପଣଙ୍କର ଚରଣାରବିନ୍ଦକୁ ଭୁଲି ଏହି ଜୀବ ଅସତ୍ ବସ୍ତୁ ପ୍ରାପ୍ତି ଆଶାରେ ସର୍ବଦା ବୁଲୁଛି । ଦୈବବଶତଃ ଯଦି ଆପଣଙ୍କର ଅନୁଗ୍ରହ ହେବ ତେବେ ଏ ସଂସାରବନ୍ଧନ ସବୁଦିନ ପାଇଁ ତୁଟିଯିବ ଏବଂ ମାୟାବଦ୍ଧ ଜୀବ ଅଜ୍ଞାନ ପଙ୍କରୁ ବିମୁକ୍ତ ହୋଇଯିବ ।

କେବଳ ଗୁରୁଙ୍କ କୃପାରୁ ଏହା ସମ୍ଭବ ହେବ । ଏଣୁ ମୁଁ ଆପଣଙ୍କୁ ଗୁରୁ ରୂପେ ସ୍ୱୀକାର କରୁଛି ।"

ଭଗବାନ୍ ହସି ହସି କହିଲେ—"ଗୁରୁ କଲ ଭଲହେଲା । ଏଣିକି ମତ୍ସ୍ୟ ନକହି ଗୁରୁବୋଲି କୁହ ।"

ମହାରାଜ କହିଲେ—"ନାଁ ପ୍ରଭୋ ! କେବଳ ସେତିକରେ ହେବନାହିଁ । ଆମର ଅସତ୍ ବୁଦ୍ଧି ଥିବାରୁ ଆମେ ଅଜ୍ଞାନ ମୂଳକ କର୍ମକୁ ସୁଖର କାରଣ ବୋଲି ମନେକରି ଆଖିବୁଜି ଅନ୍ଧପରି କାର୍ଯ୍ୟ କରିଚାଲିଛୁ । ପ୍ରଥମେ ଆପଣ ଆମର ଅଜ୍ଞାନମୟୀ ବୁଦ୍ଧିକୁ ବିନାଶ କରନ୍ତୁ । ଆମ ହୃଦୟରେ ଯେଉଁ ମାୟାର ଗଣ୍ଠି ପଡ଼ିଛି ତାହାକୁ ଖୋଲିଦିଅନ୍ତୁ । କାରଣ ଆପଣ ମାୟାଧୀଶ ଓ ମାୟାର ପ୍ରଭୁ । ଆପଣ ଗୁରୁ ରୂପେ ଏହି କଠିନ ବନ୍ଧନରୁ ଆମକୁ ମୁକ୍ତ କରନ୍ତୁ ।"

ଭଗବାନ୍ କହିଲେ—"ବାବୁ ! ତୁଟେ ଆଉ କାହାରିକୁ ଗୁରୁ କର । ମୋତେ କାହିଁକି ଗୁରୁ କରିବାକୁ ତୁମେ ଆଗ୍ରହୀ ହେଉଛ ?"

ଏହା ଶୁଣି ରାଜର୍ଷି ସତ୍ୟବ୍ରତ କହିଲେ—"ଭଗବାନ୍ ! ସଦ୍ୟ ଖଣିରୁ ଉତ୍ତୋଳିତ ହୋଇଥିବା ସୁବର୍ଣ୍ଣ ଖଣ୍ଡରେ ସୁନା ଥାଏ ଓ ଅନ୍ୟାନ୍ୟ ମଳ ବି ଥାଏ । ଅଗ୍ନିର ସାହାଯ୍ୟ ବିନା ଅନ୍ୟ କୌଣସି ଉପାୟରେ ସୁନାରୁ ମଳ ନିରାକରଣ କରିବା ସର୍ବଥା ଅସମ୍ଭବ । ଅଗ୍ନି ବିନା ସୁବର୍ଣ୍ଣର ମଳକୁ ଅନ୍ୟ କୌଣସି ଉପାୟରେ ଦୂର କରିହେବ ନାହିଁ । ସେହିପରି ସଚ୍ଚିଦାନନ୍ଦ ସ୍ୱରୂପ ଏହି ଜୀବର ଅନ୍ତଃକରଣରେ ଥିବା ଅଜ୍ଞାନ ରୂପକ ମଳକୁ ଦୂର କରିବା ପାଇଁ କେବଳ ଆପଣହିଁ ସମର୍ଥ । ଆପଣଙ୍କ ସେବା ରୂପକ ତାପରେ ଅଜ୍ଞାନ ରୂପକ ମଳ ପୃଥକ୍ ହୋଇଯାଏ । ପୃଥିବୀରେ ବିବିଧ ବିଦ୍ୟାରେ ବହୁ ଗୁରୁ ଅଛନ୍ତି । କିନ୍ତୁ ସେହି ଗୁରୁମାନଙ୍କର ଗୁରୁ ହେଉଛନ୍ତି ଆପଣ । ଆପଣ ପରମ ଗୁରୁ, ଈଶ୍ୱର ଓ ଅବିନାଶୀ । ଆପଣଙ୍କ ଶରଣ ଲାଭ କଲେ ଆମର ଆଖିରୁ ଅଜ୍ଞାନ ଅନ୍ଧକାର ଦୂର ହୋଇଯିବ ।"

ଭଗବାନ୍ କହିଲେ—"ସଂସାରରେ ଇନ୍ଦ୍ରାଦି ବହୁ ଦେବତା, ବିଦ୍ୟାଗୁରୁ, ଶିକ୍ଷାଗୁରୁ, ଦୀକ୍ଷାଗୁରୁ ଆଦି କେତେ ପ୍ରକାରର ଗୁରୁ ଅଛନ୍ତି । ତୁମେ ସେମାନଙ୍କ ମଧ୍ୟରୁ କାହାରି ପାଖକୁ ଯାଅ ।"

ରାଜର୍ଷି କହିଲେ—"ପ୍ରଭୋ ! ସେମାନଙ୍କ ଆଶ୍ରୟ ଯେ ସୁଖପ୍ରଦ ସେଥିରେ ସନ୍ଦେହ ନାହିଁ । କିନ୍ତୁ ସେମାନେ ବି ଆପଣଙ୍କୁ ଆଶ୍ରୟ କରିଅଛନ୍ତି । ଆପଙ୍କ ଦୟା

ବିନା ସେମାନେ କାହାର ପ୍ରତି ଅନୁଗ୍ରହ କରିବା ସମ୍ଭବ ନୁହେଁ । ଆପଣ ସମସ୍ତଙ୍କର ପରମଗୁରୁ ଓ ପରମେଶ୍ୱର । ତେଣୁ ଆପଣଙ୍କ ଚରଣ ତଳେ ଆମକୁ ଆଶ୍ରୟ ଦିଅନ୍ତୁ ।"

ଭଗବାନ୍ କହିଲେ—"ଯେତେ ବିବେକଜ୍ଞାନ ହେଲେ ମଧ୍ୟ ଗୁରୁ ଆଶ୍ରୟ ନେବା ପରେ ଗୁରୁ ତାଙ୍କୁ ଉଦ୍ଧାର କରିଦିଅନ୍ତି ।"

ଏହା ଶୁଣି ରାଜା କହିଲେ—"ଭଗବାନ୍ ! ଯାହାର ଯେପରି ନିଷ୍ଠା ଅଛି ଗୁରୁଭକ୍ତି ଅଛି ମୁଁ ତାଙ୍କୁ ପ୍ରଣାମ କରୁଛି । କିନ୍ତୁ ମୋର ସେପରି ନିଷ୍ଠା ନାହିଁ । ଯେ ଅନ୍ଧ ତାକୁ ଅନୁସରଣ କରୁଥିବା ସମସ୍ତେ ଗାତରେ ପଡ଼ନ୍ତି । ସେହିପରି ଅଜ୍ଞାନ ପୁରୁଷ ଯଦି ବିବେକଜ୍ଞାନ ପୁରୁଷଙ୍କୁ ଗୁରୁ ରୂପେ ବରଣ କରିବ ତେବେ ବନ୍ଧନରେ ପଡ଼ିବା ହିଁ ସାର ହେବ । ଆପଣ ସ୍ୱୟଂପ୍ରକାଶ । ଭାଗ୍ୟବଶତଃ ନିଜର ଅହୈତୁକ କୃପା ଦ୍ୱାରା ଆପଣ ଆମ ଆଗରେ ପ୍ରକଟିତ ହୋଇଛନ୍ତି । ତେଣୁ ଆପଣଙ୍କୁ ଗୁରୁ ରୂପେ ସ୍ୱୀକାର କରୁଛି ।

ମନ୍ତ୍ରଦାତା ମଧ୍ୟ ଗୁରୁ ରୂପେ ପୂଜ୍ୟ । ତାରକ ମନ୍ତ୍ରର ଦୀକ୍ଷାଦାତା ପ୍ରକୃତ ଗୁରୁ । କିନ୍ତୁ ସେ ପ୍ରକାର ଗୁରୁ ଦୁର୍ଲଭ । ବିଶେଷ କରି ଗୁରୁ ତାରକମନ୍ତ୍ର ଦୀକ୍ଷା ଦେଲେ ତ ? କିନ୍ତୁ ଅନେକ ଗୁରୁ ଅର୍ଥ କାମାଦି ବିଷୟ ଲୋଭରେ ମନ୍ତ୍ରଦୀକ୍ଷା ଦିଅନ୍ତି । ସେମାନେ ଶିଷ୍ୟର ଅଜ୍ଞାନ ଅପହରଣ ନ କରି ଧର୍ମକୁ ଅପହରଣ କରନ୍ତି । ନିଜକୁ ଗୁରୁ ବୋଲି ପ୍ରଚାର କରୁଥିବା ଅଜ୍ଞାନ ପୁରୁଷ ନିଜେ ଅଧୋଗତି ଲାଭ କରନ୍ତି ଏବଂ ଶିଷ୍ୟଙ୍କୁ ମଧ୍ୟ ଅଧଃପତନ ମାର୍ଗରେ ଛାଡ଼ିଦିଅନ୍ତି ।

ଲୋଭୀ ଗୁରୁ ଓ ଲାଳସାଯୁକ୍ତ ଶିଷ୍ୟ ନରକଗତି ଲାଭ କରନ୍ତି । କିନ୍ତୁ ଆପଣ ତ ସେପରି ଗୁରୁ ନୁହଁନ୍ତି । ଆପଣ ଅମୋଘ ଜ୍ଞାନ ଉପଦେଶ ଦେବେ । ଆପଣଙ୍କ କୃପା ହେଲେ ମଣିଷ ଆତ୍ମାନୁଭୂତି ଲାଭ କରିପାରିବ ।"

ଭଗବାନ୍ କହିଲେ—"ତୁମେ ମୋତେ ଗୁରୁବୋଲି ନା ଈଶ୍ୱର ବୋଲି ଭାବୁଛ ?

ମହାରାଜ କହିଲେ—"ଆପଣ ଗୁରୁ ଅଟନ୍ତି, ମାତା, ପିତା, ଈଶ୍ୱର, ବନ୍ଧୁ ଓ ସଖା ବି ଅଟନ୍ତି । ଆପଣ ଆତ୍ମା ମଧ୍ୟ । କେତେ କଣ କହିବି, ଆପଣ ତ ସର୍ବସ୍ୱ । ଆପଣଙ୍କ ବ୍ୟତୀତ ଆଉ କାହାର ଅସ୍ତିତ୍ୱ ନାହିଁ । ଆପଣ ହିଁ ପ୍ରାପ୍ୟ ଓ ପ୍ରାପ୍ତିର ସହାୟକ । ଆପଣ ପ୍ରତି ଘଟରେ ଚୈତନ୍ୟ ରୂପେ ବିରାଜମାନ ।

ଜନ୍ତୁ ଅନ୍ତଃକରଣ ଉପରେ ଆପଣ ନିଜର ମାୟା ଆବରଣ ଏପରି ଭାବରେ ଘୋଡ଼ାଇ ରଖିଛନ୍ତି ଯେ, ମୋହାନ୍ଧକାର ମଧ୍ୟରେ ପଥଭ୍ରଷ୍ଟ ହୋଇ ପୁରୁଷ ଆପଣଙ୍କୁ ଦେଖି-ପାରୁନାହିଁ ।

ହେ ପରମାତ୍ମନ୍ ! ଆପଣ ଉପଦେଶାମୃତ ବର୍ଷା କରି ମୋର ଶୁଷ୍କ ହୃଦୟକୁ ପଲ୍ଲବିତ କରନ୍ତୁ । ମୋର ଅଜ୍ଞାନ ଅନ୍ଧକାରକୁ ଦୂର କରନ୍ତୁ ମୋର ସନ୍ଦେହ ମୋହ ଯେପରି ଦୂରହେବ ତା'ର ପ୍ରତିକାର କରନ୍ତୁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ରାଜର୍ଷି ସତ୍ୟବ୍ରତଙ୍କ ଆଗ୍ରହ ଦେଖି ଓ ତତ୍ତ୍ୱଜ୍ଞାନ ଗ୍ରହଣ ପାଇଁ ସେ ଜଣେ ଅଧିକାରୀ ବ୍ୟକ୍ତି ବୋଲି ହୃଦୟଙ୍ଗମ କରି ମତ୍ସ୍ୟ ଭଗବାନ୍ ଉପଦେଶ ଦେବା ଆରମ୍ଭ କଲେ ।"

## ଛପ୍ପୟ

ଦେହୁଁ ମୋଇ ଉପଦେଶ ଜଗତ ଗୁରୁ ସବ୍‌କେ ସ୍ୱାମୀ ।
ଦେହୁଁ ଜ୍ଞାନ କା ଅଞ୍ଜ ଅନ୍ଧନର ଜୈଭୀ କାମୀ ।।
ପରମଦେବ, ଗୁରୁ, ପିତା, ସୁହୃଦ୍ ସମ୍ବନ୍ଧୀ ସବ୍ ତୁମ୍ ।
ଛାଡ଼ି ଜଗତ୍ କୀ ଆଶ ଶରଣ ଆୟେ ତୁମରୀ ହମ୍ ।।
ସୁନତ ନୃପତି କେ ବଚନ ହରି, ମନ୍ଦ ମନ୍ଦ ମୁସ୍କାୟେ ପ୍ରମୁଦିତ ଭୟେ ।
ଫିର ଭୂପତି ଅସ ଋଷିନ କେ, ପ୍ରଶ୍ନନ କେ ଉତ୍ତର ଦୟେ ।।



## ମତ୍ସ୍ୟାବତାର ଚରିତର ଉପସଂହାର

ପ୍ରଳୟପୟସି ଧାତୁଃ ସୁପ୍ତଶକ୍ତେର୍ମୁଖେଭ୍ୟଃ ।
ଶ୍ରୁତିଗଣମପନୀତଂ ପ୍ରତ୍ୟୁପାଦତ୍ତ ହତ୍ୱା ।।
ଦିତିଜମକଥୟଦ୍ ଯୋ ବ୍ରହ୍ମ ସତ୍ୟବ୍ରତାନାଂ ।
ତମହମଖିଳହେତୁଂ ଜିହ୍ମମୀନଂ ନତୋଽସ୍ମି ।।

(ଭାଗ-୮-୨୪-୬୧)

### ଛପ୍ପୟ

ଜଗମହଁ ମତ୍ସ୍ୟପୁରାଣ କହେଁ ପଣ୍ଡିତ ଜନ ଜାକୂଁ ।
ତେ ନର ପ୍ରଭୁପଦ ପାହୁଁ ପଢ଼େ ଶ୍ରଦ୍ଧା ତେଁ ବାକୂଁ ।।
ଜ୍ୟୋଁ ବିଶ୍ୱମ୍ଭର ବିଷ୍ଣୁ ରୂପ ମଛଲୀ କୋ ଧାର୍ୟୋ ।
ହୟଗ୍ରୀବ ଖଳ ଦୈତ୍ୟ ପକର ପାତାଳ ପଛାରୟୋ ।।
ଭକ୍ତ ଭୂପ ରକ୍ଷା କରି, ଜ୍ଞାନ ଋଷିନ କେ ସଙ୍ଗ ଦୟୋ ।
ସୁନତ ମୋହ ତମ ନସି ଗୟୋ, ତତ୍କ୍ଷଣ ଭବଭୟ ଭଗି ଗୟୋ ।।

ଭଗବାନଙ୍କ ମୁଖନିଃସୃତ ବଚନ ହିଁ ବେଦ । ପ୍ରଭୁଙ୍କ ଅବତାର ଚରିତ ଯେଉଁଥିରେ ବର୍ଣ୍ଣିତ ହୋଇଥାଏ ତାହାକୁ ପୁରାଣ କହନ୍ତି । ପୁରାଣ ଦଶଲକ୍ଷଣଯୁକ୍ତ । କିନ୍ତୁ ପୁରାଣ ପୁରୁଷଙ୍କ ପୁଣ୍ୟମୟ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଥିବା ଗ୍ରନ୍ଥକୁ ପୁରାଣ କହନ୍ତି । ଏହା ସମସ୍ତଙ୍କର ସ୍ମରଣୀୟ । ଏହାଦ୍ୱାରା ଅଜ୍ଞାନ ଦୂରହୁଏ ଓ ମୁଖ୍ୟତତ୍ତ୍ୱ ଜ୍ଞାନର ଉପଲବ୍ଧି ଆସେ । ପ୍ରଥମେ ଭଗବାନ୍ ପୁରାଣ ସମ୍ବନ୍ଧୀୟ ଉପଦେଶ ବ୍ରହ୍ମାଙ୍କୁ ଦେଇଥିଲେ । ଏହା ସର୍ବପ୍ରାଚୀନ ଜ୍ଞାନ । ତେଣୁ ଏହାକୁ ପୁରାଣ କୁହାଯାଏ । ପ୍ରାଚୀନ ହେଲେ ମଧ୍ୟ ଯାହା ନିତ୍ୟ ନୂତନତାର ସୂଚନା ଦିଏ ଏବଂ ବାରମ୍ବାର ଶୁଣିଲେ ମଧ୍ୟ ଯାହା ପୁରୁଣା ମନେ ହୁଏନାହିଁ ତାହା ହିଁ ପୁରାଣ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରଳୟ ଜଳରେ ସପ୍ତର୍ଷିମାନଙ୍କ ସହିତ ମହାରାଜ ସତ୍ୟବ୍ରତ ନୌକାରେ ବସି ବୁଲୁଥିବାବେଳେ ରାଜାଙ୍କ ତତ୍ତ୍ୱଜ୍ଞାନ ଜିଜ୍ଞାସା ଚରିତାର୍ଥ କରିବା ପାଇଁ ଭଗବାନ୍ ସୃଷ୍ଟିର ରହସ୍ୟ ବୁଝାଇ ଦେଇଥିଲେ ଏବଂ ସମସ୍ତ ପ୍ରଶ୍ନର ଉତ୍ତର ପ୍ରଦାନ କରିଥିଲେ । ବ୍ରହ୍ମାଙ୍କର ଗୋଟିଏ ରାତି ଅର୍ଥାତ୍ ଏକ ହଜାର ଯୁଗ ଅତିବାହିତ ହେବା ପର୍ଯ୍ୟନ୍ତ ମତ୍ସ୍ୟ ଭଗବାନ୍ ସପ୍ତର୍ଷିଙ୍କ ସହିତ ରାଜା ସତ୍ୟବ୍ରତଙ୍କୁ ଉପଦେଶ ଦେଇଥିଲେ । ଏହାର ନାମ ବା ସଂକଳିତ ରୂପ ହେଉଛି ମତ୍ସ୍ୟପୁରାଣ । ଆତ୍ମରହସ୍ୟ ଯୁକ୍ତ ଏହି ମହାପୁରାଣରେ ସାଂଖ୍ୟଯୋଗ ଓ କର୍ମକାଣ୍ଡର ସମସ୍ତ ତତ୍ତ୍ୱ ବର୍ଣ୍ଣିନା କରାଯାଇଛି ।"

ଏହା ଶୁଣି ଶୌନକ ପଚାରିଲେ—"ଭଗବନ୍ ! ଆପଣ ତ କହୁଥିଲେ ସତ୍ୟ, ତ୍ରେତା, ଦ୍ୱାପର, କଳି ଚାରିଯୁଗ ହଜାରେ ବାର ଅତିବାହିତ ହେବା ପରେ ବ୍ରହ୍ମାଙ୍କର ଗୋଟିଏ ରାତି ହୁଏ । ସେ ପର୍ଯ୍ୟନ୍ତ ଭଗବାନ୍ ଦେଇଥିବା ଉପଦେଶ ମତ୍ସ୍ୟପୁରାଣ ନାମରେ ଅଭିହିତ । ବର୍ତ୍ତମାନ ମତ୍ସ୍ୟପୁରାଣରେ ପ୍ରାୟ ଚଉଦ ହଜାର ଶ୍ଲୋକ ଥିବାର ଦେଖାଯାଏ । ପ୍ରଳୟକାଳୀନ ରାତ୍ରି ମଧ୍ୟରେ ଭଗବାନ୍ କଣ ଏତିକି ଉପଦେଶ ଦେଇଥିଲେ ? କଣେ ମନଦେଇ ପଢ଼ିଲେ ତ ମତ୍ସ୍ୟପୁରାଣ ଦୁଇ ତିନି ଦିନ ମଧ୍ୟରେ ଶେଷ କରିଦେଇ ପାରିବ ।"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ ହସି ହସି କହିଲେ—"ମହାଶୟ ! ଏତିକି କେବଳ ମତ୍ସ୍ୟପୁରାଣ ନୁହେଁ । ଅନନ୍ତ ଭଗବାନ୍ଙ୍କ ପରି ମତ୍ସ୍ୟପୁରାଣ ମଧ୍ୟ ଅନନ୍ତ, ଅସୀମ । ଲୋକକଲ୍ୟାଣ ପାଇଁ ବେଦବ୍ୟାସ ସେହି ଅନନ୍ତ ପୁରାଣର କିଛି ଅଂଶକୁ ନେଇ ଏକ ପୃଥକ୍ ସଂହିତା ସଂକଳନ କରିଛନ୍ତି । ସେତିକି ପାଠକଲେ ଲୋକର ମନୋରଥ ପୂର୍ଣ୍ଣହେବ ଓ କିଛି ଜ୍ଞାନ ମଧ୍ୟ ଲାଭ ହେବ ।"

ମହର୍ଷି ସୂତଙ୍କ ଉତ୍ତର ଶୁଣି ଶୌନକ ପଚାରିଲେ—"ତେବେ ଆମେ ପଢ଼ୁଥିବା ମତ୍ସ୍ୟପୁରାଣ କଣ ଅପୂର୍ଣ୍ଣ ? ଏପରି ଏକ ସଂକ୍ଷିପ୍ତ ପୁରାଣ ପାଠରେ ସମସ୍ତ ଅଜ୍ଞାନ ଦୂର ହୋଇପାରିବ ନାହିଁ । କାରଣ, ହଜାରେ ଯୁଗ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ପୁରାଣ ଶୁଣିବା ପରେ ହିଁ ସପ୍ତର୍ଷି ଓ ରାଜର୍ଷି ସତ୍ୟବ୍ରତଙ୍କ ଜ୍ଞାନ ପୂର୍ଣ୍ଣ ହୋଇଥିଲା ।"

ମହର୍ଷି ସୂତ କହିଲେ—"ମହାଭାଗ ! ଉପଲବ୍ଧ ମତ୍ସ୍ୟପୁରାଣ ହିଁ ପୂର୍ଣ୍ଣ ପୁରାଣ । ଏହା ଅଧ୍ୟୟନ କଲେ ହିଁ ସମସ୍ତ ଅଜ୍ଞାନ ଦୂର ହୋଇଯିବ ।"

ଶୌନକ ପଚାରିଲେ—"ଏହା କିପରି ସମ୍ଭବ ହେବ ?

ମହର୍ଷି ସୂତ ବୁଝାଇବାକୁ ଯାଇ କହିଲେ—"ମହାଶୟ ! ସଗରଙ୍କର ଷାଠିଏ ହଜାର ପୁଅ ନଷ୍ଟ ହୋଇଯାଇଥିଲେ । ସେମାନଙ୍କୁ ଉଦ୍ଧାର କରିବା ପାଇଁ ଗଙ୍ଗାଙ୍କୁ ଆଣିବା ଆବଶ୍ୟକ ପଡ଼ିଲା । ସଗରଙ୍କ ନାତି ଅଂଶୁମାନ୍ ଗଙ୍ଗାଙ୍କୁ ଆଣିବା ପାଇଁ ହଜାରେ ବର୍ଷ ଘୋର ତପସ୍ୟା କଲେ ମଧ୍ୟ ସଫଳ ହୋଇପାରିଲେ ନାହିଁ । ତାଙ୍କ ପୁଅ ହେଲେ ଦିଲୀପ । ସେ ବି ଗଙ୍ଗାଙ୍କୁ ଆଣିବା ପାଇଁ ହଜାରେ ବର୍ଷ ତପସ୍ୟା କଲେ । ତପସ୍ୟା କରୁଥିବାବେଳେ ତାଙ୍କର ଦେହାନ୍ତ ହୋଇଗଲା । କିନ୍ତୁ ସେ ମଧ୍ୟ ଗଙ୍ଗାଙ୍କୁ ଆଣିପାରିଲେ ନାହିଁ । ଦିଲୀପଙ୍କ ପୁଅ ହେଲେ ଭଗୀରଥ । ସେ ହଜାରେ ବର୍ଷ ପର୍ଯ୍ୟନ୍ତ ତପସ୍ୟା କରି ଗଙ୍ଗାଙ୍କୁ ଆଣିବାରେ ସମର୍ଥ ହୋଇଥିଲେ । ଗଙ୍ଗାଙ୍କ ଅମୃତମୟ ଜଳ ଲାଭକରି ତାଙ୍କ ପିତୃଗଣ ଉଦ୍ଧାର ପାଇଲେ । ଭଗୀରଥ ଯେଉଁ ଗଙ୍ଗାଙ୍କୁଆଣିଥିଲେ ତା'ର ଜଳ ଅସୀମ । ସେହି ଗଙ୍ଗାରେ ସମସ୍ତେ ସ୍ନାନ କରୁଛନ୍ତି ଓ ପାପ ତାପ ବିନାଶ କରୁଛନ୍ତି । ଗଙ୍ଗା ସ୍ନାନ ପରେ ଘରକୁ ଫେରିବାବେଳେ ଲୋକେ ନାନାପ୍ରକାର ପାତ୍ରରେ ଗଙ୍ଗାଜଳ ନେଇଯାଆନ୍ତି ।

ଆମେ ଗଙ୍ଗାକୁ ଆଣିଛୁ ବୋଲି ସମସ୍ତେ କହନ୍ତି । ସେମାନେ ଆଣିଥିବା ଜଳରେ ଗଙ୍ଗା କ'ଣ ପୂରାପୂରି ନ ଥାନ୍ତି ? ସେହି ଜଳର ଏକ ବିନ୍ଦୁରେ କ'ଣ ସମସ୍ତ ପାପ ତାପ କ୍ଷୟ ହୋଇଯାଏ ନାହିଁ କି ? ସେହି ଜଳରେ ଗଙ୍ଗା ପୂର୍ଣ୍ଣମାତ୍ରାରେ ବିରାଜିତା ବୋଲି କହିବା ଉଚିତ ହେବ । ଗଙ୍ଗାର ଅସୀମ ଧାରାରେ ଯେଉଁ ଗୁଣ ଅଛି, ପାତ୍ରରେ ଆଣିଥିବା ଜଳରେ ସେହି ଗୁଣ ରହିଛି । ସେହିପରି ମତ୍ସ୍ୟ ପୁରାଣ ରୂପକ ଅନନ୍ତ ଜ୍ଞାନ ଧାରାରୁ ଆଣି ବେଦବ୍ୟାସ ଲୋକକଲ୍ୟାଣ ପାଇଁ ଉପଲବ୍ଧ ସଂହିତା ରଚନା କରିଛନ୍ତି । ବିନ୍ଦୁଏ ଗଙ୍ଗାଜଳ ଯେପରି ସମସ୍ତ ପାପ ଦୂର କରେ ସେହିପରି ଏହି ସଂହିତାଦ୍ୱାରା ସମସ୍ତ ଅଜ୍ଞାନ ଦୂର ହୋଇଥାଏ ।"

ମହର୍ଷି ସୂତଙ୍କୁ ଶୌନକ ପଚାରିଲେ—"ଭଗବାନ୍ ! ପ୍ରଳୟ କାଳରେ କୌଣସି ଜୀବ ବଞ୍ଚି ରହୁନଥିବା ବେଳେ ରାଜା ସତ୍ୟବ୍ରତ କିପରି ବଞ୍ଚି ରହିଲେ ?"

ସୂତ ଉତ୍ତର ଦେବାକୁ ଯାଇ କହିଲେ—"ଭଗବାନ୍ ! ଭଗବତ୍ କୃପା ଆଗରେ କୌଣସି କଥା ଅସମ୍ଭବ ନୁହେଁ । ରାଜର୍ଷି ସତ୍ୟବ୍ରତ ଘୋର ତପସ୍ୟା କରିଥିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ପିତାମହ ବ୍ରହ୍ମା ବର ଦେଇଥିଲେ ଯେ ପ୍ରଳୟକାଳୀନ ସମସ୍ତ ଦୃଶ୍ୟ ସେ ନିଜ ଆଖିରେ ଦେଖିବେ ଏବଂ ପ୍ରଳୟକାଳ ଶେଷରେ ସମସ୍ତ ଜୀବ ତାଙ୍କଠାରୁ ଉତ୍ପତ୍ତି ଲାଭ କରିବେ । ସେହି ବର ପ୍ରଭାବରୁ ଭଗବାନ୍ ମତ୍ସ୍ୟ ଅବତାର ଗ୍ରହଣ କରି ନିଜର ସମସ୍ତ ବିଭୂତି ସତ୍ୟବ୍ରତଙ୍କୁ ଦେଖାଇ-

ଥିଲେ । ବ୍ରହ୍ମାଙ୍କ ଯୋଗନିଦ୍ରା ଶେଷରେ ରାଜା ସତ୍ୟବ୍ରତ ସୂର୍ଯ୍ୟଙ୍କ ପୁତ୍ର ଶ୍ରାଦ୍ଧଦେବ ନାମରେ ଖ୍ୟାତ ହେଲେ । ଭଗବାନ୍ ତାଙ୍କୁ ମନୁପଦରେ ନିଯୁକ୍ତ କଲେ । ଆଜିକାଲି ଆମେ ସେହି ମନୁଙ୍କ ଶାସନରେ ରହି ଏହି ଭଗବତ କଥା ଆଲୋଚନା କରୁଛୁ । ମୋର ଗୁରୁ ଶୁକଦେବ ମତ୍ସ୍ୟ ଭଗବାନ୍‌ଙ୍କ ଚରିତ ଯେପରି ବର୍ଣ୍ଣନା କରିଥିଲେ ତାହା କହିବା ପରେ ବିବସ୍ୱାନ୍‌ଙ୍କ ପୁତ୍ର ଶ୍ରାଦ୍ଧଦେବ ମନୁବଂଶର ବର୍ଣ୍ଣନା କରିବି ।"

ମହାରାଜ ପରୀକ୍ଷିତଙ୍କୁ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରଳୟକାଳର ରାତ୍ରି ଶେଷହେବା ପର୍ଯ୍ୟନ୍ତ ଭଗବାନ୍ ଉପଦେଶ ଦେଉଥିଲେ । ରାତ୍ରି ଶେଷ ହୋଇ ଆସିବାରୁ ବ୍ରହ୍ମାଙ୍କ ନିଦ୍ରାଭଙ୍ଗ ସମୟ ହେଲା ବୋଲି ଜାଣି ଭଗବାନ୍ ବ୍ୟସ୍ତ ହୋଇପଡ଼ିଲେ । କାରଣ, ରାକ୍ଷସ ହୟଗ୍ରୀବ ବେଦକୁ ନେଇଯାଇଥିଲା । ବ୍ରହ୍ମା ନିଦ୍ରିତ ଥିବାବେଳେ ବେଦହୀନ ଥିଲେ । କିନ୍ତୁ ଜାଗ୍ରତ ହେଲେ ବେଦହୀନ ହୋଇ ସେ କିପରି ସୃଷ୍ଟି ରଚନା କରିବେ ? ତେଣୁ ଅନ୍ତଃକରଣ ରୂପକ ପାତାଳରେ ପ୍ରବେଶ କରି ପ୍ରଭୁ ଆଳସ୍ୟ ରୂପକ ରାକ୍ଷସକୁ ହତ୍ୟା କଲେ ଏବଂ ଜ୍ଞାନ ରୂପକ ବେଦକୁ ଆଣି ବ୍ରହ୍ମାଙ୍କୁ ନିଦରୁ ଉଠାଇଲେ । ବ୍ରହ୍ମା ନିଦ୍ରା ତ୍ୟାଗ କରି ସଚେତନ ହେଲେ ଏବଂ ଜ୍ଞାନ ଲାଭ ପରେ ପୁଣି ସୃଷ୍ଟି କ୍ରିୟାରେ ପ୍ରବୃତ୍ତ ହେଲେ । ହୃଦୟ ରୂପକ ସାଗରରେ ମତ୍ସ୍ୟ ରୂପଧାରୀ ଭଗବାନ୍ ନିତ୍ୟ ବିହାର କରନ୍ତି । ଯେ ସତ୍ୟବ୍ରତ ସେ କେବଳ ତାଙ୍କର ସାକ୍ଷାତ ଲାଭ କରେ ।

ପ୍ରତିଦିନ ଆଳସ୍ୟ ରୂପକ ହୟଗ୍ରୀବ ଆସି ଆମର ଜ୍ଞାନ ରୂପକ ବେଦ ବା ବୋଧଶକ୍ତିକୁ ହରଣ କରି ନେଇଯାଏ । ଆମେ ଜ୍ଞାନହୀନ ହୋଇ ମୃତବତ୍ ନିଦ୍ରାର ବଶୀଭୂତ ହେଉଁ । ନିତ୍ୟ ଜାଗ୍ରତ ଭଗବାନ୍ ମତ୍ସ୍ୟ ପ୍ରତିଦିନ ହୟଗ୍ରୀବ ଦୈତ୍ୟକୁ ମାରି ଆମକୁ ସଚେତନ କରାଉଛନ୍ତି ଓ ଜ୍ଞାନ ଦାନ କରୁଛନ୍ତି । ଆମେ ଗତକାଲିର ଅପୂର୍ଣ୍ଣ କାମକୁ ପୂର୍ଣ୍ଣ କରିବାରେ ଲାଗିପଡ଼ୁ । କିନ୍ତୁ ସାରାଜୀବନ ଯେତେ କାମ କଲେ ମଧ୍ୟ କାମ ସରେ ନାହିଁ । କାରଣ ଆମେ ସର୍ବଦା ଅପୂର୍ଣ୍ଣର ଆଶ୍ରୟରେ ହିଁ ରହିଛୁ । ଯଦି ପୂର୍ଣ୍ଣର ଆଶ୍ରୟ ନିଅନ୍ତୁ, ତେବେ ପୂର୍ଣ୍ଣରୁ ଯେତେ ବାହାର କରି ନେଲେ ମଧ୍ୟ ବା ଯେତେ ସଂଯୋଗ କଲେ ମଧ୍ୟ ତାହା ପୂର୍ଣ୍ଣ ହୋଇ ରହିଥାଏ । ଏହାହିଁ ମତ୍ସ୍ୟାବତାର ଚରିତର ଆଧ୍ୟାତ୍ମିକ ରହସ୍ୟ ।"

ରାଜର୍ଷି ସତ୍ୟବ୍ରତ ଓ ମାୟା ମତ୍ସ୍ୟ ରୂପଧାରୀ ଶ୍ରୀହରିଙ୍କ ମୁଖନିଃସୃତ ସମ୍ବାଦକୁ ଯେ ଶୁଣେ, ପଢ଼େ, ପଢ଼ାଏ, ଶ୍ରଦ୍ଧାର ସହିତ ଗାନ କରେ ଓ କରାଏ ତାର ସମସ୍ତ ସଂସାର ବନ୍ଧନ ଅବିଳମ୍ବେ ଛିନ୍ନ ହୋଇଯାଏ । ଏଥିରେ ଆଦୌ ସନ୍ଦେହ ନାହିଁ । ଏହା ଧ୍ରୁବ ସତ୍ୟ । ଏହାହିଁ ସମସ୍ତଙ୍କର ସୁଖଦାୟକ । ଯେ ଶ୍ରଦ୍ଧାର ସହିତ

ମତ୍ସ୍ୟପୁରାଣ କୀର୍ତ୍ତନ କରେ ତା'ର ସମସ୍ତ ମନୋରଥ ପୂର୍ଣ୍ଣ ହୁଏ । ଅତ ସଂକ୍ଷେପରେ ମୁଁ ମତ୍ସ୍ୟାବତାର କଥା ବର୍ଣ୍ଣନା କଲି । ମହାରାଜ ! ଆପଣ ଆଉ କ'ଣ ଶୁଣିବା ପାଇଁ ଚାହୁଁଛନ୍ତି ?"

ଏହାପରେ ମହାରାଜ ପରୀକ୍ଷିତ କହିଲେ—"ଭଗବାନ୍ ! ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର ଭୋଗ କରେ ବୋଲି ଆପଣ କହିଛନ୍ତି । ସେଥିରୁ ସାତୋଟି ମନ୍ୱନ୍ତର କଥା ଆପଣ ବର୍ଣ୍ଣନା କଲେ । ଆଗାମି ଛଅଟି ମନ୍ୱନ୍ତର ବିଷୟର ସୂଚନା ମାତ୍ର ଦେଲେ । ମୁଁ ଭାବୁଛି, ଯାହା ଘଟିଯାଇଛି ସେଥିରୁ ସିନା କିଛି ଶିକ୍ଷା ମିଳିବ । କିନ୍ତୁ ଯାହା ଭବିଷ୍ୟତରେ ଘଟିବ ସେଥିରୁ କ'ଣ ଶିକ୍ଷା ଲାଭ ହେବ ? କାରଣ, ଭବିଷ୍ୟତ ଅନ୍ଧକାର ଗର୍ଭରେ ଲୀନ । ସେ ବିଷୟରେ କଳ୍ପନା ଜଳ୍ପନା କରିବା ନିରର୍ଥକ । ଯାହା କିଛି କରିବାର କଥା ତାହା କେବଳ ବର୍ତ୍ତମାନ କାଳରେ ସମ୍ଭବ । ସେଥିପାଇଁ ମୁଁ ବର୍ତ୍ତମାନ ପ୍ରଚଳିତ ବୈବସ୍ୱତ ମନ୍ୱନ୍ତର କଥା କହିବା ପାଇଁ ଆପଣଙ୍କୁ ପ୍ରାର୍ଥନା କରିଥିଲି । କିନ୍ତୁ ପ୍ରସଙ୍ଗକ୍ରମେ ବାମନାବତାର ଓ ମତ୍ସ୍ୟାବତାର, ରାଜର୍ଷି ସତ୍ୟବ୍ରତଙ୍କୁ ଭଗବାନଙ୍କ ଉପଦେଶ କଥା ଆପଣ କହିଲେ । ସେହି ସତ୍ୟବ୍ରତ ଏହି କଳ୍ପରେ ବିବସ୍ୱାନ୍‌ଙ୍କ ପୁତ୍ର ବୈବସ୍ୱତ ମନୁ ହେଲେ । ଆପଣ କହୁଥିଲେ ବୈବସ୍ୱତ ମନୁଙ୍କଠାରୁ ଇକ୍ଷ୍ୱାକୁ ଆଦି ପୁତ୍ର ହେଲେ ।

ଭଗବନ୍ ! ଆପଣ ଦୟା କରି ସେହି ରାଜର୍ଷିମାନଙ୍କ ଚରିତ ବିସ୍ତୃତଭାବେ ବର୍ଣ୍ଣନା କରନ୍ତୁ । କାରଣ ସେହି ମନୁ ହେଉଛନ୍ତି ଆମର ପୂର୍ବଜ । ମୁଁ ତାଙ୍କର ବଂଶରେ ଜନ୍ମ । ତେଣୁ ମନୁବଂଶର କାହାଣୀ ଶୁଣିଲେ ଆମେ ଆନନ୍ଦିତ ହେବା । ଏହି ମନ୍ୱନ୍ତରରେ ଭଗବାନ୍ ବିଭିନ୍ନ ଅବତାରରେ ଅବତୀର୍ଣ୍ଣ ହୋଇଛନ୍ତି । ତେଣୁ ଏପର୍ଯ୍ୟନ୍ତ ଯେତେ ରାଜା ଜନ୍ମ ହୋଇଛନ୍ତି ଏବଂ ଯେଉଁମାନେ ଏବେ ରାଜା ଅଛନ୍ତି ଏପରିକି ମୋ'ପରେ ଯେଉଁମାନେ ରାଜା ହେବେ ସମସ୍ତଙ୍କ କଥା ଆପଣ କହିବା ପାଇଁ ପ୍ରାର୍ଥନା କରୁଛି । ପବିତ୍ର କୀର୍ତ୍ତିଶୀଳ ସେହି ରାଜର୍ଷିମାନଙ୍କ ପ୍ରତି କୃପା ପ୍ରଦର୍ଶନ ନିମିତ୍ତ ଭଗବାନ୍ ବହୁବାର ଅବତାର ଗ୍ରହଣ କରିଛନ୍ତି । ମୁଁ ଶୁଣିଛି, ଏହି ବଂଶରେ ପୂର୍ଣ୍ଣାବତାର ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ଅବତୀର୍ଣ୍ଣ ହୋଇ ନାନା ଲୀଳା ରଚନା କରିଥିଲେ । ତେଣୁ ପ୍ରଥମେ ବୈବସ୍ୱତ ମନୁବଂଶ ଓ ପରେ ମୋର ପରମ ଆରାଧ୍ୟ ଭଗବାନ୍ କୃଷ୍ଣଙ୍କ ଚରିତ ବର୍ଣ୍ଣନା କରିବାକୁ ନିବେଦନ । ଆଜି ଚତୁର୍ଥ ଦିବସ ହେଲା । ଭଗବାନ୍ ଓ ତାଙ୍କ ଆଶ୍ରିତ ଭକ୍ତମାନଙ୍କ କଥା ଶୁଣି ଶୁଣି ମୁଁ ପ୍ରାଣ ପରିତ୍ୟାଗ କରିବା ପାଇଁ ଇଚ୍ଛା କରୁଛି ।

ମହର୍ଷି ସୂତ କହିଲେ—ମୁନିଗଣ ! ମୋର ଗୁରୁ ଶୁକଦେବଙ୍କୁ ପ୍ରାୟୋ-ପବେଶନ ବ୍ରତ ପାଳନ କରୁଥିବା ମହାରାଜ ପରୀକ୍ଷିତ ଯେତେବେଳେ ଏପ୍ରକାର ପ୍ରଶ୍ନ କଲେ ସେତେବେଳେ ରାଜାଙ୍କ ଉତ୍ସୁକତା ଲକ୍ଷ୍ୟ କରି ଏବଂ ପ୍ରସନ୍ନଚିତ୍ତ ରାଜାଙ୍କୁ ଭୂରି ଭୂରି ପ୍ରଶଂସା କରି ଶ୍ରୀଗୁରୁଦେବ କହିଲେ—ରାଜନ୍ ! ଆପଣ ଭାଗବତ କଥା ଶୁଣିବା ପାଇଁ ଜଣେ ଯୋଗ୍ୟତମ ବ୍ୟକ୍ତି । ଆପଣ ପ୍ରସଙ୍ଗରେ ଆମକୁ ଭଲରୂପେ ମନେ ରଖିଛନ୍ତି । ହେ ଶୁଣନ୍ତୁ, ମନୁ ବଂଶର ବିସ୍ତୃତ ବର୍ଣ୍ଣନା ପାଇଁ ହଜାର ହଜାର ବର୍ଷ ଲାଗିଯିବ । ତଥାପି ପୂର୍ଣ୍ଣାଙ୍ଗ ବର୍ଣ୍ଣନା ସମ୍ଭବ ହେବନାହିଁ । ଆଉ ମାତ୍ର ସାଢ଼େ ଛଅଦିନ ମଧ୍ୟରେ ମୁଁ ଏ ପ୍ରସଙ୍ଗ କିପରି ବର୍ଣ୍ଣନା କରିବାକୁ ସମର୍ଥ ହେବି । ପୁନଶ୍ଚ ତା'ର ଆବଶ୍ୟକତା ମଧ୍ୟ ନାହିଁ । ତେଣୁ ମନୁବଂଶ ବର୍ଣ୍ଣନା ପ୍ରସଙ୍ଗରେ ଯେଉଁ ଭଗବଦ୍‌ଭକ୍ତ ରାଜାଗଣ ନିଜର କୀର୍ତ୍ତି ପ୍ରତିଷ୍ଠା କରିଯାଇଛନ୍ତି ସେମାନଙ୍କ ମଧ୍ୟରୁ ମୁଖ୍ୟ ମୁଖ୍ୟ ରାଜାଙ୍କ ଚରିତ ସଂକ୍ଷେପରେ ଆପଣଙ୍କୁ କହିବି । ଆପଣ ସାବଧାନ ହୋଇ ଶୁଣନ୍ତୁ ।

ଏତିକି କହି ଭଗବାନ୍ ଶୁକଦେବ ବୈବସ୍ୱତ ମନ୍ୱନ୍ତରରେ ଆବିର୍ଭୂତ ହୋଇଥିବା ରାଜାମାନଙ୍କ କାହାଣୀ କହିବା ଆରମ୍ଭ କଲେ ।"

## ଛପ୍‌ପୟ

ପରମ ପୁଣ୍ୟପ୍ରଦ ମତ୍ସ୍ୟ ଚରିତ ଜେ ସୁନେ ସୁନାଓେଁ ।<br>
ପ୍ରଭୁପଦ ପ୍ରକଟୈ ପ୍ରେମ ପରମ ପଦ ତେ ନର ପାଓେଁ ॥<br>
ସୂନି ଶଫରୀ ହରି ଚରିତ ପରୀକ୍ଷିତ ଅତି ହରଷାୟେ ।<br>
କଥା ପ୍ରସଙ୍ଗ ଚଲାୟେ ସାମୟିକ ବଚନ ସୁନାୟେ ॥<br>
ତେରହ ମନ୍ୱନ୍ତର କଥା, ନାଥ କୃପା କରିକେଁ କହୀ ।<br>
ବୈବସ୍ୱତ ମନୁବଂଶ କୀ, କହହୁ କଥା ଜୋ ବଚ ରହୀ ॥



# ବୈବସ୍ୱତ ମନୁବଂଶ ବର୍ଣ୍ଣନ

ଶ୍ରୂୟତାଂ ମାନବୋ ବଂଶ ପ୍ରାଚୂର୍ଯ୍ୟେଣ ପରନ୍ତପଃ ।
ନ ଶକ୍ୟତେ ବିସ୍ତରତୋ ବକ୍ତୁଂ ବର୍ଷଶତୈରପି ॥

( ଭା-୯-୧-୭ )

## ଛପ୍ପୟ

ବୋଲେ ଶ୍ରୀଶୁକ ଶ୍ରାଦ୍ଧଦେବ ମନୁ ବଂଶ ସୁନହୁ ଅବ ।
ମହାକଲ୍ପ ପଶ୍ଚାତ୍ ଶୟନ ସବେଷ୍ଣ କରେଁ ଜବ ॥
ହୋହି ନଶା କୋ ଅନ୍ତ ନାଭିତେଁ ପ୍ରକଟେ ପଙ୍କଜ ।
ତାତେଁ ବ୍ରହ୍ମା ହୋହିଁ ଚତୁର୍ଭୁଜ କମଲାସନ ଅଜ ॥
ମନତେ ପ୍ରକଟ ମରୀଚି ମୁନି, ତିନକେ କଶ୍ୟପ ପ୍ରଜାପତି ।
ବିବସ୍ୱାନ ତିନକେ ତନୟ, ଜିନକୋ ଜଗମହଁ ତେଜ ଅତି ॥

ଆର୍ଯ୍ୟ ଶାସ୍ତ୍ର ଗୁଡ଼ିକରେ ପୂର୍ଣ୍ଣ ବର୍ଣ୍ଣନା କରିବାର ପ୍ରଥାଅଛି । ଯାହା ବର୍ଣ୍ଣନା କରାଯାଏ ତାହାଦ୍ୱାରା ପୂର୍ଣ୍ଣବ୍ରହ୍ମଙ୍କ ସହିତ ସମ୍ପର୍କ ସ୍ଥାପିତ ହୁଏ ଏବଂ ଶେଷରେ ପୂର୍ଣ୍ଣତାଦ୍ୱାରାହିଁ କଥାର ଅବସାନ କରାଯାଏ । ଅଗ୍ନିରୁ ସ୍ଫୁଲିଙ୍ଗ ନିର୍ଗତ ହୁଏ ଏବଂ ସେହି ଅଗ୍ନିରେହିଁ ତା'ର ବିଲୟ ଘଟେ । ଏହି ସ୍ଫୁଲିଙ୍ଗରୁ କେତେକ ବଡ଼ହୁଏ ଓ କେତେକ ଛୋଟ ଆକାରର ହୋଇଥାଏ । କେତେକ ସ୍ଫୁଲିଙ୍ଗ ଭୟଙ୍କର ଭାବରେ ଲାଲ ହୋଇଥାଏ ଆଉ କେତେକ ସୃଷ୍ଟି ହେବାମାତ୍ରେ ବିଲୀନ ହୋଇଯାଇଥାଏ । ଅଗ୍ନିକୁ ଛାଡ଼ି ସ୍ଫୁଲିଙ୍ଗର କୌଣସି ସତ୍ତା, ଅସ୍ତିତ୍ୱ ଯେପରି ନଥାଏ ସେହିପରି ପ୍ରଜାପତି, ମନୁ, ମନୁପୁତ୍ର, ଦେବତା, ଇନ୍ଦ୍ର ଓ ଚରାଚର ଜଗତ୍ ସେହି ବିଶ୍ୱମ୍ଭରଙ୍କର ଲୀଳା ବିଳାସ ମାତ୍ର । ଜଣଙ୍କର ଗୋଟିଏ ଦିନରେ ଅନ୍ୟ କେତେକଙ୍କର କେତେ ଜନ୍ମ ଘଟିଯାଏ । କୀଟ, ପତଙ୍ଗ ଦିନକ ମଧ୍ୟରେ ଅନେକବାର ମୃତ୍ୟୁବରଣ କରନ୍ତି । କିଏ ପନ୍ଦର ଦିନ, କିଏ ମାସେ, କିଏ ବା ବର୍ଷେ ପର୍ଯ୍ୟନ୍ତ ବଞ୍ଚେ । କିଏ ନିଜକୁ ଶତାୟୁ କହେ । କେତେକ ଶହେଦିବ୍ୟବର୍ଷ, ଆଉ କେତେକ ମନ୍ୱନ୍ତର ବା

କଲିକାଳ ଶେଷ ପର୍ଯ୍ୟନ୍ତ ବଞ୍ଚିରହିବେ । ସମସ୍ତେ ଏକପ୍ରକାର ଜୀବ । କିନ୍ତୁ ଯେଉଁମାନେ ପ୍ରଭୁ ଭକ୍ତ, ପ୍ରଭୁଙ୍କ କୃପାଲବ୍ଧ ସେମାନେ ପ୍ରଭୁମସ୍ତ ପାଲିଟିଯାନ୍ତି । ସେମାନଙ୍କ ଚରିତ ଶୁଣିଲେ ଭଗବଦ୍ ଭକ୍ତିଭାବ ଉଦୟ ହୁଏ । ପରମାର୍ଥ ପଥ ସୁଗମ ହୋଇଯାଏ । ତେଣୁ ପୁଣ୍ୟାତ୍ମାମାନଙ୍କର ପବିତ୍ର ଚରିତ୍ର ପ୍ରତିପାଦନ ପାରାୟଣ କରିବା ଆବଶ୍ୟକ । ସେମାନଙ୍କ ଚରିତ ଶ୍ରବଣ, ମନନ, ଚିନ୍ତନ ଦ୍ୱାରାହିଁ ସମୟର ସଦୁପଯୋଗ ହୋଇଥାଏ ।

ମହାରାଜ ପରୀକ୍ଷିତଙ୍କ ଆଗ୍ରହ ଦେଖି ବ୍ୟାସତନୟ ଭଗବାନ୍ ଶୁକଦେବ ମନୁବଂଶ ବର୍ଣ୍ଣନା କରିବାକୁ ଯାଇ କହିଲେ—ରାଜନ୍ ! ବର୍ତ୍ତମାନ ବୈବସ୍ୱତ ମନ୍ୱନ୍ତରର ଅଷ୍ଟାବିଂଶତିତମ କଳିଯୁଗ ଚାଲିଛି । ଏଥିରୁ ଏହି ମନ୍ୱନ୍ତରରେ ଚାରିଯୁଗ ସତେଇଶ ବାର କଟିଗଲାଣି । ଏକ ମନ୍ୱନ୍ତର ୭୧ଟି ଚତୁର୍ଯୁଗରୁ କିଛି ଅଧିକ କାଳ ଭୋଗକରେ । ମନ୍ୱନ୍ତର ଆରମ୍ଭରେ ମନୁ ନିଜ ପଦରେ ନିଯୁକ୍ତ ହୁଅନ୍ତି ଏବଂ ପ୍ରଜାପାଳନ ପାଇଁ ପୁତ୍ର ଉତ୍ପନ୍ନ କରନ୍ତି । ସେହି ପୁତ୍ରମାନେ ବଂଶାନୁକ୍ରମେ ମନ୍ୱନ୍ତର ଶେଷ ପର୍ଯ୍ୟନ୍ତ ପୃଥିବୀ ପାଳନ କରନ୍ତି । ତେଣୁ ୨୮ ତମ ଚତୁର୍ଯୁଗରେ ଯେତେ ରାଜା ହେବେ ସେମାନଙ୍କର କଥା ଯଦି ମୁଁ ବର୍ଣ୍ଣନା କରିବି ତେବେ ଯୁଗଯୁଗ ଧରି ତାହା ଶେଷ କରିହେବ ନାହିଁ । ଯଥାସମ୍ଭବ ସଂକ୍ଷେପରେ ମନୁବଂଶ ବର୍ଣ୍ଣନା କରୁଛି । ଆପଣ ଶ୍ରଦ୍ଧାର ସହିତ ଶୁଣନ୍ତୁ ।

ସଚ୍ଚିଦାନନ୍ଦ, ସର୍ବେଶ୍ୱର, ପରାତ୍ପର ପ୍ରଭୁ ହେଉଛନ୍ତି ସମସ୍ତଙ୍କର ସ୍ୱାମୀ । ତାଙ୍କ ଇଚ୍ଛା ବିନା ଗଛର ପତ୍ରଟିଏବି ହଲିବ ନାହିଁ । ସୃଷ୍ଟିକଥା କିଛି କହିହେବ ନାହିଁ । ନାରାୟଣ ଯେତେବେଳେ ଇଚ୍ଛାକରନ୍ତି ସେତେବେଳେ ସୃଷ୍ଟି କରନ୍ତି, ସ୍ୱୟଂ ନିଜର ସୃଷ୍ଟିକୁ ପାଳନ କରନ୍ତି ଏବଂ ଇଚ୍ଛା ହେଲାମାତ୍ରେ ସବୁକିଛି ନିଜର ବିଶ୍ୱରୂପ ମଧ୍ୟରେ ମିଶାଇ ଦିଅନ୍ତି । ଫଳରେ ଦୃଶ୍ୟଜଗତ୍ ମହାଶୂନ୍ୟରେ ମିଳାଇଯାଏ । ସେ ଶୋଇଯାନ୍ତି, ମିଛରେ ଆଖି ବୁଜିଦିଅନ୍ତି । କେତେବେଳେ ପୁଣି ଆଖି ଅଧା ଖୋଲିଥାଏ । କାଳର ପ୍ରେରଣାରେ ତାଙ୍କର ଆଖି ଖୋଲେ ବୋଲି କହନ୍ତି । ଏସବୁ ତୁଚ୍ଛ ଔପଚାରିକତା ବ୍ୟତୀତ ଅନ୍ୟକିଛି ନୁହେଁ ।

ରାଜନ୍ ! ଭଗବାନ୍ ଯେତେବେଳେ ଯୋଗନିଦ୍ରାରେ ଶୋଇଯାନ୍ତି ଏବଂ ସୃଷ୍ଟିର ସମସ୍ତ ହୋଇଯାଏ ସେତେବେଳେ ତାଙ୍କ ନାଭିରୁ କମଳ ଉତ୍ପନ୍ନ ହୁଏ । ସେହି ସୁବର୍ଣ୍ଣମୟ ଦିବ୍ୟ କମଳ ସମ୍ପୂର୍ଣ୍ଣ ସୃଷ୍ଟିର ମୂଳ କାରଣ । ସେହି କମଳରୁ ଆବିର୍ଭୂତ ହୁଅନ୍ତି ଚତୁର୍ମୁଖ ବ୍ରହ୍ମା । ସେ ମନରୁ ପ୍ରଜାପତିମାନଙ୍କୁ ସୃଷ୍ଟି କରନ୍ତି ।

ସେହି ପ୍ରଜାପତିମାନେ ନାନା ଯୋନିରେ ଜନ୍ମଗ୍ରହଣ କରୁଥିବା ଜୀବମାନଙ୍କର ଜନକ । ସେମାନଙ୍କୁ ପ୍ରଜାମାନଙ୍କ ପିତା ଓ ବ୍ରହ୍ମାଙ୍କୁ ପିତାମହ କୁହାଯାଏ । ପ୍ରଥମେ ସୃଷ୍ଟି ଯେପରି ଥିଲା ପୁଣି ସେହିପରି ସୃଷ୍ଟି ହୋଇଯାଏ । ଏହା ମୁଁ ଆଗରୁ କହିଆସିଛି । ବର୍ତ୍ତମାନ ଚଳିତ ମନ୍ୱନ୍ତରର ଅଧିପତି ବୈବସ୍ୱତ ମନୁ ଶ୍ରାଦ୍ଧଦେବଙ୍କ ବଂଶାବଳୀ କଥା କହୁଛି ।

ଶ୍ରୀମନ୍ନାରାୟଣଙ୍କଠାରୁ ବ୍ରହ୍ମା ଓ ତାଙ୍କଠାରୁ ମରୀଚି ଜାତହେଲେ । ମରୀଚିଙ୍କଠାରୁ ଭଗବାନ୍ କଶ୍ୟପ ଜନ୍ମହେଲେ । ସମସ୍ତ ପ୍ରାଣୀଙ୍କର ସେ ଜନ୍ମଦାତା । ଦିତି, ଅଦିତି, କାଷ୍ଠା ଆଦି ନାମରେ ତାଙ୍କର ୧୩ ଜଣ ପତ୍ନୀ ଥିଲେ । ଜ୍ୟେଷ୍ଠାପତ୍ନୀ ଦିତିଙ୍କଠାରୁ ଦୈତ୍ୟବଂଶ ସୃଷ୍ଟି ହେଲା । ଅଦିତିଙ୍କଠାରୁ ଆଦିତ୍ୟ । ଦଶ ଆଦିତ୍ୟଙ୍କ ମଧ୍ୟରେ ବିବସ୍ୱାନ୍ (ସୂର୍ଯ୍ୟ) ଅନ୍ୟତମ । ବିବସ୍ୱାନ୍ ବିଶ୍ୱକର୍ମାଙ୍କ ପୁତ୍ରୀ ସଂଜ୍ଞାକୁ ବିବାହ କରିଥିଲେ । ସଂଜ୍ଞା ଛାୟା ଓ ବଡ଼ବା ନାମରେ ନିଜର ଅନ୍ୟ ଦୁଇରୂପ ସୃଷ୍ଟି କରିଥିଲେ । ସଂଜ୍ଞାଙ୍କ ଗର୍ଭରୁ ଶ୍ରାଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । ଶ୍ରାଦ୍ଧଦେବ ଓ ରାଜର୍ଷି ସତ୍ୟବ୍ରତ ଏକ ବ୍ୟକ୍ତି । ପ୍ରଳୟ କାଳରେ ଯେ ସତ୍ୟବ୍ରତ ଥିଲେ ସେ ନୂତନ କଳ୍ପ ଆରମ୍ଭରେ ଶ୍ରାଦ୍ଧଦେବ ରୂପେ ଜନ୍ମହେଲେ । ବିବସ୍ୱାନଙ୍କ ପୁତ୍ର ହୋଇଥିବାରୁ ତାଙ୍କୁ ବୈବସ୍ୱତ କୁହାଗଲା । ଭଗବାନ୍ ତାଙ୍କୁ ମନୁ ପଦରେ ପ୍ରତିଷ୍ଠା କରିଥିଲେ ।

ମହାରାଜ ! ଆମେ ଏବେ ବୈବସ୍ୱତ ମନ୍ୱନ୍ତରରେ କାର୍ଯ୍ୟ କରୁଛୁ । ତାଙ୍କର ବଂଶଜ ପୁତ୍ରମାନେ ବର୍ତ୍ତମାନ ବସୁନ୍ଧରାକୁ ଉପଭୋଗ କରୁଛନ୍ତି ।

ମହାରାଜ ପରୀକ୍ଷିତ ପଚାରିଲେ—ଭଗବନ୍ ! ବୈବସ୍ୱତ ମନୁ ଆମର ପୂର୍ବଜ । ସେ କାହାକୁ ବିବାହ କଲେ ଏବଂ ତାଙ୍କର କେତେପୁଅ ହେଲେ ?

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ବୈବସ୍ୱତ ମନୁଙ୍କ ପତ୍ନୀଥିଲେ ଶ୍ରଦ୍ଧା । ତାଙ୍କ ଗର୍ଭରୁ ଇକ୍ଷ୍ୱାକୁ, ନୃଗ, ଶର୍ଯ୍ୟାତି, ଦିଷ୍ଟ, ଧୃଷ୍ଟ, କରୂଷ, ନରିଷ୍ୟନ୍ତ, ପୃଷଧ୍ର, ନଭଗ ଓ କବି ନାମରେ ଦଶପୁତ୍ର ଜନ୍ମଗ୍ରହଣ କରିଥିଲେ । ସମସ୍ତ କ୍ଷତ୍ରିୟ ଏହି ଦଶପୁତ୍ରଙ୍କଠାରୁ ଜନ୍ମଗ୍ରହଣ କରିଥିଲେ । ସେହି କ୍ଷତ୍ରିୟ ବଂଶଜମାନେ ଏକ ମନ୍ୱନ୍ତର ପର୍ଯ୍ୟନ୍ତ ପୃଥିବୀ ଶାସନ କରିବେ । ସେମାନେ ସମସ୍ତେ ସୂର୍ଯ୍ୟବଂଶୀ କ୍ଷତ୍ରିୟ ରୂପେ ପରିଚିତ । ସେହି ବୈବସ୍ୱତ ମନୁଙ୍କଠାରୁ ମଧ୍ୟ ଚନ୍ଦ୍ରବଂଶୀ କ୍ଷତ୍ରିୟମାନେ ଉତ୍ପତ୍ତି ଲାଭ କରିଥିଲେ ।

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ—ଭଗବନ୍ ! ଆମେତ ନିଜକୁ ଚନ୍ଦ୍ରବଂଶୀ କ୍ଷତ୍ରିୟ ବୋଲି ପରିଚୟ ଦେଉଁ । କିନ୍ତୁ ବୈବସ୍ୱତମନୁଙ୍କ କେଉଁ ପୁତ୍ରଠାରୁ ଚନ୍ଦ୍ରବଂଶୀୟମାନେ ଜନ୍ମଗ୍ରହଣ କଲେ ?

ଶ୍ରୀ ଶୁକଦେବ କହିଲେ – ରାଜନ୍ ! ଇକ୍ଷ୍ୱାକୁ ଆଦି ଦଶପୁତ୍ରଙ୍କଠାରୁ ଚନ୍ଦ୍ରବଂଶ ଉତ୍ପତ୍ତି ଲାଭକରି ନଥିଲା । ସେହି ଦଶପୁତ୍ରଙ୍କ ବଂଶଧରମାନେ ସୂର୍ଯ୍ୟବଂଶୀ ରୂପେ ପରିଚିତ । ଏହି ଦଶପୁତ୍ରଙ୍କ ବ୍ୟତୀତ ବୈବସ୍ୱତଙ୍କ ସବୁଠୁ ବଡ଼ପୁଅ ଥିଲେ ସୁଦ୍ୟୁମ୍ନ । ତାଙ୍କରିଠାରୁ ଚନ୍ଦ୍ରବଂଶ ସୃଷ୍ଟି ହୋଇଥିଲା । ସୁଦ୍ୟୁମ୍ନଙ୍କ ପୁଅ ପୁରୂରବା ଥିଲେ ପ୍ରତିଷ୍ଠାନପୁରର ରାଜା । ଚନ୍ଦ୍ରବଂଶୀୟ କ୍ଷତ୍ରିୟମାନଙ୍କ ସେ ଆଦିପୁରୁଷ ଥିଲେ । ତାଙ୍କଠାରୁ ଚନ୍ଦ୍ରବଂଶର ଆରମ୍ଭ ହେଲା । ଚନ୍ଦ୍ରବଂଶୀ କ୍ଷତ୍ରିୟମାନଙ୍କ ନିବାସ ସ୍ଥାନ ପ୍ରତିଷ୍ଠାନପୁର ଏବଂ ସୂର୍ଯ୍ୟବଂଶୀ ରାଜାମାନଙ୍କ ନିବାସ ସ୍ଥାନ ଅଯୋଧ୍ୟାପୁରୀ । ଏହି ଦୁଇଟି ସ୍ଥାନରୁ ଉଭୟ ବଂଶର କ୍ଷତ୍ରିୟମାନେ ସମଗ୍ର ପୃଥିବୀରେ ବ୍ୟାପିଗଲେ । କେତେକ ନିଷାଦ ପତିହୋଇ ନିଷାଦ ପାଲଟିଗଲେ ଏବଂ କେତେକ ବର୍ଣ୍ଣାଶ୍ରମ ଅଂଗ୍ରର ସମ୍ପନ୍ନ ଦେଶର ଶାସକ ହୋଇ ଶୁଦ୍ଧ କ୍ଷତ୍ରିୟ ରୂପେ ପରିଚିତ ହେଲେ ।

ମହାରାଜ ପରୀକ୍ଷିତ ପଚାରିଲେ—ଭଗବନ୍ ! ମୋର ସନ୍ଦେହ ରହିଗଲା । ବୈବସ୍ୱତ ମନୁଙ୍କର ପ୍ରଦ୍ୟୁମ୍ନ ନାମରେ ଯେଉଁ ପୁତ୍ର ଥିଲେ ସେ ସୂର୍ଯ୍ୟବଂଶୀ ନହୋଇ ଚନ୍ଦ୍ରବଂଶୀ ରୂପେ ପରିଚିତ ହେଲେ କାହିଁକି ? ମହାରାଜ ପ୍ରଦ୍ୟୁମ୍ନଙ୍କ ପତ୍ନୀଙ୍କ ନାମ କଣ ? ଚନ୍ଦ୍ରବଂଶର ଆଦିପୁରୁଷ ମହାରାଜ ପୁରୂରବାଙ୍କ ମାତାପିତାଙ୍କ ନାମ କଣ ? ମହାରାଜ ସୁଦ୍ୟୁମ୍ନ ବଡ଼ପୁଅ ହୋଇଥିବାରୁ ପ୍ରଥମେ ତାଙ୍କର କଥା କୁହନ୍ତୁ ।

ଏହାଶୁଣି ଶ୍ରୀ ଶୁକଦେବ ହସି ହସି କହିଲେ—"ରାଜନ୍ ! ଆପଣଙ୍କ ପୂର୍ବଜ ପୁରୂରବାଙ୍କ ପିତା ଥିଲେ ସୁଦ୍ୟୁମ୍ନ ଏବଂ ସେହି ସୁଦ୍ୟୁମ୍ନ ଥିଲେ ତାଙ୍କର ମାତା । ଚନ୍ଦ୍ରଙ୍କ ପୁତ୍ର ବୁଧଙ୍କ ସଂସର୍ଗରୁ ବଂଶର ଆରମ୍ଭ ହୋଇଥିଲା । ତେଣୁ ପିତୃବଂଶ ଅନୁସାରେ ବଂଶର ନାମ ଚନ୍ଦ୍ରବଂଶ ହେଲା । ଖୁବ୍ ସମ୍ଭବତଃ ସେହିଦିନରୁ 'ତ୍ୱମେବ ମାତା ଚ ପିତା ତ୍ୱମେବ' ଶ୍ଳୋକ ପ୍ରଚଳିତ ହୋଇଛି ।"

ଆଶ୍ଚର୍ଯ୍ୟ ହୋଇ ମହାରାଜ ପରୀକ୍ଷିତ ପଚାରିଲେ– "ଭଗବନ୍ ! ଜଣେ ପୁରୁଷ ମାତା ଓ ପିତା ଉଭୟ ସ୍ଥାନୀୟ କିପରି ହେଲେ ? ଏହା ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଦୟାକରି ମୋର ଏ କୌତୂହଳ ସମାଧାନ କରନ୍ତୁ । ପରେ ପୁଣି କଥା ଅରମ୍ଭ କରିବେ ।"

ଏହାଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏ ସଂସାରରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଏଠାରେ ସବୁ ଅସମ୍ଭବ ସମ୍ଭବ ହୁଏ ଏବଂ ସବୁ ସମ୍ଭବ ଅସମ୍ଭବ ହୋଇ ରହିଯାଏ । ସ୍ତ୍ରୀ ପୁରୁଷ ପାଲଟିଯାଏ ଏବଂ ପୁରୁଷ ବି ସ୍ତ୍ରୀ

ପାଲଟିଯାଏ । ଅନେକ ସ୍ତ୍ରୀ ମୃତ୍ୟୁପରେ ପୁରୁଷ ହୋଇ ଜନ୍ମହୁଅନ୍ତି ଏବଂ ପୁରୁଷ ବ ମୃତ୍ୟୁପରେ ସ୍ତ୍ରୀ ଜନ୍ମଗ୍ରହଣ କରନ୍ତି । ଏହି ଦେହରେ ମଧ୍ୟ ସ୍ତ୍ରୀ ପୁରୁଷର ପରିବର୍ତ୍ତନ ଘଟିଥାଏ । ସେହିପରି ମହାରାଜ ସୁଦ୍ୟୁମ୍ନ ଥରେ ସ୍ତ୍ରୀ ପାଲଟି ଯାଇଥିଲେ ଏବଂ ତାଙ୍କର ଗର୍ଭରୁ ପୁରୂରବା ଜନ୍ମଗ୍ରହଣ କରିଥିଲେ ।"

ମହାରାଜ ପରୀକ୍ଷିତ ପୁଣି ପଚାରିଲେ—"ଭଗବନ୍ ! ମହାରାଜ ସୁଦ୍ୟୁମ୍ନ ପୁରୁଷରୁ ସ୍ତ୍ରୀ ପାଲଟିଥିଲେ କାହିଁକି ? ତାଙ୍କଠାରୁ ପୁରୁରବାଙ୍କ ଜନ୍ମ କିପରି ଘଟିଲା ? ଆପଣ ଦୟାକରି ପ୍ରଥମେ ସେଇକଥା କହନ୍ତୁ । ତା'ପରେ ସୂର୍ଯ୍ୟବଂଶର ବର୍ଣ୍ଣନା କରିବେ ।"

ଏହାଶୁଣି ଶ୍ରୀ ଶୁକଦେବ କହିଲେ—"ଭଲକଥା । ରାଜନ୍ ! ପ୍ରଥମେ ରାଜା ସୁଦ୍ୟୁମ୍ନଙ୍କ କଥା କହୁଛି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହାପରେ ଭଗବାନ୍ ଶୁକଦେବ ମହାରାଜ ସୁଦ୍ୟୁମ୍ନଙ୍କ କଥା କହିବାକୁ ପ୍ରସ୍ତୁତ ହେଲେ ।"

## ଛପ୍‌ପୟ

ବିବସ୍ୱାନ୍ କେ ପୁତ୍ର ଭୟେ ଶ୍ରୀ ବୈବସ୍ୱତ ମନୁ ।
ତନତେଁ ଶ୍ରଦ୍ଧା ମାହିଁ ଭୟେ ଦସ ସୁତ ଇନ୍ଦ୍ରିୟ ଜନୁ ।
ଇକ୍ଷ୍ୱାକୁ, ଶର୍ଯ୍ୟାତ, ଦୃଷ୍ଟି ଔର ଧୃଷ୍ଟ, ନଭଗ କବି ।
ନୃଗ, କରୁଷ, ନରସନ୍ତ ପୃଷଧ୍ରୁ ବଂଶ ବଢ଼ତ ରବି ।
ଇନ ସବକେ ପହିଲେ ଭୟେ, ସୁତ ସୁଦ୍ୟୁମ୍ନ ବିଚିତ୍ର ଅତି ।
ନରତେଁ ନାରୀ ବନ ଗୟେ, ଭୟେ ବିଚିତ୍ର ଶ୍ରୀ ଶମ୍ଭୁ ଗତି ॥



# ମହାରାଜ ସୁଦ୍ୟୁମ୍ନଙ୍କ ଜନ୍ମ

**ଅପ୍ରଜସ୍ୟ ମନୋଃ ପୂର୍ବଂ ବସିଷ୍ଠୋ ଭଗବାନ୍ କିଲ ।**
**ମିତ୍ରାବରୁଣୟୋରିଷ୍ଟିଂ ପ୍ରଜାର୍ଥମକରୋତ୍ ପ୍ରଭୁଃ ॥**

(ଭାଗ-୯-୧-୧୩)

## ଛପ୍ପଯ଼

ଶ୍ରାଦ୍ଧଦେବ ସୁତହୀନ ଯଜ୍ଞ ପୁତ୍ରେଷ୍ଟି କରାୟୋ ।
ମୁନି ବଶିଷ୍ଠ ଆଚାର୍ଯ୍ୟ ଯଜ୍ଞ କୋ ସାଜ ସଜାୟୋ ।
ରାନୀ ଇଚ୍ଛା କରୀ ପୁତ୍ର ନହିଁ ପୁତ୍ରୀ ହୋଵେ ।
ହୋତା ଆହୁତ ଦଇ ଲେଭ ସଂକଲ୍ପହିଁ ଗୋଵେ ॥
ଇଲା ନାମ କନ୍ୟା ଭଈ, ମନୁ ମନମହ ଚକ୍ରିତ ଭୟେ ।
ଗୁରୁସନ ବୋଲେ ଦୁଃଖିତ ହୈ, ମନ୍ତ୍ର ବ୍ୟର୍ଥକ୍ୟୋ ହୈ ଗୟେ

ମଣିଷ ଯାହା ଭାବେ ତାହା ଘଟେନାହିଁ ଏବଂ ଯାହା ଘଟିଯାଏ ତାହା ଭାବିପାରେ ନାହିଁ । କାରଣ ଭାଗ୍ୟଲିପିକୁ କେହି ଲିଭାଇ ଦେଇପାରିବ ନାହିଁ । କର୍ମରେଖାକୁ ପୋଛିବା ଅତି କଠିନ ବ୍ୟାପାର । ଏ ସମସ୍ତ ପ୍ରଭୁଙ୍କ ଇଚ୍ଛା ଅନୁସାରେ ଚାଲିଛି । ଜୀବ ତାଙ୍କର ପ୍ରେରଣାରେ ଉଦ୍ୟମଶୀଳ ହେଉଛି । ତାଙ୍କର ଶକ୍ତିଦ୍ୱାରା ସମସ୍ତେ ଶକ୍ତିଶାଳୀ ହେଉଛନ୍ତି । କିନ୍ତୁ ସେ ହେଉଛନ୍ତି ସର୍ବଶକ୍ତିମାନ୍ । ତାଙ୍କର ସଂକଳ୍ପ ହେଉଛି ସତ୍ୟ ଏବଂ ଅନ୍ୟସବୁ ମିଥ୍ୟା । ଜଗତ ଜଞ୍ଜାଳମୟ । ତେଣୁ ପ୍ରଭୁଙ୍କ ଇଚ୍ଛାରେ ନିଜ ଇଚ୍ଛାକୁ ମିଶାଇଦେବା ହେଉଛି କର୍ତ୍ତବ୍ୟ । ଭଗବତ୍ ସମର୍ପିତ ଇଚ୍ଛାହିଁ ସର୍ବଶ୍ରେଷ୍ଠ ସାଧନା । ଏହାହିଁ ପୁରୁଷାର୍ଥ । ଜପ, ତପ, ଭଜନ, ପୂଜା, ପାଠ ପ୍ରଭୃତିର ଏହାହିଁ ପରମ ଓ ଚରମ ଲକ୍ଷ୍ୟ । ତେଣୁ ସବୁଠି, ସବୁର ହୃଦୟରେ ଭଗବଦ୍ ଇଚ୍ଛାହିଁ ପ୍ରତିଫଳିତ ହେଉଛି ବୋଲି ଭାବିବା ଭଗବଦ୍ ଭକ୍ତର କର୍ତ୍ତବ୍ୟ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆପଣ ମୋତେ ମହାରାଜ ସୁଦ୍ୟୁମ୍ନଙ୍କ କଥା ପଚାରୁଥିଲେ । ସେଇକଥା କହୁଛି, ଶୁଣନ୍ତୁ । ବିବସ୍ୱାନ୍ ସୂର୍ଯ୍ୟଙ୍କ

ପୁତ୍ର ଶ୍ରାଦ୍ଧଦେବ ଅର୍ଥାତ୍ ବୈବସ୍ୱତ ମନୁ ସୌଭାଗ୍ୟବତୀ ଶ୍ରଦ୍ଧାଦେବୀଙ୍କୁ ବିବାହ କରିଥିଲେ । ବିବାହ ପରେ ବହୁକାଳ କଟିଗଲା । ତଥାପି ତାଙ୍କର କୌଣସି ସନ୍ତାନ-ସନ୍ତତି ହେଲେନାହିଁ । ପିଲାପିଲି ନହେବେ ଗାର୍ହସ୍ଥ୍ୟ ଜୀବନର ସବୁଠୁ ବଡ ଦୁଃଖଦାୟକ ଘଟଣା । ସେଇଥିପାଇଁ ବିବାହ କରାଯାଏ । ବିବାହ ଦ୍ୱାରା ଗାର୍ହସ୍ଥ୍ୟ ସୁଖ ଉପଭୋଗ କରାଯାଏ ଏବଂ ବଂଶର ଧାରା ଓ କୁଳ ପରମ୍ପରା ସୁରକ୍ଷିତ ରହେ । ପିତୃ ପିତାମହଙ୍କ ଦୟାରୁ ଆମେ ଏ ଶରୀର ପାଇଛୁ । ପିତା ଯେପରି ପୁତ୍ରକୁ ପ୍ରତିନିଧି ରୂପେ ରଖିଯାଆନ୍ତି, ପୁତ୍ର ସେହିପରି ନିଜର ପୁତ୍ରକୁ ବଂଶର ପ୍ରତିନିଧି ରୂପେ ରଖିଯିବା ଉଚିତ । ଏହା ନହେଲେ ବ୍ୟକ୍ତି ପିତୃଋଣରୁ ମୁକ୍ତିଲାଭ କରିପାରେ ନାହିଁ । ପୁତ୍ରହୀନ ବ୍ୟକ୍ତି ନିଜେ ସଦ୍‌ଗତି ଲାଭ କରେନାହିଁ ବରଂ ନିଜ ସହିତ ପିତୃଗଣଙ୍କୁ ମଧ୍ୟ ନରକଗାମୀ କରାଏ । କିନ୍ତୁ ପୁତ୍ରହୀନ ହେଲେବି ଯେ ସର୍ବାନ୍ତଃକରଣରେ ନିଜକୁ ଭଗବାନଙ୍କଠାରେ ସମର୍ପଣ କରିଦିଏ, ଜଗତର ପାର୍ଥିବ ସମ୍ପର୍କରୁ ମୁକ୍ତିରହେ ସେ ସଦ୍‌ଗତି ଲାଭକରେ । ତା'ର କର୍ତ୍ତବ୍ୟ ହୋଇ କିଛି ରହେନାହିଁ । ମାତ୍ର, ଗୃହସ୍ଥ ପାଇଁ ପୁତ୍ର ଆବଶ୍ୟକ । ତାହାହିଁ ଗାର୍ହସ୍ଥ୍ୟ ଧର୍ମର ସଫଳତା ।

ମହାରାଜ ସୁଦ୍ୟୁମ୍ନଙ୍କର ବହୁକାଳ ପର୍ଯ୍ୟନ୍ତ ପିଲାପିଲି ନ ହେବାରୁ କୁଳଗୁରୁ ବଶିଷ୍ଠଙ୍କୁ ସେ ଡକାଇଲେ ଏବଂ ହାତଯୋଡ଼ି ବିନୀତଭାବେ ପଚାରିଲେ—"ବ୍ରହ୍ମନ୍ ! ଆପଣ ଅନ୍ତର୍ଯ୍ୟାମୀ, ସର୍ବସମର୍ଥ, ବ୍ରହ୍ମାଙ୍କ ପରି ନୂତନ ସୃଷ୍ଟି କରିପାରନ୍ତି । ମୋର ଆଦୌ ସନ୍ତାନ ନାହାନ୍ତି । ସେଥିପାଇଁ ଆପଣ କିଛି ବ୍ୟବସ୍ଥା କରନ୍ତୁ ।"

ମହାରାଜଙ୍କ କଥାଶୁଣି ବଶିଷ୍ଠ କହିଲେ—"ରାଜନ୍ ! ଦେବତାମାନଙ୍କ ଦୟାରୁ ପୁତ୍ରାଦି ସୁଖଭୋଗ ଲାଭହୁଏ । ଦେବତାମାନେ ମନ୍ତ୍ରାଧୀନ । ସଦାଚାରୀ ହୋଇ ଶୁଦ୍ଧପୂତ ଭାବରେ ପରମ୍ପରା ଅନୁଯାୟୀ ମନ୍ତ୍ର ଗ୍ରହଣ କଲେ ତାହା କେବେ ବ୍ୟର୍ଥ ହୁଏନାହିଁ । ମନ୍ତ୍ର ପୁରଶ୍ଚରଣ ଦ୍ୱାରା ଦେବତାମାନେ ସ୍ୱତଃ ଉପସ୍ଥିତ ହୋଇ ଉପାସକର ଅଭିଳାଷ ପୂରଣ କରନ୍ତି । ମୁଁ ଆପଣଙ୍କର ପୁତ୍ରପ୍ରାପ୍ତି ନିମିତ୍ତ ମିତ୍ରାବରୁଣଙ୍କ ଉଦ୍ଦେଶ୍ୟରେ ପୁତ୍ରେଷ୍ଟି ଯଜ୍ଞ କରିବି । ସେହି ଯଜ୍ଞଦ୍ୱାରା ଆପଣଙ୍କର ପୁତ୍ରଲାଭ ହେବ ।"

କୁଳଗୁରୁଙ୍କ କଥାଶୁଣି ରାଜା ସନ୍ତୁଷ୍ଟ ହୋଇ କହିଲେ—"ଭଗବନ୍ ! ଆପଣ ଦୟାକରି ସେ ଯଜ୍ଞ କରନ୍ତୁ । ଯଜ୍ଞର ଆବଶ୍ୟକୀୟ ସାମଗ୍ରୀ ଯଥାଶୀଘ୍ର ସଂଗ୍ରହ କରନ୍ତୁ । ଯେଉଁ ଋତ୍ୱିଗଣ ହୋତା, ଋତ୍ୱିକ, ଅଧ୍ୱର୍ଯ୍ୟୁ ଆଦି ହେବେ ସେମାନଙ୍କୁ ନିମନ୍ତ୍ରଣ ଦିଅନ୍ତୁ । ପୁଣ୍ୟକାର୍ଯ୍ୟ ଯେତେଶୀଘ୍ର ସମ୍ଭବ ସମ୍ପନ୍ନ କରିବା ଆବଶ୍ୟକ । ପରେ କେତେବେଳେ କଣହେବ କିଏ କହିବ ?"

ରାଜାଙ୍କର ଉତ୍କଣ୍ଠା ଦେଖି ବଶିଷ୍ଠ କହିଲେ—"ରାଜନ୍ ! ମୁଁ ଯଜ୍ଞର ଆୟୋଜନ କରୁଛି । ଆପଣ ପତ୍ନୀଙ୍କ ସହିତ ଯଜ୍ଞରେ ଦୀକ୍ଷା ନେବେ ଏବଂ ପୂର୍ଣ୍ଣାହୁତି ଦିଆଯିବା ପର୍ଯ୍ୟନ୍ତ ପତିପତ୍ନୀ ଉଭୟ କେବଳ ଦୁଧପିଇ ରହିବେ ।"

ବଶିଷ୍ଠଙ୍କ ଆଦେଶ ଅନୁଯାରେ ରାଜା ଓ ରାଣୀ ଯଜ୍ଞ ଦୀକ୍ଷାନେଲେ ଏବଂ ଦୁଗ୍ଧାହାର କରି ରହିଲେ । ପ୍ରାରବ୍ଧବଶତଃ ପତ୍ନୀଙ୍କ ମନରେ ଏକ ବିଚାର ଆସିଲା ଯେ ପୁତ୍ର ହେଲେ ବାହାରେ ରହିବ ଓ ପୁତ୍ରୀ ହେଲେ ରାଜମହଲରେ ମୋ' ପାଖରେ ରହିବ । ତେଣୁ ଝିଅଟିଏ ହେଲେ ଭଲ ।

ରାଣୀ ନିଜର ମନୋଭାବ ରାଜାଙ୍କୁ କହିବେ ନା କିପରି ? ଯେଉଁଦିନ ପୂର୍ଣ୍ଣାହୁତି ଦେବାର ସମୟ ଆସିଲା ରାଣୀ ହୋତାଙ୍କ ପାଖକୁ ଯାଇ ପ୍ରଣାମ କରି ଚୁପ୍ ଚୁପ୍ କହିଲେ—"ବ୍ରହ୍ମନ୍ ! ମୋର ଇଚ୍ଛାହେଉଛି ଆମର ପୁତ୍ର ନହୋଇ କନ୍ୟାଟିଏ ହେଉ । ଆପଣ ଏପରି ବ୍ୟବସ୍ଥା କରନ୍ତୁ ଯାହାଦ୍ୱାରା ମୋର ଅଭିଳାଷ ପୂର୍ଣ୍ଣହେବ । ପୁତ୍ର ସମ୍ବନ୍ଧୀୟ ମନ୍ତ୍ର ନପଢ଼ି ପୁତ୍ରୀ ହେବାପାଇଁ ମନ୍ତ୍ରପାଠ କରନ୍ତୁ ।" ଏହାକହି ରାଣୀ ହୋତାଙ୍କୁ ପୂଜାକଲେ । ପୂଜାଦ୍ୱାରା ଯେତେବେଳେ ଦେବତାମାନେ ସନ୍ତୁଷ୍ଟ ହେଉଛନ୍ତି ସେତେବେଳେ ଏ କର୍ମକାଣ୍ଡୀ ବ୍ରାହ୍ମଣଙ୍କ କଥା ନ କହିବା ଭଲ । ପୌରୋହିତ୍ୟ କରୁଥିବା ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରି ଯେକୌଣସି କଥା କରାଯାଇ-ପାରେ । ହୋତା ମହାଶୟ ରାଣୀଙ୍କ ନିବେଦନ ସ୍ୱୀକାର କଲେ ।

ଅଧ୍ୱର୍ଯ୍ୟୁ ଯେତେବେଳେ ଘୃତ ଆହୁତି ଦେବାପାଇଁ ହୋତାଙ୍କୁ କହିଲେ ସେତେବେଳେ ହୋତା ମହାଶୟ ରାଣୀଙ୍କ କଥା ସ୍ମରଣକରି ସେହି ଭାବନାରେ ବଷଟ୍‌କାର ଉଚ୍ଚାରଣ ପୂର୍ବକ ଆହୁତି ଦେଲେ । ସୃଷ୍ଟି ହେଉଛି ଭାବପ୍ରଧାନ । ସଂକଳ୍ପ ଯେପରି ଫଳ ସେହିପରି ହେବ ।

ଯଜ୍ଞ ଶେଷହେଲା । ଯଜ୍ଞୋଚ୍ଛିଷ୍ଟ ଚରୁ ରାଜାଙ୍କୁ ଦିଆଗଲା । ରାଜା ଚରୁକୁ ଆଘ୍ରାଣ କରି ରାଣୀଙ୍କୁ ଦେଲେ । ରାଣୀ ପୁତ୍ରୀ କାମନାରେ ଚରୁ ଭକ୍ଷଣ କଲେ । ରାଣୀଙ୍କର ଗର୍ଭୋଦୟ ହେଲା ଏବଂ ଯଥାସମୟରେ କନ୍ୟାରତ୍ନ ଜନ୍ମଗ୍ରହଣ କଲା ।

ରାଜା ପୁତ୍ର ଆଶାରେ ବସିଥିଲେ । ପୁତ୍ରୀ ଜନ୍ମହେବାରେ ବନ୍ଧ୍ୟାପଣ ଦୋଷ କଟିଲା ସିନା, ସେ କିନ୍ତୁ ଆନନ୍ଦିତ ହେଲେନାହିଁ । ମହାରାଜ କୁଳଗୁରୁଙ୍କୁ ଡକାଇ କହିଲେ—"ବ୍ରହ୍ମନ୍ ! ଆପଣ ଯଥାବିଧି ବେଦକୁ ଧାରଣ କରିଛନ୍ତି । ଆପଣଙ୍କ

ମନ୍ତ୍ରଶକ୍ତି ଅମୋଘ, ତାହା କେବେ ବ୍ୟର୍ଥ ହେବନାହିଁ । କିନ୍ତୁ ମୋ' ଯଜ୍ଞରେ ବିପରୀତ ଫଳ ଘଟିଲା କପରି ? ମୁଁ ପୁତ୍ର କାମନାରେ ପୁତ୍ରେଷ୍ଟି ଯଜ୍ଞ କରାଇଲି, କିନ୍ତୁ ଝିଅ କିପରି ଜନ୍ମହେଲା ?''

କୁଳଗୁରୁ ବଶିଷ୍ଠ ଆଶ୍ଚର୍ଯ୍ୟ ହୋଇ କହିଲେ—ରାଜନ୍ ! ଆମ୍ଭେମାନେ ଯଥାରୀତି ଗୁରୁ ଶୁଶ୍ରୂଷା ପୂର୍ବକ ନିଷ୍ଠିତ ସଂଯତ ହୋଇ ମନ୍ତ୍ରଧାରଣ କରିଛୁ । ଆମର ବିଦ୍ୟା କେବେହେଲେ ବିଫଳ ବା ବିପରୀତ ଫଳଦାୟକ ହୁଏନାହିଁ । ଖୁବ୍ ସମ୍ଭବତଃ ଯଜ୍ଞରେ ଭାବସମ୍ବନ୍ଧୀୟ ବା ବିଧିବିଧାନ ସମ୍ବନ୍ଧୀୟ କୌଣସି ତ୍ରୁଟି ଘଟିଛି । ମୁଁ ସମାଧିସ୍ଥ ହୋଇ ଦେଖେ କଣ ଘଟିଛି ।''

ବଶିଷ୍ଠ କିଛିସମୟ ସମାଧିସ୍ଥ ହେବାପରେ ସ୍ୱାଭାବିକ ହୋଇ କହିଲେ— ''ରାଜନ୍ ! ଆପଣଙ୍କ ଅର୍ଦ୍ଧାଙ୍ଗିନୀହିଁ ସବୁକିଛି ଗୋଳମାଳ କରିଦେଇଛନ୍ତି । ସେଥିପାଇଁ ହୋତା ବିଧାନର ବିପରୀତ ଆଚରଣ କରିଛନ୍ତି । ମନ୍ତ୍ରର କିଛି ଦୋଷନାହିଁ । ଆପଣଙ୍କ ରାଣୀଙ୍କ ଇଚ୍ଛା ଅନୁସାରେ ଏସବୁ ଘଟିଛି ।''

ଦୁଃଖିତ ହୋଇ ମହାରାଜ ମନୁ କହିଲେ—''ଭଗବନ୍ ! ଏବେ କ'ଣ କରିବା ?''

ବଶିଷ୍ଠ କହିଲେ—''ଏବେ ଆପଣ ଯାହା କହିବେ ତାହା କରିବା ।

ରାଜା ନମ୍ରତାର ସହିତ କହିଲେ—''ଭଗବନ୍ ! ଆପଣ ମନ୍ତ୍ରବଳରେ ପୁତ୍ର ଉତ୍ପାଦନ କରିପାରୁଛନ୍ତି । ତେବେ ସେହି ମନ୍ତ୍ର ପ୍ରଭାବରେ ଝିଅକୁ କଣ ଆପଣ ପୁଅ କରିପାରିବେ ନାହିଁ ?''

ବଶିଷ୍ଠ କହିଲେ—''ହଁ ଅସମ୍ଭବ କିଛି ନୁହେଁ । ମନ୍ତ୍ରବଳରେ ଝିଅକୁ ପୁଅ କରିଦେଇ ପାରିବି ।''

ବୈବସ୍ୱତ ମନୁ କହିଲେ—''ଆପଣ ତାହାହିଁ କରନ୍ତୁ । ଝିଅକୁ ମୋର ପୁଅ କରିଦିଅନ୍ତୁ ।''

ବଶିଷ୍ଠ କହିଲେ—''ବର୍ତ୍ତମାନ ଝିଅଟିକୁ ପୁଅ କରିଦେଉଛି । କଣହେବ ସେକଥା କହିହେବ ନାହିଁ ।'' ଏହାକହି ବଶିଷ୍ଠ ଋଷି ମନ୍ତ୍ରବଳରେ ରାଜାଙ୍କ ଝିଅକୁ ପୁଅ କରିଦେଲେ । ଝିଅ ଥିବାବେଳେ ତାର ନାମଥିଲା ଇଳା ଏବଂ ପୁଅ ରୂପେ ପରିବର୍ତ୍ତିତ ହେବାପରେ ତାର ନାମ ରହିଲା ସୁଦ୍ୟୁମ୍ନ । ନ ପରାୟଣ ମହର୍ଷି ବଶିଷ୍ଠ ଏପରି ଏକ ଦୁଷ୍କର କାର୍ଯ୍ୟ କରିପାରିଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ତପସ୍ୟା ପ୍ରଭାବରେ ଋଷିଗଣ କଣ ନକରି ପାରନ୍ତି ? ମହାରାଜ ବୈବସ୍ୱତ ମନୁ ପୁତ୍ରଙ୍କୁ ପାଇ ଖୁବ୍ ସାବଧାନତାର ସହିତ ତାର ଲାଳନପାଳନ କଲେ । ପୁଅଟି ଯଥା ସମୟରେ ଯୌବନରେ ପଦାର୍ପଣ କଲା । ସେ ଥିଲା ପରାକ୍ରମୀ ଓ ମୃଗୟାବିଳାସୀ । ଦୂର ବଣ ପାହାଡ଼ରେ ଘୁରି ଘୁରି ସେ ଶୀକାର କରୁଥିଲେ । ପ୍ରତଦିନ ନୂଆ ନୂଆ ଦୁର୍ଗମ ସ୍ଥାନରେ ବୁଲିବାଦ୍ୱାରା ସେ ଆନନ୍ଦଲାଭ କରୁଥିଲେ । ସେ ଏକାଧାରରେ ଜଣେ ସାହସୀ ବୀର, ନିର୍ଭିକ ପୁରୁଷ ଓ ଅସୀମ ମନୋବଳ ସମ୍ପନ୍ନ ଥିଲେ । ରାଜପୁତ୍ରଙ୍କର ଏ ପ୍ରକାର ଆଚରଣରେ ଅନୁଚରବର୍ଗ ସନ୍ତୁଷ୍ଟ ନଥିଲେ ମଧ ଭୟରେ କିଛି କହିପାରୁ ନଥିଲେ । ତେଣୁ ସେ ଯୁଆଡ଼େ ଯାଉଥିଲେ ଅନୁଚରମାନେ ତାଙ୍କୁ ଅନୁଗମନ କରିବା ପାଇଁ ବାଧ ହେଉଥିଲେ ।"

## ଛପ୍ପୟ

ମୁନି ବଶିଷ୍ଠ ଧରି ଧ୍ୟାନ କହେଁ ସବ ଜ୍ଞାନ ଭୟୋ ଅବ ।
ରାନୀ ସମ୍ମତ ମାନ କର୍‌ୟୋ ହୋତା କୌତୁକ ସବ ॥
ଜନ୍ତୁ ନ ନୃପ ଘବରାଓ ମନ୍ତ୍ରବଳ ଦେଖୋ ମେରୋ ।
ପୁତ୍ରୀ ତେଁ କରି ପୁତ୍ର କରେଁ ହୌ କାରଜ ତେରୋ ॥
ୟୋ କହି ପ୍ରଭୁ ବିନତୀ କରୀ, ହ୍ୱେ ପ୍ରସନ୍ନ ହରି ବର ଦୟୋ ।
ସୁତା ଇଳା ମୁନି କୃପା ତେଁ ପୁନି ସୁଦ୍ୟୁମ୍ନ କୁମର ଭୟୋ ॥



ମନ୍ତ୍ରଶକ୍ତି ଅମୋଘ, ତାହା କେବେ ବ୍ୟର୍ଥ ହେବନାହିଁ । କିନ୍ତୁ ମୋ' ଯଜ୍ଞରେ ବିପରୀତ ଫଳ ଘଟିଲା କିପରି ? ମୁଁ ପୁତ୍ର କାମନାରେ ପୁତ୍ରେଷ୍ଟି ଯଜ୍ଞ କରାଇଲି, କିନ୍ତୁ ଝିଅ କିପରି ଜନ୍ମହେଲା ?''

କୁଳଗୁରୁ ବଶିଷ୍ଠ ଆଶ୍ଚର୍ଯ୍ୟ ହୋଇ କହିଲେ—ରାଜନ୍ ! ଆମ୍ଭେମାନେ ଯଥାରୀତି ଗୁରୁ ଶୁଶ୍ରୁଷା ପୂର୍ବକ ନିଷ୍ଠିତ ସଂଯତ ହୋଇ ମନ୍ତ୍ରଧାରଣ କରିଛୁ । ଆମର ବିଦ୍ୟା କେବେହେଲେ ବିଫଳ ବା ବିପରୀତ ଫଳଦାୟକ ହୁଏନାହିଁ । ଖୁବ୍ ସମ୍ଭବତଃ ଯଜ୍ଞରେ ଭାବସମ୍ବନ୍ଧୀୟ ବା ବିଧିବିଧାନ ସମ୍ବନ୍ଧୀୟ କୌଣସି ତ୍ରୁଟି ଘଟିଛି । ମୁଁ ସମାଧିସ୍ଥ ହୋଇ ଦେଖେ କଣ ଘଟିଛି ।''

ବଶିଷ୍ଠ କିଛିସମୟ ସମାଧିସ୍ଥ ହେବାପରେ ସ୍ୱାଭାବିକ ହୋଇ କହିଲେ— ''ରାଜନ୍ ! ଆପଣଙ୍କ ଅର୍ଦ୍ଧାଙ୍ଗିନୀହିଁ ସବୁକିଛି ଗୋଳମାଳ କରିଦେଇଛନ୍ତି । ସେଥିପାଇଁ ହୋତା ବିଧାନର ବିପରୀତ ଆଚରଣ କରିଛନ୍ତି । ମନ୍ତ୍ରର କିଛି ଦୋଷନାହିଁ । ଆପଣଙ୍କ ରାଣୀଙ୍କ ଇଚ୍ଛା ଅନୁସାରେ ଏସବୁ ଘଟିଛି ।''

ଦୁଃଖିତ ହୋଇ ମହାରାଜ ମନୁ କହିଲେ—''ଭଗବନ୍ ! ଏବେ କ'ଣ କରିବା ?''

ବଶିଷ୍ଠ କହିଲେ—''ଏବେ ଆପଣ ଯାହା କହିବେ ତାହା କରିବା ।

ରାଜା ନମ୍ରତାର ସହିତ କହିଲେ—''ଭଗବନ୍ ! ଆପଣ ମନ୍ତ୍ରବଳରେ ପୁତ୍ର ଉତ୍ପାଦନ କରିପାରୁଛନ୍ତି । ତେଣୁ ସେହି ମନ୍ତ୍ର ପ୍ରଭାବରେ ଝିଅକୁ କଣ ଆପଣ ପୁଅ କରିପାରିବେ ନାହିଁ ?''

ବଶିଷ୍ଠ କହିଲେ—''ହଁ ଅସମ୍ଭବ କିଛି ନୁହେଁ । ମନ୍ତ୍ରବଳରେ ଝିଅକୁ ପୁଅ କରିଦେଇ ପାରିବି ।''

ବୈବସ୍ୱତ ମନୁ କହିଲେ—''ଆପଣ ତାହାହିଁ କରନ୍ତୁ । ଝିଅକୁ ମୋର ପୁଅ କରିଦିଅନ୍ତୁ ।''

ବଶିଷ୍ଠ କହିଲେ—''ବର୍ତ୍ତମାନ ଝିଅଟିକୁ ପୁଅ କରିଦେଉଛୁ । କଣହେବ ସେକଥା କହିହେବ ନାହିଁ ।'' ଏହାକହି ବଶିଷ୍ଠ ଋଷି ମନ୍ତ୍ରବଳରେ ରାଜାଙ୍କ ଝିଅକୁ ପୁଅ କରିଦେଲେ । ଝିଅ ଥିବାବେଳେ ତାର ନାମଥିଲା ଇଳା ଏବଂ ପୁଅ ରୂପେ ପରିବର୍ତ୍ତିତ ହେବାପରେ ତାର ନାମ ରହିଲା ସୁଦ୍ୟୁମ୍ନ । ନ ପରାୟଣ ମହର୍ଷି ବଶିଷ୍ଠ ଏପରି ଏକ ଦୁଷ୍କର କାର୍ଯ୍ୟ କରିପାରିଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ତପସ୍ୟା ପ୍ରଭାବରେ ଋଷିଗଣ କଣ ନକରି ପାରନ୍ତି ? ମହାରାଜ ବୈବସ୍ୱତ ମନୁ ପୁତ୍ରକୁ ପାଇ ଖୁବ୍ ସାବଧାନତାର ସହିତ ତାର ଲାଳନପାଳନ କଲେ । ପୁଅଟି ଯଥା ସମୟରେ ଯୌବନରେ ପଦାର୍ପଣ କଲା । ସେ ଥିଲା ପରାକ୍ରମୀ ଓ ମୃଗୟାବିଳାସୀ । ଦୂର ବଣ ପାହାଡ଼ରେ ଘୁରି ଘୁରି ସେ ଶୀକାର କରୁଥିଲେ । ପ୍ରତିଦିନ ନୂଆ ନୂଆ ଦୁର୍ଗମ ସ୍ଥାନରେ ବୁଲିବାଦ୍ୱାରା ସେ ଆନନ୍ଦଲାଭ କରୁଥିଲେ । ସେ ଏକାଧାରରେ ଜଣେ ସାହସୀ ବୀର, ନିର୍ଭୀକ ପୁରୁଷ ଓ ଅସୀମ ମନୋବଳ ସମ୍ପନ୍ନ ଥିଲେ । ରାଜପୁତ୍ରଙ୍କର ଏ ପ୍ରକାର ଆଚରଣରେ ଅନୁଚରବର୍ଗ ସନ୍ତୁଷ୍ଟ ନଥିଲେ ମଧ୍ୟ ଭୟରେ କିଛି କହିପାରୁ ନଥିଲେ । ତେଣୁ ସେ ଯୁଆଡ଼େ ଯାଉଥିଲେ ଅନୁଚରମାନେ ତାଙ୍କୁ ଅନୁଗମନ କରିବା ପାଇଁ ବାଧ୍ୟ ହେଉଥିଲେ ।"

## ଛପ୍ପୟ

ମୁନି ବଶିଷ୍ଠ ଧରି ଧ୍ୟାନ କହେଁ ସବ ଜ୍ଞାନ ଭୟୋ ଅବ ।
ରାନୀ ସମ୍ମତ ମାନ କର୍‌ୟୋ ହୋତା କୌତୁକ ସବ ।।
କିନ୍ତୁ ନ ନୃପ ଘବରାଓ ମନ୍ତ୍ରବଳ ଦେଖୋ ମେରୋ ।
ପୁତ୍ରୀ ତେଁ କରି ପୁତ୍ର କରେଁ ହୌ କାରଜ ତେରୋ ।।
ୟୋ କହି ପ୍ରଭୁ ବିନତୀ କରୀ, ହେ ପ୍ରସନ୍ନ ହରି ବର ଦୟୋ ।
ସୁତା ଇଳା ମୁନି କୃପା ତେଁ ପୁନି ସୁଦ୍ୟୁମ୍ନ କୁମର ଭୟୋ ।।



# ସୁଦ୍ୟୁମ୍ନଙ୍କ ପୁନଃ ସ୍ତ୍ରୀରୂପ ଗ୍ରହଣ

ସ କୁମାରୋ ବନଂ ମେରୋରଧସ୍ତାତ୍ ପ୍ରବିବେଶ ହ ।
ଯତ୍ରାସ୍ତେ ଭଗବାନ୍ ଶର୍ବୋ ରମମାଣ ସହୋମୟା ॥
ତସ୍ମିନ୍ ପ୍ରବିଷ୍ଟ ଏବାସୌ ସୁଦ୍ୟୁମ୍ନଃ ପରବୀରହା ।
ଅପଶ୍ୟତ୍ ସ୍ତ୍ରୀୟମାତ୍ମାନମଶ୍ୱଂ ଚ ବଡ଼ବାଂ ନୃପଃ ॥

( ଭାଗ-୯-୧-୨୫, ୨୬ )

### ଛପ୍‌ପୟ

ଏକ ଦିବସ ସୁଦ୍ୟୁମ୍ନ ସେନ ସଜି ମୃଗୟା ଖେଳନ ।
ହୋ କ୍ଷୁ ଅଶ୍ୱ ଅସବାର ଗୟୋ ସଙ୍ଗ ସଚିବନ କେ ବନ ॥
ମୃଗ ଲଖି ପୀଛୋ କର୍ୟୋ ଅଶ୍ୱ ଅପନୋ ଦୌରାୟୋ ।
ଗିରି ସୁମେରୁ ଢିଂଗ୍ ଖଣ୍ଡ ଇଳାବୃତ ମହଁ ନୃପ ଆୟୋ ॥
ପରୀଦୃଷ୍ଟି ଜବ ଦେହ ପେ ନର ତେଁ ନାରୀବନ ଗୟେ ।
ପରମ ଚକିତ ଇତ ଉତ ଲଖତ, ସବ ଘୋଡ଼ାଘୋଡ଼ୀ ଭୟେ ॥

କାହାଣୀଟିଏ ଅଛି । ଥରେ ଜଣେ ଋଷି ପୁତ୍ରପ୍ରାପ୍ତି ନିମିତ୍ତ ଘୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ୍ ସାକ୍ଷାତ୍ ଦେଲେ । ଋଷି ଯେତେବେଳେ ପୁତ୍ରପ୍ରାପ୍ତି ନିମିତ୍ତ ପ୍ରାର୍ଥନା କଲେ ସେତେବେଳେ ଭଗବାନ୍ କହିଲେ—ବାବୁ ! ତୁମ ଭାଗ୍ୟରେ ପୁତ୍ର ନାହିଁ । ପୁତ୍ର ବ୍ୟତୀତ ତୁମେ ଅନ୍ୟ ଯାହାକିଛି ମାଗିବ ମୁଁ ଦେବାକୁ ପ୍ରସ୍ତୁତ ଅଛି ।

ଋଷି କହିଲେ—"ପ୍ରଭୋ ! ମୋର ପୁତ୍ର ବ୍ୟତୀତ ଅନ୍ୟକିଛି ଦରକାର ନାହିଁ ।"

ଭଗବାନ୍ ବାରମ୍ବାର ନିଜର ଅସମର୍ଥତା ପ୍ରକାଶ କରୁଥିଲେ ଏବଂ ଋଷି କେବଳ ପୁତ୍ରପ୍ରାପ୍ତି ନିମିତ୍ତ ବରଦାନ ପାଇଁ ବାରମ୍ବାର ନିବେଦନ କରୁଥିଲେ ।

ଏହାଦେଖି ଗରୁଡ଼ଙ୍କ ମନରେ ଭୀଷଣ ଦୁଃଖ ଜାତହେଲା । ଗରୁଡ଼ କହିଲେ—"ପ୍ରଭୋ ! ଆପଣ ଚରାଚର ଜଗତର ସୃଷ୍ଟି, ପାଳନ ଓ ସଂହାର କରୁଛନ୍ତି । ଆପଣଙ୍କ ପାଇଁ ପୁଅଟିଏ ଦେବା କଣ ବଡ଼କଥା । ବିଚରା ଏତେ ଅନୁରୋଧ କରୁଛନ୍ତି, ଦେଇଦିଅନ୍ତୁ ଗୋଟିଏ ପୁଅ ।"

ଭଗବାନ୍ ଗରୁଡ଼ଙ୍କୁ କହିଲେ—"ବାବୁ ! ମୁଁ ତ ଦେଇ ପାରୁନାହିଁ । ତୁମେ ତ ଦେଇପାରିବ । ଦେଇଦିଅ ପୁଅଟିଏ । କାରଣ ତୁମେବି ମୋର ଭକ୍ତ, ଆଉ ସବୁକିଛି କରିବା ପାଇଁ ସମର୍ଥ ଅଛ ।"

ଗରୁଡ଼ କହିଲେ—"ଠିକ୍ ଅଛି ପ୍ରଭୋ ! ମୁଁ ଦେଉଛି । ଏହାକହି ଗୋଟିଏ ପୁଅହେଉ ବୋଲି ଗରୁଡ଼ ବର ଦେଇଦେଲେ ।" ଯଥା ସମୟରେ ଋଷିଙ୍କର ପୁଅଟିଏ ହେଲା । ସେହି ପୁତ୍ର ଶୁକଦେବ ନାମରେ ପରିଚିତ । ବାରବର୍ଷ ପରେ ପିଲାଟି ମରିଗଲା । ଏହି ଦୁର୍ଘଟଣାରେ ବ୍ରାହ୍ମଣ ଋଷି ଖୁବ୍ ଦୁଃଖିତ ହେଲେ ଏବଂ ମାସେକାଳ ନଖାଇ ନପିଇ ପଡ଼ି ରହିଲେ ।

ଏ କଥାଟିର ଗୁରୁତ୍ୱ ହେଉଛି ଭାଗ୍ୟର ବିପରୀତ କାର୍ଯ୍ୟ ଯଦି ଜିଦ୍‌କରି କରାଯାଏ ତେବେ ତାର ଫଳ ସ୍ଥାୟୀ ହୁଏନାହିଁ । କିଛିକାଳ ପରେ ତପୋବଳ କ୍ଷୀଣ ହୋଇଗଲେ ପୁଣି ପୂର୍ବାବସ୍ଥା ଫେରିଆସେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବୈବସ୍ୱତ ମନୁଙ୍କ ପୁତ୍ରୀ ଇଳାଙ୍କୁ ମହର୍ଷି ବଶିଷ୍ଠ ସୁଦ୍ୟୁମ୍ନ ନାମକ ପୁତ୍ରରୂପେ ପରିବର୍ତ୍ତିତ କରିଥିଲେ । କୁମାର ସୁଦ୍ୟୁମ୍ନ ବଡ଼ହୋଇ ମୃଗୟା କରିବାପାଇଁ ବହୁଦୂରକୁ ଚାଲିଯାଉଥିଲେ । ଥରେ ସେ ହିମାଳୟ ପାରହୋଇ କିଂପୁରୁଷ ବର୍ଷରେ ଅବସ୍ଥିତ ଦିବ୍ୟ ସୁବର୍ଣ୍ଣମେରୁ ପର୍ବତରେ ପହଞ୍ଚିଲେ । ସେହି ସୁମେରୁ ପର୍ବତ ତ୍ରିଲୋକର ଆଧାର ସ୍ତମ୍ଭରୂପେ ଅଭିହିତ । ସେହି ପର୍ବତର ପବିତ୍ର ପରିବେଶରେ ସୁଦ୍ୟୁମ୍ନଙ୍କ ମନ ଆନନ୍ଦିତ ହେଲା । ଏକ ମୃଗ ପଛରେ ସିନ୍ଧୁଦେଶୀୟ ଘୋଡ଼ାଙ୍କ ଉପରେ ବସି ସୁଦ୍ୟୁମ୍ନ ଅନୁସରଣ କରୁ କରୁ ଭୁଲ୍‌ବଶତଃ ଶିବଙ୍କ କ୍ରୀଡ଼ା ଭୂମିରେ ପହଞ୍ଚିଗଲେ । ସେଠାରେ ପହଞ୍ଚିବା ମାତ୍ରେ ସେ ଏକ ନାରୀରୂପେ ପରିବର୍ତ୍ତିତ ହୋଇଗଲେ । ସେ ଦେଖିଲେ ନିଜର ପୁରୁଷୋଚିତ ଅଙ୍ଗପ୍ରତ୍ୟଙ୍ଗ ସ୍ଥାନରେ ଯୁବତୀ ନାରୀସୁଲଭ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ପରିସ୍ଫୁଟ ହୋଇଯାଇଛି । ତାଙ୍କ ଘୋଡ଼ାଟି ମଧ୍ୟ ଘୋଡ଼ୀ ହୋଇଯାଇଥିବା ସେ ଦେଖିଲେ । ବଣରେ ଯେତେ ଜୀବ ବୁଲୁଥିଲେ ସବୁ ଥିଲେ ମାଈ ଜୀବ । କିଛିକ୍ଷଣ ସେ ନିଜକୁ ସ୍ମରଣ ରଖିଥିଲେ ପରେ ସବୁକିଛି ଭୁଲିଗଲେ । ନାରୀ ସୁଲଭ ହାବଭାବ ପ୍ରକାଶ କରି ସେ ଅନ୍ୟ ସଖୀମାନଙ୍କ ସହ ବିଭିନ୍ନ ସ୍ଥାନ ବୁଲିବାକୁ ଲାଗିଲେ ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ଆପଣ ବଡ଼ ଆଶ୍ଚର୍ଯ୍ୟକର କଥା କହୁଛନ୍ତି । ଏହାତ ଠିକ୍ ଭୋଜବାଜି ଭଳିପରି ମନେହେଉଛି । ସେ ସ୍ଥାନରେ ପ୍ରବେଶ କରିବା ମାତ୍ରେ ସମସ୍ତେ ନାଗି ପାଲଟିଗଲେ କାହିଁକି ?"

ଏହାଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମଣିଷ ଉପରେ ଦେଶ ଓ କାଳର ଗଭୀର ପ୍ରଭାବ ପଡ଼ିଥାଏ । ବିଧି ବାମହେଲେ ଓ କାଳ ବିପରୀତ ହେଲେ ବଡ଼ଲୋକମାନଙ୍କର ବୁଦ୍ଧି ମଧ୍ୟ ଲୋପ ପାଇଯାଏ । ସେହିପରି ସ୍ଥାନବିଶେଷର ପ୍ରଭାବକୁ ମଣିଷ ଆଡ଼େଇଦେଇ ଯାଇପାରେ ନାହିଁ ।"

ମହର୍ଷି ଶୌନକ ପଚାରିଲେ—"ଭଗବନ୍ ! ଦେଶର କଣ ଏପରି ପ୍ରଭାବ ଅଛି ଯେ ସବୁବେଳେ ସେଠାରେ ଲିଙ୍ଗ ବିପର୍ଯ୍ୟୟ ଘଟିବ । ରାଜକୁମାର ଥିଲେ ବୁଦ୍ଧିମାନ୍ । ସେ ଦେଶଜନିତ ଦୋଷକୁ ଦୂର କରିପାରିଲେ ନାହିଁ କାହିଁକି ?"

ମହର୍ଷି ସୂତ ଉତ୍ତର ଦେବାକୁ ଯାଇ କହିଲେ—"ବ୍ରହ୍ମନ୍ ! ଏସବୁ ଭଗବାନଙ୍କ ଲୀଳା । ତା' ବ୍ୟତୀତ ଆଉ କଣ ବା କୁହାଯାଇପାରିବ । ଯେଉଁ ସ୍ଥାନ ଅଭିଶାପଗ୍ରସ୍ତ ହୁଏ ତାହାର ପ୍ରଭାବ ସମସ୍ତଙ୍କ ଉପରେ ପଡ଼େ । ସାଧାରଣ ଲୋକ କଥା ଛାଡ଼ ଈଶ୍ୱରଙ୍କ ଉପରେ ମଧ୍ୟ ଏହାର ପ୍ରଭାବ ପଡ଼େ । ସେ ସ୍ଥାନର ଏପରି ପ୍ରଭାବ ଯେ, ସ୍ୱୟଂ ଲକ୍ଷ୍ମଣ ମଧ୍ୟ ଅଗ୍ରଜ ରାମଚନ୍ଦ୍ର ଓ ଦେବୀ ସୀତାଙ୍କୁ ନାନାପ୍ରକାର ଅକଥନୀୟ ବାକ୍ୟ କହିଥିଲେ ସେହି ସ୍ଥାନରେ ।

ଏହାଶୁଣି ଶୌନକ ଋଷି ଚମକିପଡ଼ି ପଚାରିଲେ—ବ୍ରହ୍ମନ୍ ! ଆପଣତ ଗୋଟିକ ପରେ ଗୋଟିଏ ବିଚିତ୍ର କଥା କହୁଛନ୍ତି । ଆପଣଙ୍କ କଥାଶୁଣି ଅଧିକରୁ ଅଧିକ କୌତୁକ ଜାତ ହେଉଛି । କିନ୍ତୁ ସର୍ବସ୍ୱ ସମର୍ପଣ କରିଥିବା ଲକ୍ଷ୍ମଣ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ କୌଣସି ଅନୁଚିତ କଥା କହିଥିବାର ଆମେ ଶୁଣିନାହୁଁ । ଏହା କେଉଁ ସମୟର କଥା । ଏହା କିପରି ଘଟିଲା ? କାହିଁକି ଲକ୍ଷ୍ମଣ ଭଗବାନ୍ ଶ୍ରୀରାମଚନ୍ଦ୍ର ଓ ଜଗଜ୍ଜନନୀ ସୀତାଙ୍କୁ ଅଶ୍ଳୀଳ ଓ ଅସୁନ୍ଦର କଥା କହିଥିଲେ, ତାହା ଶୁଣିବାକୁ ଇଚ୍ଛା ହେଉଛି ।

ଶୌନକଙ୍କ ଆଗ୍ରହ ଦେଖି ମହର୍ଷି ସୂତ କହିଲେ—"ଭଗବନ୍ ! ଲକ୍ଷ୍ମଣ କଣ ସେପରି କିଛି ଅପଶବ୍ଦ ପ୍ରଭୁ ରାମଚନ୍ଦ୍ରଙ୍କୁ ବା ଜଗତର ମାତା ସୀତାଙ୍କୁ କହିବା ସମ୍ଭବ କି ? ତାହା ଆଦୌ ସମ୍ଭବ ନୁହେଁ । କିନ୍ତୁ ସ୍ଥାନର ମହତ୍ତ୍ୱ ପ୍ରକାଶ କରିବା ଏହାର ମୂଳ ଉଦ୍ଦେଶ୍ୟ । ତେଣୁ ପ୍ରଥମେ ମୁଁ ସେହି ସ୍ଥାନର ମାହାତ୍ମ୍ୟ କହୁଛି ।

ମହାପ୍ରଭୁ ରାମଚନ୍ଦ୍ର ଚିତ୍ରକୂଟରେ ଥିବାବେଳେ ଅତ୍ରିମୁନିଙ୍କ ଆଦେଶରେ ପୁଷ୍କର କ୍ଷେତ୍ରକୁ ଯାଇଥିଲେ । ସେଠାରେ ମାର୍କଣ୍ଡେୟ ମୁନିଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ମାର୍କଣ୍ଡେୟ ମୁନି କହିଲେ—ରାମ ! ଏହି ପୁଷ୍କର କ୍ଷେତ୍ର ବିଶେଷ ପୁଣ୍ୟପ୍ରଦ । ତୁମେ ଏଠାରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କର ।"

ସ୍ୱର୍ଗତ ଦଶରଥ ସ୍ୱପ୍ନରେ ଶ୍ରୀରାମଙ୍କୁ ସେହିକଥା କହିବାରୁ ପିତାଙ୍କ ଇଚ୍ଛା ଓ ମୁନିଙ୍କ ଆଦେଶ ଅନୁସାରେ ସେ ବଣର ଫଳମୂଳ ଆଣି ବିଧିବିଧାନ ଅନୁସାରେ ନିଜର ପିତୃଗଣଙ୍କୁ ଶ୍ରାଦ୍ଧଦେଲେ । ସେଠାରେ ସୀତା ପ୍ରତ୍ୟକ୍ଷ ବ୍ରାହ୍ମଣ ବେଶରେ ଉପସ୍ଥିତ ମହାରାଜ ଦଶରଥଙ୍କୁ ଦେଖିଥିଲେ । ଶ୍ୱଶୁର ଆଗରେ ବୋହୂ ରହିବା କଥା ନୁହେଁ । ତେଣୁ ସେପାଖରେ ଥିବା ଏକ ଗଛ ଆଢ଼ୁଆଳରେ ରହିଲେ । ଶ୍ରାଦ୍ଧ ଶେଷହେଲା । ସମସ୍ତେ ତୃପ୍ତିହୋଇ ଭୋଜନ କଲେ । ରାତିଟିଏ ସେଠାରେ ରହି ପ୍ରଭୁ ଶ୍ରୀରାମଚନ୍ଦ୍ର ପରଦିନ ଜ୍ୟେଷ୍ଠ ପୁଷ୍କର ତୀର୍ଥକୁ ଗଲେ । ସେଠାରେ ସୀତା ଓ ଲକ୍ଷ୍ମଣଙ୍କ ସହିତ ରାମଚନ୍ଦ୍ର ଏକମାସକାଳ ଅବସ୍ଥାନ କରିଥିଲେ । ବ୍ରତକଲେ ଓ ବ୍ରତ ଶେଷରେ ଶ୍ରାଦ୍ଧ କଲେ । ସେଠାରୁ କିଛିଦୂର ଗିବାପରେ ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ— "ସୌମିତ୍ରେ ! ତୁମେ ମୋ' କମଣ୍ଡଳୁ ନେଇଯାଅ, ଜ୍ୟେଷ୍ଠ ପୁଷ୍କରରୁ ଜଳନେଇ ଆସିବ । ସେହି ଜଳରେ ପାଦଧୋଇ ଏଠାରେ ସୁଖରେ ଶୋଇବା ।"

ଏହାଶୁଣି ଲକ୍ଷ୍ମଣ କହିଲେ—"ଭାଇ । ତୁମେ ମୋତେ ସବୁବେଳେ ହଇରାଣ କରୁଛ । ପାଣି ଆଣ, ଫଳ ଆଣ, ଫୁଲ ଆଣ, ଏହା ଆଣ, ତାହା ଆଣ ଇତ୍ୟାଦି ମୁଁ ଅନେକ ଦିନହେଲା । ଦାସ ରୂପେ ଆପଣଙ୍କ ସେବା କରିଆସୁଛି । ଆଉ ମୁଁ ପାରିବିନି । ମୁଁ ପାଣି ଆଣିବା ପାଇଁ ଯାଇପାରିବ ନାହିଁ ।"

ଶ୍ରୀରାମଚନ୍ଦ୍ର କହିଲେ - "ଠିକ୍‌ଅଛି, ମୁଁ ଯାଇ ନେଇଆସିବି ।"

ଲକ୍ଷ୍ମଣ ରାଗିଯାଇ କହିଲେ --ହଁ ତୁମେତ ନେଇ ଆସିବ । କିନ୍ତୁ ଏଇ ଗୋଲାପାଲ ସୀତାଙ୍କୁ ଯେ ପାଳିଛ ତାଙ୍କଦ୍ୱାରା ଜଳ ଆଣୁନାହଁ କାହିଁକି ? ସେ ତ ମୋଠାରୁ ଅଧିକ ମୋଟାମୋଟି ହୋଇଛନ୍ତି । କିନ୍ତୁ ତାଙ୍କୁ କିଛି କରିବା ପାଇଁ ନକହି ସବୁବେଳେ ମୋତେ କଷ୍ଟଦେଉଛ । ସୀତାଙ୍କ ପକ୍ଷନେଇ ତୁମେ ମୋତେ ଟିକିଏ ଆରାମରେ ରହିବା ପାଇଁ ସୁବିଧା ଦେଉନାହଁ । କାକେଇ ତୁମର ମୁହଁ ବଢ଼େଇ ଦେଇଛନ୍ତି । ପରଲୋକକୁ କଣ ତୁମ ଲାଙ୍ଗୁଡ଼ ଧରି ସେ ଯିବେ ସାଙ୍ଗରେ ? ନିଜ ବାପାଙ୍କ କଥା ଚିନ୍ତାକର । ଧନରତ୍ନ ଠୁଳକରି କୈକେୟୀଙ୍କୁ ପ୍ରସନ୍ନ କଲେ ଏବଂ ତୁମକୁ ବଣକୁ ପଠାଇଦେଲେ । ସବୁ ଛାଡ଼ି ସେ ଚାଲିଗଲେ । କଣ ଧନରତ୍ନ ନା

କୈକେୟୀ, କଏ ତାଙ୍କ ସହିତ ଗଲା ? ଆଉ ଅଧିକ କହି ଲାଭନାହିଁ । ଆପଣ ନିଜ ବାଟରେ ଯାଆନ୍ତୁ ମୁଁ ଅନ୍ୟବାଟରେ ଯିବି । ସୀତା ଆପଣଙ୍କ ସହିତ ଯାଆନ୍ତୁ ଏବଂ ଆପଣ ତାଙ୍କୁ ଭଲଭାବରେ ପାଳନ ପୋଷଣ କରନ୍ତୁ ।''

ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କ ମୁଖରୁ ଏପରି ଅପ୍ରିୟ, କଠୋର ହୃଦୟ ବିଦାରୀ କାଉଭଳି କଥା କେବେ ଶୁଣି ନ ଥିଲେ । ସେ ଏପ୍ରକାର ଅଶ୍ରୁତପୂର୍ବ କଥା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ଲକ୍ଷ୍ମଣଙ୍କୁ ସେ ପଦେ ହେଲେ କିଛି କହିଲେ ନାହିଁ । ସୀତା ମଧ୍ୟ ଚୁପ୍‌ଚାପ୍ ବସି ଧୀରୁ ଶୁଣୁଥାନ୍ତି । ସେ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ଶେଷରେ ସୀତା ନିଜେ ଯାଇ ପୁଷ୍କରରୁ କମଣ୍ଡଳୁରେ ଜଳ ନେଇ ଆସିଲେ । ରାମଚନ୍ଦ୍ରଙ୍କ ଚରଣ ଧୋଇଦେଲେ ଏବଂ ଶେଯ ବିଛାଇଦେଲେ । ଶ୍ରୀରାମଚନ୍ଦ୍ର ଅତି ଦୁଃଖିତ ହୋଇ ଶୋଇପଡ଼ିଲେ । ଲକ୍ଷ୍ମଣଙ୍କ ବ୍ୟବହାରରେ ତାଙ୍କୁ ଖୁବ୍ କଷ୍ଟ ହେଉଥିଲା ।

ସକାଳେ ଶ୍ରୀରାମଚନ୍ଦ୍ର ମଧୁର ସ୍ୱରରେ କହିଲେ—''ଭାଇ ଲକ୍ଷ୍ମଣ ! ଉଠ, ଚାଲ ଦକ୍ଷିଣ ଆଡ଼କୁ ଯିବା ।''

ଏହା ଶୁଣି ଲକ୍ଷ୍ମଣ ଆଖିକୁ ଲାଲ୍ କରି କହିଲେ—''ରାଘବ ! ଆପଣ ସୀତାଙ୍କୁ ସାଙ୍ଗରେ ନେଇ ଯାଆନ୍ତୁ । ମୁଁ ଆପଣଙ୍କ ସାଙ୍ଗରେ ଯିବିନାହିଁ ।''

ଭଗବାନ୍ ଖୁବ୍ ସ୍ନେହରେ କହିଲେ—''ହଉ, ତୁମେ ମୋ' ସହିତ ନ ଯାଅ । ତୁମର ଇଚ୍ଛା ଯୁଆଡ଼େ ହେଉଛି ସେଆଡ଼େ ଯାଅ ।''

ଲକ୍ଷ୍ମଣ କହିଲେ—''ନାଁ, ମୁଁ ଅନ୍ୟ କୁଆଡ଼େ ଯିବିନାହିଁ ।''

ଶ୍ରୀରାମଚନ୍ଦ୍ର କହିଲେ—''ହଉ, ତୁମେ ଅନ୍ୟ କୁଆଡ଼େ ନ ଯାଇ ଅଯୋଧ୍ୟାକୁ ଫେରିଯାଅ ।''

ଲକ୍ଷ୍ମଣ ମୁଣ୍ଡ ହଲାଇ କହିଲେ—''ନାଁ, ମୁଁ ଅଯୋଧ୍ୟାକୁ ମଧ୍ୟ ଯିବିନାହିଁ । ଏହି ବଣରେ ଆପଣଙ୍କଠାରୁ ଅଲଗା ରହି ଚଉଦ ବର୍ଷ ତପସ୍ୟା କରିବି । ତା'ପରେ ମୋ ଇଚ୍ଛା ଯାହା ହେବ ତାହା କରିବି । ଆପଣ ମୋ ବିଷୟରେ ଆଦୌ ଚିନ୍ତା କରିବା ଦରକାର ନାହିଁ ।''

ରଘୁନାଥ ସସ୍ନେହରେ କହିଲେ—''ଭାଇ ! ତୁ ଅଯୋଧ୍ୟାରୁ ମୋ' ସହିତ ଆସିଥିଲୁ । ତୋତେ ଅଯୋଧ୍ୟା ଫେରିଗଲେ ଲୋକେ ମୋତେ କ'ଣ କହିବେ ?''

ଲକ୍ଷ୍ମଣ କହିଲେ—"ଲୋକେ ଯାହା କହନ୍ତୁ, ସେଥିରୁ କ'ଣ ମିଳିବ ଆମକୁ ? ହଉ, ଆପଣ ଚଉଦବର୍ଷ ପରେ ଯେତେବେଳେ ଅଯୋଧ୍ୟାକୁ ଫେରିବେ ସେତେବେଳେ ଏଇବାଟେ ଆସିବେ । ଯଦି ମୁଁ ବଞ୍ଚିଥିବି ତେବେ ପିତୃନିବାସ ଅଯୋଧ୍ୟାକୁ ଦେଖିବା-ପାଇଁ ତୁମ ସହିତ ଯିବି । ଏବେ ଆଉ ଯିବିନି । ପ୍ରଭୁ ଆପଣଙ୍କର ମଙ୍ଗଳ କରନ୍ତୁ । ମୁଁ ଏଇଠି ରହୁଛି ।"

ଶ୍ରୀରାମ କହିଲେ—"ନାଁ ଭାଇ ! ତୁ ମୋ' ସହିତ ଚାଲ ।'

ଲକ୍ଷ୍ମଣ କହିଲେ—"ପ୍ରଭୋ ! ଥରେ ନୁହେଁ ହଜାରେ ଥର କହିଲେ ମଧ୍ୟ ମୋ' ମନ ମାନିବ ନାହିଁ । ଆପଣ ଫେରିଲେ ଆପଣଙ୍କୁ ଅଯୋଧ୍ୟା ରାଜ-ସିଂହାସନରେ ବସିବାର ଦେଖିବାପାଇଁ ଥରଟିଏ ଯିବି । ଭରତ ଓ ଶତ୍ରୁଘ୍ନ ଆପଣଙ୍କର ଅତି ପ୍ରିୟ । ମୁଁ ତ ଆପଣଙ୍କର ପ୍ରିୟ ଭାଇ ନୁହେଁ । ମୋଦ୍ୱାରା ଆପଣଙ୍କର କିଛି କାମ ହେବାର ନାହିଁ । ମୁଁ ଏହି ବନରେ କଷ୍ଟସହି ସହି କାଳ କାଟିଦେବି ।"

ସସ୍ନେହରେ ରଘୁନନ୍ଦନ ପୁଣି କହିଲେ—"ଦେଖ୍ ଭାଇ ! ତୁ ଏକଥା ଅଯୋଧ୍ୟାରେ ମୋତେ କହିଲୁ ନାହିଁ କାହିଁକି ? ତୁ ତ କହିଲୁ ଚଉଦବର୍ଷ କାଳ ମୋ' ସହିତ ବନରେ ରହିବୁ । ତୋତେ ଛାଡ଼ି ଏବେ ମୁଁ ରହିବି କିପରି ? ବଣକଥା ଛାଡ଼, ତୋ' ବିନା ମୋତେ ସ୍ୱର୍ଗକୁ ନେଲେ ମଧ୍ୟ ମୁଁ କ୍ଷଣେକାଳ ରହିପାରିବି ନାହିଁ । ତୁ ଯଦି ଯିବାକୁ ଇଚ୍ଛା କରୁନାହୁଁ ତେବେ ମୁଁ ମଧ୍ୟ ଏଇଠି ରହିବି ।"

ଲକ୍ଷ୍ମଣ କହିଲେ—"ମୋ' ସହିତ ରହିଲେ କଣହେବ ? ମୁଁ ଆଉ ପୂର୍ବପରି ତୁମର ସେବା କରିପାରିବି ନାହିଁ ।"

ଶ୍ରୀରାମ କହିଲେ—"ତୁମକୁ ସେବା କରିବାପାଇଁ କହୁଛି କିଏ ? ତୁ ମୋର ସେବା କରିବୁ ନାହିଁ । ଏଇ ମୂହୂର୍ତ୍ତରୁ ମୁଁ ତୋର ସେବା କରିବି । ତୁ ଯେମିତି ରହିବୁ ମୁଁ ସେମିତି ରହିବି । କିନ୍ତୁ ତୁ ମୋ ଉପରେ ରାଗିଲୁ କାହିଁକି ? ଟିକିଏ ମୋ' ପ୍ରତି ଦୃଷ୍ଟି ଦେ, ମୋତେ ବାଟ ମଝିରେ ଛାଡ଼ିଦେଉଛୁ କାହିଁକି ?"

ଲକ୍ଷ୍ମଣ ପୁଣି କହିଲେ—"ପ୍ରଭୋ ! ଆପଣ ମୋତେ ଏଇଠି ଛାଡ଼ିଦେଇ ସୀତାଙ୍କୁ ସାଙ୍ଗରେ ନେଇଯାଆନ୍ତୁ ।"

ଶ୍ରୀରାମଚନ୍ଦ୍ର କହିଲେ—"ହଉ, ଗୋଟିଏ କାମ କର । ମୁଁ ସୀତାଙ୍କୁ ସାଙ୍ଗରେ ନେଇ ଚାଲିଯିବି । ତୁ ମୋ' ଧନୁଟା ଧରି ମର୍ଯ୍ୟାଦା ପର୍ବତ ପାଖରେ ଆମକୁ ଛାଡ଼ିଦେଇ ଫେରିଆସିବୁ ।"

ଶ୍ରୀରାମଚନ୍ଦ୍ରଙ୍କ ଅନୁରୋଧ ରକ୍ଷାକରି ଲକ୍ଷ୍ମଣ ଧନୁଟି ଧରି ପଛେ ପଛେ ଗ୍ଲଲେ । ସେହି କ୍ଷେତ୍ର ପାରହୋଇ ଯେତେବେଳେ ସେମାନେ ମର୍ଯ୍ୟାଦା ପର୍ବତ ପାଖରେ ପହଞ୍ଚିଲେ ସେତେବେଳେ ଏକ ଶିବମନ୍ଦିର ସେଠାରେ ଦେଖିବାକୁ ପାଇଲେ । ରାମଚନ୍ଦ୍ର ସେହି ଶିବଙ୍କୁ ପୂଜାକଲେ, ସ୍ତୁତି ପାଠକଲେ ଏବଂ ସେଠାରୁ ଯାଇ ଇନ୍ଦ୍ରମାର୍ଗ ନାମ୍ନୀ ନଦୀ ତୀରରେ ପହଞ୍ଚିଲେ । ସେଠାରେ ଜଜର ବକ୍ଷିପ୍ତ ଜଟାକୁ ଭଲକରି ବାନ୍ଧି ଲକ୍ଷ୍ମଣଙ୍କୁ କହିଲେ—"ଭାଇ ! ଦେ ମୋ' ଧନୁଟା ମୋତେ ଦେ । ଏବେ ତୋର ଯାହା ଇଚ୍ଛାହେଉଛି ତାହା କର । ଇଚ୍ଛାହେଲେ ଆମସହିତ ଗ୍ଲ ନୋହିଲେ ତୋ' ଇଚ୍ଛା ଅନୁସାରେ ଗ୍ଲଯା ।"

ଆଜ ଶ୍ରୀରାମଙ୍କ ମୁଖରୁ ଏପରି କଠୋର ବାକ୍ୟଶୁଣି ଲକ୍ଷ୍ମଣଙ୍କ ଆଖିରେ ଲୁହ ଆସିଗଲା । ସେ ମୁହଁ ତଳକୁ କରି ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ । ରାମଚନ୍ଦ୍ରଙ୍କ ମୁହଁକୁ ଗ୍ହିଁବା ପାଇଁ ତାଙ୍କର ସାହସ ହେଲନାହିଁ । ସେ ଥରୁଥାଆନ୍ତି । ଶ୍ରୀରାମଚନ୍ଦ୍ରଙ୍କୁ ସେ ପଦଟିଏ ବି କିଛି କହିପାରିଲେ ନାହିଁ । ନିକଟରେ ବସିଥିବା ଜନକନନ୍ଦିନୀଙ୍କ ପାଖକୁ ଯାଇ ଲକ୍ଷ୍ମଣ ତାଙ୍କ ପାଦତଳେ ଲୋଟି ପଡ଼ିଲେ ଓ କାନ୍ଦିଲେ ।

ଜାନକୀ ସସ୍ନେହରେ କହିଲେ—"ବତ୍ସ ଲକ୍ଷ୍ମଣ ! ତୁମେ ଏପରି ଅଧୀର ହେଉଛ କାହିଁକି ?"

ଲକ୍ଷ୍ମଣ କାନ୍ଦି କାନ୍ଦି କହିଲେ—"ଦେବି ! ମୁଁ ଜାଣେନାହିଁ, କେଉଁ କାରଣରୁ ଶ୍ରୀରାମ ମୋତେ ପରିତ୍ୟାଗ କରୁଛନ୍ତି । ହେ ଜନନୀ ! ଶ୍ରୀରାମ ବିନା ମୁଁ ମୁହୂର୍ତ୍ତେ ହେଲେବି ବଞ୍ଚିପାରିବି ନାହିଁ । ମୁଁ ଏଇଠି ଏବେ ପ୍ରାଣତ୍ୟାଗ କରିବି ।"

ଜଗଜ୍ଜନନୀ ସୀତା କହିଲେ—"ଲକ୍ଷ୍ମଣ ! ତୁମକୁ ଶ୍ରୀରାମ କିପରି ତ୍ୟାଗ-କରିବେ ? ତୁମେ ଯେ ତାଙ୍କର ବାହ୍ୟପ୍ରାଣ ସଦୃଶ ।"

ଲକ୍ଷ୍ମଣ ପୁଣି କହିଲେ—"ଦେବି ! ମୁଁ ବଡ଼ ପାପୀ, କ୍ରୂର ଓ କୁଳର କଳଙ୍କ । ଯେ, ମୋର ଆରାଧ୍ୟ, ଶ୍ରେଷ୍ଠ, ଜ୍ୟେଷ୍ଠ ଓ ଇଷ୍ଟ, କ୍ରୋଧବଶତଃ ମୁଁ ତାଙ୍କୁ ଅପମାନିତ କରିଛି । ଏବେ ମୋ' ପାଇଁ ନରକବାସ ଶ୍ରେୟସ୍କର । ମୋର ଆଉ ନିସ୍ତାର ନାହିଁ ।"

ଏହାକହି ଲକ୍ଷ୍ମଣ ଦୁଇ ହାତରେ ମୁହଁକୁ ଘୋଡ଼ାଇ କାନ୍ଦିବାକୁ ଲାଗିଲେ । ଦେବୀ ସୀତା ଲକ୍ଷ୍ମଣଙ୍କୁ ସାନ୍ତ୍ୱନା ଦେଇ ଶ୍ରୀରାମଙ୍କୁ କହିଲେ—"ରାଘବ ! ପ୍ରାଣତୁଲ୍ୟ ପ୍ରିୟ ଭାଇକୁ ତୁମେ ପରିତ୍ୟାଗ କରୁଛ କାହିଁକି ? ଲକ୍ଷ୍ମଣ ତ ସେପରି କିଛି ଗୁରୁତର ଅପରାଧ କରିନାହାନ୍ତି । ଯଦିବା କିଛି ଅପରାଧ କରିଛନ୍ତି ତାଙ୍କୁ କ୍ଷମାକରିବା ଉଚିତ

ନୁହେଁ କି ? ବଡ଼ମାନେ ସାନମାନଙ୍କ ଭୁଲ୍ ପ୍ରତି ଧ୍ୟାନଦିଅନ୍ତି ନାହିଁ । ସାନମାନେ ସବୁବେଳେ ସାନ ।''

ସୀତାଙ୍କ କଥାଶୁଣି ଶ୍ରୀରାମ ହସି ହସି କହିଲେ—''ଦେବି ! ମୁଁ ଲକ୍ଷ୍ମଣଙ୍କୁ ଛାଡ଼ି ଚାଲିଯିବି ଏହାକଣ ତୁମେ ବିଶ୍ୱାସ କରୁଛ ? ଭୁଲ୍‌ରେ ବି ଲକ୍ଷ୍ମଣ ମୋତେ ବା ତୁମକୁ କିଛି ଖରାପ କଥା କହିଛନ୍ତି ବୋଲି ତୁମେ କଣ ଅନୁମାନ କରୁଛ ? ଏବେ କିଛି ସମୟ ପୂର୍ବରୁ ଲକ୍ଷ୍ମଣ ଯେଉଁ କଠୋର ବାକ୍ୟମାନ କହିଛି ସେଥିରେ ତା'ର କିଛି ଦୋଷନାହିଁ । ଏହା ଘଟିଛି ଏହି ସ୍ଥାନର ପ୍ରଭାବରୁ । ଏ ସ୍ଥାନଟି ଅଭିଶପ୍ତ । ଏଠାରେ ଗୁରୁ ଶିଷ୍ୟ, ପିତା ପୁତ୍ର, ଭାଇ ଭାଇ ମଧ୍ୟରେ ସୁସମ୍ପର୍କ ରହିବ ନାହିଁ । ଏହି ସ୍ଥାନର ପ୍ରଭାବରୁ ଏଠାରେ ସହଜ ସ୍ନେହଭାବ ରହିବ ନାହିଁ । ଆମ୍ଭେମାନେ ସେ ସ୍ଥାନର ସୀମା ପାରହୋଇ ଆସିଛୁ । ଏବେ ଆଉ ଚିନ୍ତା କରିବାର କିଛିନାହିଁ । ଏହାକହି ଶ୍ରୀରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କ ସହିତ ଯାଇ ରେବାନଦୀ ତୀରରେ ପହଞ୍ଚିଲେ ।

ସୂତ କହିଲେ—''ଦେବଗଣ ! ମହାରାଜ ସୁଦ୍ୟୁମ୍ନ ସ୍ଥାନଟିର ପ୍ରଭାବ ହେତୁ ସ୍ତ୍ରୀ ପାଲଟିଗଲେ । ସେଠାକୁ ଯେ ଯିବ ସେ ସ୍ତ୍ରୀ ହୋଇଯିବ ବୋଲି ଅଭିଶାପ ଅଛି । ତେଣୁ ରାଜାଙ୍କ ସହିତ ତାଙ୍କ ଅନୁଚର ଓ ବାହନ ପୁରୁଷରୁ ସ୍ତ୍ରୀ ହୋଇଗଲେ । ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରିଲେ—ଭଗବନ୍ ! ସେ ସ୍ଥାନଟି କାହାଦ୍ୱାରା ଅଭିଶପ୍ତ ହୋଇଥିଲା ଓ ଏପରି ଅଭିଶାପ ଦେବାର କାରଣ କ'ଣ ?''

ଶ୍ରୀ ଶୁକଦେବ ହସି ହସି କହିଲେ—''ରାଜନ୍ ! ଏହା କାହାର ଅଭିଶାପ ବା ବରଦାନର ଫଳ ନୁହେଁ । ସ୍ଥାନଟି ହେଉଛି ମହାଦେବଙ୍କ ବିହାରସ୍ଥଳୀ । ସବୁ ସ୍ତ୍ରୀ ପୁରୁଷ ତାଙ୍କର ଅଂଶମାତ୍ର । ସେ ସମସ୍ତଙ୍କର ସ୍ୱାମୀ । ଠିକ୍‌ଅଛି, ମୁଁ ସେଇ କଥାଟି କହୁଛି, ଆପଣ ମନଦେଇ ଶୁଣନ୍ତୁ ।

## ଛପ୍‌ପୟ

ପୁଛେଁ ନୃପ—ଗୁରୁ ! ନୃପତି ଭୟୌ ତୌଁ ନାରୀ କରତୈଁ ।
ଅଦ୍‌ଭୁତ ଦେଶ ପ୍ରଭାବ ଭୟୌ କିହି କାରନକେ ବର ତୈଁ ।।
ହଁସି କେ ଶ୍ରୀଶୁକ କହେ—ଭୂପ ଅଚରଜ ମତ ମାନୋ ।
ଜଗକୁଁ କ୍ରୀଡ଼ାଭୂମି ଭବାନୀପତି କୀ ଜାନୋ ।।
ମେରୁ ନିକଟ ଅତି ସୁଘର ବନ, ଜହଁ ଝର ଝର ଝରନା ଝରହିଁ ।
ଉମା ସଙ୍ଗ ତହଁ କପରଦୀ, କମନୀୟା କ୍ରୀଡ଼ା କରହିଁ ।



# ଇଳା ଓ ବୁଧ

ତଦିଦଂ ଭଗବାନାହ ପ୍ରିୟାୟାଃ ପ୍ରିୟକାମ୍ୟୟା ।
ସ୍ଥାନଂ ଯଃ ପ୍ରବିଶେଦେତତ୍ ସ ବୈ ଯୋଷିଦ୍ ଭବେଦିତି ।।

(ଭା-୯-୧-୩୨)

## ଛପ୍ପୟ

ଶିବ ଦରଶନ କେ ହେତୁ ତହାଁ ଇକଦିନ ବହୁ ଋଷିମୁନି ।
ଆୟେ ସୋଚତ ହୋହିଁ କୃତାରଥ ଶିବ ଶିକ୍ଷା ସୁନି ।।
କିନ୍ତୁ ପ୍ରିୟା ସଙ୍ଗ କରେ ରମଣ କାମରି ଉମାପତି ।
ଅଙ୍କ ବିରାଜେଁ ଉମା ବିବସ୍ତ୍ରା ଅତି ପ୍ରସନ୍ନ ଅତି ।।
ଦାଢ଼ୀ ବାଲେ ଋଷିନ ଲଖି, ପାରବତୀ ଲଜ୍ଜିତ ଭଈଁ ।
ଉଠୀ ଅଙ୍କ ତେଁ ତୁରଇ, ଲତା ଓଟ ମହଁ ଛୁପି ଗଈଁ ।।

ଲଜ୍ଜା ନାରୀର ଭୂଷଣ । ସ୍ତ୍ରୀଲୋକମାନଙ୍କୁ ଲଜ ଶିଖାଇବାକୁ ପଡ଼େନାହିଁ । ଲଜ୍ଜା ସେମାନଙ୍କର ସ୍ୱାଭାବିକ ପ୍ରବୃତ୍ତି, ସ୍ତ୍ରୀ ଅପେକ୍ଷା ପୁରୁଷ ନିର୍ଲଜ । କିନ୍ତୁ ସତୀ, ସାଧ୍ୱୀ, ପତିବ୍ରତା, ଲଜ୍ଜାବତୀ ନାରୀକୁ ଦେଖି ପୁରୁଷ ସ୍ୱାଭାବିକଭାବେ ଲଜ୍ଜିତ ହୋଇପଡ଼େ । ସେ ସିଧାସଳଖ ଚାହିଁବାକୁ ସାହସ କରେନାହିଁ । ସ୍ତ୍ରୀଲୋକମାନେ ଅନ୍ୟ ସ୍ତ୍ରୀଲୋକଙ୍କ ଅପେକ୍ଷା ପରପୁରୁଷଙ୍କ ପାଖରେ ବିଶେଷ ଲଜ୍ଜା ଅନୁଭବ କରନ୍ତି । କିନ୍ତୁ ସ୍ୱାମୀ ପୁରୁଷ ହେଲେବି ସେ ନିଜର ଆତ୍ମା ଓ ଅଙ୍ଗରୂପେ ବିବେଚିତ । ତେଣୁ ସେଠାରେ ଲଜ୍ଜା ରହେନାହିଁ । କାରଣ ନିଜର ଅଙ୍ଗଠାରେ ଲଜ୍ଜା କ'ଣ ? ପୁଣି ଦୁଇ ହୃଦୟ ମିଶି ଏକାକାର ହୋଇଯିବା ପରେ ଲଜ୍ଜାର ପ୍ରଶ୍ନ ଉଠେନାହିଁ । ଯେଉଁ ସମାଜରେ ନାରୀ ଲଜ୍ଜାହୀନ ଓ ସ୍ୱୈରାଚାରିଣୀ ହୋଇଯାଏ ସେ ସମାଜ ସଦାଚାରହୀନ ବୋଲି ଗୃହୀତ ହୁଏ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସୁମେରୁ ପର୍ବତର ପାଦଦେଶରେ ବିଶ୍ୱନାଥ ନିଜର ପ୍ରିୟା ପାର୍ବତୀଙ୍କ ସହିତ ପ୍ରତିଦିନ ନୂତନ କାମକ୍ରୀଡ଼ାରେ ବ୍ୟାପୃତ

ରହନ୍ତି । ସେଠାରେ ବାରମାସ ଯାକ ବସନ୍ତ ଋତୁ ବିରାଜିତ ଥାଏ । ପ୍ରକୃତିରାଣୀ ନିଜର ନଗ୍ନ ରୂପ ସଂସାରକୁ ଦେଖାଇ ନୃତ୍ୟ କରୁଥାଏ । ସ୍ଥାନଟି ପ୍ରକୃତି ଓ ପୁରୁଷଙ୍କ ନିତ୍ୟ ବିହାର ସ୍ଥଳୀରୂପେ ଅପୂର୍ବ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ପରିପୂର୍ଣ୍ଣ । ଜୀବ ଅଜ୍ଞାନତାବଶତଃ ସଂସାରକୁ ଦୁଃଖର ସାଗର ବୋଲି ଭାବୁଥିଲେ ମଧ୍ୟ ଏ ଜଗତ୍ ଏକ ମହାବିହାର ସ୍ଥଳୀରୂପେ ବିବେଚିତ । ସେଠାରେ ନଟରାଜ ଶିବ ନିଜ ସହଚରୀ ସତୀଙ୍କ ସହିତ ନିତ୍ୟ ନୂତନ ନୃତ୍ୟରେ ନିମଜ୍ଜିତ । ତେଣୁ ସ୍ଥାନଟି ଥିଲା ଶିବପାର୍ବତୀଙ୍କର ରଙ୍ଗଭୂମି । ଦଶଯୋଜନ ବିସ୍ତୃତ ସେହି ପୁଣ୍ୟଭୂମି ଶରବଣ କ୍ଷେତ୍ର ନାମରେ ଅଭିହିତ ।

ଶରବଣ କ୍ଷେତ୍ର ଶିବ ଓ ଶିବାଙ୍କ ନିତ୍ୟ ବିହାରସ୍ଥଳୀ । ନିତ୍ୟ ବିହାର କରିବାରେ ରସିକରହିଁ ପୂର୍ଣ୍ଣ ଅଧିକାର । ଯେ ନୀରସ ବା ଅରସିକ, କଠୋର ହୃଦୟ ଜଡ଼ ନିୟମରେ ଆବଦ୍ଧ ସେ ନିତ୍ୟ ବିହାରକୁ ଦେଖିବା ଦୂରେଥାଉ ଶୁଣିବା ପାଇଁ ମଧ୍ୟ ଯୋଗ୍ୟ ନୁହେଁ । ସେପରି ଲୋକଙ୍କୁ ପ୍ରକୃତି ପୁରୁଷଙ୍କ ନିତ୍ୟବିହାର କଥା ଶୁଣାଇବା ପାପ । ଯେ ଶୁଣାଏ ସେ ମାର୍ଗଭ୍ରଷ୍ଟ ହୁଏ । ନିତ୍ୟ ବିହାରରେ ବିହାରୀ ରମଣଙ୍କୁ ଛାଡ଼ି ଅନ୍ୟ ସମସ୍ତେ ସହଚରୀ ହୁଅନ୍ତି । ପୁରୁଷାଭିମାନୀର ସେଠାରେ ସ୍ଥାନ ନାହିଁ ।

ରାଜନ୍ ! ଶରବଣ ପ୍ରଦେଶରେ ପ୍ରିୟା ସହିତ ପୁରାଣ ପୁରୁଷ ପଶୁପତି ବିଭିନ୍ନ ପ୍ରକାର କାମକ୍ରୀଡ଼ା କରୁଥିଲେ । ଭଗବତୀ ଉମା ଅଗାଧ ସାଗରରେ ମତ୍ସ୍ୟପରି ଶିବଙ୍କ କୋଳରେ କ୍ରୀଡ଼ାରତ ଥିଲେ । ବୃକ୍ଷ ଶାଖାରେ ଲତା ଜଡ଼ିତ ଥିଲାପରି ପାର୍ବତୀ ଶିବଙ୍କ ଦେହକୁ ଆଲିଙ୍ଗନ କରି ରହିଥିଲେ । ପ୍ରେମର ଝରଣା ଝରୁଥିଲା ଓ ଆନନ୍ଦ-ସାଗରରେ ଉଦ୍ବେଳିତ ହେଉଥିଲା ତରଙ୍ଗ ପରେ ତରଙ୍ଗ । ସୌହାର୍ଦ୍ଦ୍ୟ ଓ ଅନୁରାଗର ନିରବଚ୍ଛିନ୍ନ ପ୍ରବାହ ବହିଚାଲିଥିଲା । ହଠାତ୍ ରସଭଙ୍ଗ ହେଲା । ସରସତା ନୀରସତାରେ ପରିଣତ ହୋଇଗଲା । କେତେକ ମୁନିଋଷି 'ଜଗତ୍ ସତ୍ୟ କି ମିଥ୍ୟା' ଏହା ପଚାରିବା ପାଇଁ ଶିବପାର୍ବତୀଙ୍କ କ୍ରୀଡ଼ା କ୍ଷେତ୍ରରେ ଆସି ପହଞ୍ଚିଲେ ।

ବହୁକାଳ ଧରି ତପସ୍ୟା କରିବା ଫଳରେ ମୁନିଋଷିମାନଙ୍କ ଦେହ କଳା ପଡ଼ିଯାଇଥିଲା । ସେମାନଙ୍କ ଆପାଦଲମ୍ବିତ ଜଟା ରୁକ୍ଷ, ଶୁଷ୍କ ଦେଖାଯାଉଥିଲା । ପରିଧାନ ଥିଲା ବଲ୍କଲ । ରୁଦ୍ରାକ୍ଷ ଓ ତୁଳସୀର ମୋଟା ମୋଟା ମାଳାରେ ଦେହ ଆବୃତ ଥିଲା । ହାତରେ ଦଣ୍ଡକମଣ୍ଡଳୁ ଧରି ମୁନିଋଷିଗଣ ଶିବଙ୍କ ଦର୍ଶନପାଇଁ ଆସୁଥିଲେ । ଦୂରରୁ ସେମାନଙ୍କ ଆସିବାର ପଦଧ୍ୱନି ଶୁଣି ପାର୍ବତୀଙ୍କ ଦୃଷ୍ଟି ସେଆଡ଼କୁ

ଟାଣି ହୋଇଗଲା । ସେ ଲଜ୍ଜିତ ହୋଇ ହଠାତ୍ ପ୍ରିୟତମଙ୍କ ସୁଖପ୍ରଦ କୋଳରୁ ଉଠିଯାଇ ଏକ ଗହଳିଆ ଲତା ଆଢୁଆଳରେ ଲୁଚିଗଲେ ।

ଋଷିଗଣ ପ୍ରତ୍ୟକ୍ଷରେ ଏହି ଦୃଶ୍ୟ ଦେଖୁଥିଲେ । ତେଣୁ ଆଉ ଆଗକୁ ଯିବାପାଇଁ ସେମାନଙ୍କର ସାହସ ହେଲାନାହିଁ । ସେମାନେ ନିଜର ଭୁଲ ବୁଝିପାରିଲେ । ସେମାନେ ଅନଧିକାର ପ୍ରବେଶ କରିଥିଲେ । ନିଜକୃତ ନିୟମକୁ ସେମାନେ ଭାଙ୍ଗି ଦେଲେ ବୋଲି ଅନୁଭବ କଲେ । ପ୍ରେମର ଅଧିକାରୀ ନହୋଇ ପ୍ରେମରାଜ୍ୟରେ ପ୍ରବେଶ କରିବା ଅନୁଚିତ । ସ୍ୱାର୍ଥସିଦ୍ଧି ପାଇଁ ନିୟମ ଉଲ୍ଲଂଘନ କରିବା କାମଲମ୍ପଟତା ଓ ଇନ୍ଦ୍ରିୟଲୋଲୁପତା ବ୍ୟତୀତ ଅନ୍ୟକିଛି ନୁହେଁ ।

ପରସ୍ତ୍ରୀକୁ ନଗ୍ନ ଅବସ୍ଥାରେ ଦେଖିବା ପାପ । ନିଜ ଇଚ୍ଛାରେ ଏହା କରି ନ ଥିଲେ ମଧ୍ୟ ଅନୁପ୍ରବେଶଦ୍ୱାରା ନିୟମଭଙ୍ଗ ହୋଇଛି । ତେଣୁ ନିୟମଭ୍ରଷ୍ଟ ହେଲେ, ବ୍ରତଭଙ୍ଗ କଲେ ନାରାୟଣଙ୍କ ନାମ ସ୍ମରଣ ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ । ଏହା ଭାବି ମୁନିମାନେ ସେହି ସ୍ଥାନରେ ଶିବଙ୍କୁ ପ୍ରଣାମ କରି ଭଗବାନ୍ ନାରାୟଣଙ୍କ ଦର୍ଶନ ପାଇଁ ବିଶାଳାପୁରୀର ବଦରିକାଶ୍ରମକୁ ଗଲେ ।

ରଙ୍ଗ ଭଙ୍ଗ ହେଲେ ତାହା ପୁନର୍ବାର ଯୋଡ଼ାଯାଇପାରେ ନାହିଁ । ପାର୍ବତୀ ଫେରି ଆସିଲେ । କଥାବାର୍ତ୍ତାର ପ୍ରବାହ ବଦଳିଗଲା । ଦେବୀ ପାର୍ବତୀ ଲଜ୍ଜିତ ହୋଇ କହିଲେ—"ସଂସାରୀ ଲୋକମାନଙ୍କଠାରୁ ବହୁ ଦୂରରେ ଆସି ଆମେ ଏଠାରେ ରହିଲୁ । ତଥାପି ଆମେ ଏକାନ୍ତରେ ରହିପାରିଲୁ ନାହିଁ । ଏ ଦାଢ଼ିଆ ଲୋକମାନଙ୍କର ଏଠି କ'ଣ କାମ ଥିଲା ?"

ମହାଦେବ ହସି ହସି କହିଲେ –"ମୁଁ ବି ଜଣେ ପୁରୁଷ । କହିବ ଯଦି ମୁଁ ବି ଚାଲିଯିବି ।"

ହସ ହସ ମୁଖରେ ପାର୍ବତୀ କହିଲେ—"ଆପଣଙ୍କୁ ପୁରୁଷ ବୋଲି କିଏ କହୁଛି ? ଆପଣ ତ ଅର୍ଦ୍ଧନାରୀଶ୍ୱର । ଆପଣ ଚାଲିଗଲେ ମୋଲା ତ ସରିଯିବ । ଆଉ ରହିବ କ'ଣ ?"

ମହାଦେବ ପଚାରିଲେ—"ତୁମର ଇଚ୍ଛା କ'ଣ ? ମୁଁ ରହିବି, ଅନ୍ୟ କେହି ଏଠାକୁ ଆସିବେ ନାହିଁ ତ ?"

ପାର୍ବତୀ ଚମକି ପଡ଼ି କହିଲେ—"ପ୍ରଭୋ ! ଏହା କିପରି ହେବ ? ସାଙ୍ଗ-ସାଥିଙ୍କ ବ୍ୟତୀତ ମୁଁ କିପରି ରହିବି ? ଜୟା, ବିଜୟା ଆଦି ସଖୀଗଣ ମୋର ବାହ୍ୟପ୍ରାଣ ସଦୃଶ ।"

ଭୋଳାନାଥ ପଚାରିଲେ—"ତାହାହେଲେ ତୁମର ଇଚ୍ଛା କ'ଣ ? ସ୍ୱାମୀମାନଙ୍କ ବ୍ୟତୀତ ଅନ୍ୟ କୌଣସି ପୁରୁଷ ଶରବଣରେ ପ୍ରବେଶ କରିବେ ନାହିଁ, ଏହାହିଁ କ'ଣ ତୁମର ଅଭିଳାଷ ?"

ପାର୍ବତୀ ଖୁସି ହୋଇ କହିଲେ—"ହଁ ପ୍ରଭୋ ! ତାହାହିଁ ମୋର ଇଚ୍ଛା । ଏଠାକୁ ମୁନି ଋଷି ବା ଅନ୍ୟ ପୁରୁଷ ଯେ ଆସିବ ସେ ନାରୀ ପାଲଟି ଯିବ । ତେଣୁ ଆଉ ଲଜ୍ଜା କରିବାର ଅବସର ଆସିବ ନାହିଁ ।"

ଭୋଳାନାଥ ପାର୍ବତୀଙ୍କ ଅଭିଳାଷ ପୂରଣ ପାଇଁ କହିଲେ—"ଆଜିଠାରୁ ମୋ' ବ୍ୟତୀତ ଅନ୍ୟ ଯେ କୌଣସି ପୁରୁଷ ଏଠାରେ ପ୍ରବେଶ କରିବ ସେ ନିଶ୍ଚୟ ସ୍ତ୍ରୀ ପାଲଟିଯିବ ।" ଅଳ୍ପ ସମୟ ମଧ୍ୟରେ ମହାଦେବଙ୍କ ଆଦେଶ ସର୍ବତ୍ର ପ୍ରଚାରିତ ହୋଇଗଲା । ସେହିଦିନଠାରୁ ଯକ୍ଷ, ରାକ୍ଷସ, ଗନ୍ଧର୍ବ, କିନ୍ନର, ଗୁହ୍ୟକ, ଭୂତ, ପ୍ରେତ, ପିଶାଚ, ଦେବତା କେହି ହେଲେ ସେ ବନକୁ ଗଲେ ନାହିଁ । କିନ୍ତୁ ଦୁର୍ଭାଗ୍ୟବଶତଃ ରାଜର୍ଷି ସୁଦ୍ୟୁମ୍ନ ସେଠାରେ ପହଞ୍ଚି ଗଲେ । ପରିଣତ ଯାହା ହେବାର କଥା ହେଲା । ସୁଦ୍ୟୁମ୍ନ ନାରୀ ପାଲଟି ଗଲେ । ଅମର ଯୁବତୀମାନଙ୍କୁ ନିନ୍ଦାକଲା ପରି ସେ ହେଲେ ଏକ ସୁନ୍ଦରୀ ଯୁବତୀ ନାରୀ । ତାଙ୍କର ସୈନ୍ୟମାନେ ମଧ୍ୟ ନାରୀ ହୋଇଗଲେ ।

ନାରୀ ରୂପ ଗ୍ରହଣ କରିବା ପରେ ସୁଦ୍ୟୁମ୍ନ ନିଜର ପୂର୍ବ ପରିଚୟ ଭୁଲିଗଲେ । ଜଣେ ସୁନ୍ଦରୀ ଯୁବତୀର ମନ ନେଇ ସେ ଏବନରୁ ସେବନ ସଖୀମାନଙ୍କ ସହିତ ବୁଲିବାକୁ ଲାଗିଲେ । ଶରବଣ କ୍ଷେତ୍ରରେ ବୃକ୍ଷଲତାଗୁଡ଼ିକ ଫୁଲ ଫଳରେ ଲଦି ହୋଇପଡ଼ିଥିଲେ । ଇଚ୍ଛା ଅନୁସାରେ ବୃକ୍ଷଗଣ ଭୋଜନ, ବସ୍ତ୍ର, ଆଭୂଷଣ ପ୍ରଦାନ କରୁଥିଲେ । ମଧୁର ଶୀତଳ ଜଳ ପ୍ରବାହଯୁକ୍ତା ନଦୀ ବହିଯାଉଥିଲା । ଯୁବତୀ ଇଲା ନିର୍ଜନ ଅରଣ୍ୟାନୀର ମୋହମୟ ମାଦକତାରେ ନିଜକୁ ହଜାଇଦେଲେ । ତାଙ୍କ ହୃଦୟରେ କାମନାର ଜ୍ୱାଳା ଉତ୍ପନ୍ନ ହେଲା । ସେ ନିଜର ଯୋଗ୍ୟ ପତି ପାଇବା ପାଇଁ ବ୍ୟାକୁଳ ହୋଇ ଘୂରି ବୁଲିଲେ ।

ବନଭୂମିର ପ୍ରାନ୍ତ ଭାଗରେ ଗହଳ ବୃକ୍ଷଲତା ପରିବେଷ୍ଟିତ ଏକ ସୁନ୍ଦର ସରୋବର ଥିଲା । ଚନ୍ଦ୍ରମାଙ୍କ ପୁତ୍ର ପରମ ତେଜସ୍ୱୀ ବୁଧ ବହୁକାଳ ହେଲା ସେହି ପୋଖରୀ ଜଳରେ ପଶି ତପସ୍ୟା କରୁଥିଲେ । ଦେବତାମାନଙ୍କ ମଧ୍ୟରେ ସେ ଥିଲେ ସବୁଠୁ ସୁନ୍ଦର । ବୁଧଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସଂସାରର ସମସ୍ତ ନାରୀ ତାଙ୍କୁ ସ୍ନେହ ଦୃଷ୍ଟିରେ ଦେଖୁଥିଲେ । ବୁଧ ଖୁବ୍ ସୁନ୍ଦର ହୋଇଥିଲେ ମଧ୍ୟ ତାଙ୍କର ସୌନ୍ଦର୍ଯ୍ୟ ପରୀକ୍ଷା କରିବା ପାଇଁ କେହି ଯୋଗ୍ୟ ବ୍ୟକ୍ତି ମିଳି ନ ଥିଲେ । ବଣର ମାଳତୀ ସୁନ୍ଦର ଓ ସୁଗନ୍ଧଯୁକ୍ତ ହୋଇଥିଲେ ମଧ୍ୟ ତା'ର ପ୍ରଶଂସକ ନ ଥିବାରୁ ତାକୁ

ଯେପରି କେହି ଜାଣିପାରନ୍ତି ନାହିଁ ସେହିପରି ବୁଧଙ୍କ ସୌନ୍ଦର୍ଯ୍ୟକୁ ପ୍ରଶଂସା କଲାଭଳି କେହି କୃତି ନ ଥିଲେ । ଏଣେ ଇଲାଦେବୀ ଥିଲେ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତିମା । ବୁଧ ଓ ଇଲାଙ୍କର ସାକ୍ଷାତ ହେଲା । ଉଭୟ ନିଜ ନିଜ ଆଖିରେ ପରସ୍ପରକୁ ଦେଖିଲେ । ମନର ଭାବ ମନ ବୁଝିଲା ଓ ହୃଦୟ ସହିତ ହୃଦୟର ପରିଚୟ ହେଲା । ଉଭୟଙ୍କ ମନରେ ପରସ୍ପରକୁ ପାଇବାର ଇଚ୍ଛା ଉଦ୍‌ବେଳ ହୋଇ ଉଠିଲା । ଉଭୟ ଯୁବକ ଯୁବତୀ ଥିଲେ ଓ ଅବିବାହିତ ଥିଲେ । ବୁଧ ତପସ୍ୟା ଭୁଲିଗଲେ ଏବଂ ଇଲା ଭ୍ରମଣ କରିବା ପାଶୋରିଦେଲେ । ପୁଷ୍କରିଣୀ ତୀରରେ ଉଭୟ ପରସ୍ପରକୁ ଚାହିଁ ରହିଲେ ।”

ଶ୍ରୀ ଶୁକଦେବ କହିଲେ—“ରାଜନ୍ ! ପ୍ରାରବ୍ଧର ପରିଣତିକୁ କେହି ଦୂର କରିପାରିବ ନାହିଁ । ବୁଧ କେଉଁଠି ଓ ରାଜା ସୁଦ୍ୟୁମ୍ନ କେଉଁଠି ? କିନ୍ତୁ ସଂଯୋଗବଶତଃ ଉଭୟ ଏକତ୍ରିତ ହେଲେ । ପରସ୍ପରକୁ ପତିପତ୍ନୀ ରୂପେ ପାଇବା ପାଇଁ ଦୁହେଁ ଯତ୍ନ କଲେ ।”

## ଛପ୍‌ପଯ୍ୟ

ନିରଖି ରମଣୀକୋ ସମସ୍ତ ଭୟେ ଲଜ୍ଜିତ କୌତେ ମୂକ ।
ଗୟେ ସମୂର୍ଚ୍ଛି ଋଷି, ଉମା ଅଙ୍କ ପତିକୀ ବୈଠି ପୂନ ॥
ପାରବତୀ ପ୍ରିୟ କରନ ହେତୁ ଶିବ ବୋଲେ ବାନୀ ।
ଆଓ୍ୱତ ହୋଓ୍ୱେ ନାରୀ ପୁରୁଷ ସଂଜ୍ଞକଇହଁ ପ୍ରାନୀ ॥
ଶ୍ରାଦ୍ଧଦେବ ସୁତ ଭଗ୍ୟବଶ, ଭୟେ ପୁରୁଷ ତେଁ ନାର ତହଁ ।
ସଖିନ ସଙ୍ଗ ଘୁମତ ଫିରତ, ଚହୁଙ୍କେ ବୁଧ ତପ କରହୁଁ ଜହଁ ॥



## ପୁରୁରବାଙ୍କ ଜନ୍ମ

ଅଥ ତାମାଶ୍ରମାଭ୍ୟାଶେ ଚରନ୍ତୀଂ ପ୍ରମଦୋତ୍ତମାମ୍ ।
ସ୍ତ୍ରୀଭିଃ ପରିବୃତାଂ ବୀକ୍ଷ୍ୟ ଚକମେ ଭଗବାନ୍ ବୁଧଃ ॥
ସାପି ତଂ ଚକମେ ସୁଭ୍ରୂଃ ସୋମରାଜ ସୁତଂ ପତିମ୍ ।
ସ ତସ୍ୟାଂ ଜନୟାମାସ ପୁରୁରବସମାତ୍ମଜମ୍ ॥

( ଭାଗ-୯-୧-୩୪,୩୫ )

### ଛପୟ

ଇଳା କାମନା କରି ବକୁତ ଶତ ବୁଧ କେ ଆଇ ।
ନେତ୍ର ନେତ୍ର ମିଲି ଗୟେ ସରସତା ହୃଦୟ ମହଁ ଛାଇ ॥
ବିଧିବତ ଭୟୋ ବିବାହ ଇଳା ଅତ ମନ ହରଷାଇ ।
ଭୂଲେ ବୁଧ ଜପ ଯୋଗ ଭାଗ୍ୟ ତେଁ ପତ୍ନୀ ପାଇ ॥
ଛିନ ସମ ବୀତେ ବର୍ଷ ବହୁ, ଗୃହୀ ଧର୍ମ ମହଁ ହେ କରତ ।
ବୁଧ ପ୍ରମୁଦିତ ବନ ମହଁ ବସତ, ଇଳା ସଙ୍ଗ କ୍ରୀଡ଼ା କରତ ॥

ଭବିଷ୍ୟତ ନିଶ୍ଚିନ୍ତ ହୋଇ ରହିଛି । ସେ ଯେତେ ପ୍ରଯତ୍ନ କଲେ ମଧ୍ଯ ପ୍ରାରବ୍ଧକୁ ମେଣ୍ଟେଇବାର ସାମର୍ଥ୍ୟ କାହାର ନାହିଁ । ଯାହା ସହିତ ଯାହାର ସଂଯୋଗ ହେବା କଥା ତାହା ନିଶ୍ଚୟ ହେବ । ଜଣେ ରାଜକୁମାର ଥିଲା । ଥରେ ଜଣେ ଜଉତିଷକୁ ସେ ପଚାରିଲେ—"ମୋର ବିବାହ କାହା ସହିତ ହେବ ?"

ଜଉତିଷ କହିଲେ—"କୁମାର ! ଏକ ନର୍ତ୍ତକୀ ସହିତ ତୁମର ବିବାହ ହେବ । ସେହି ନର୍ତ୍ତକୀର ପୁଅ ତୁମ ପରେ ରାଜ୍ୟର ରାଜା ହେବ ।"

ରାଜକୁମାରଙ୍କୁ ଏହା ଭଲ ଲାଗିଲା ନାହିଁ । ତାଙ୍କ ରାଜ୍ୟରେ କୌଣସି ନର୍ତ୍ତକୀ ରହିପାରିବେ ନାହିଁ ବୋଲି ସେ ଆଦେଶନାମା ଜାରିକଲେ । କୌଣସି ନର୍ତ୍ତକୀ

ବା ନର୍ତ୍ତକୀ ତାଙ୍କ ସହିତ ସାକ୍ଷାତ କରିପାରିବେ ନାହିଁ ବୋଲି ଆଦେଶ ହେଲା । ନର୍ତ୍ତକୀ ସହିତ ବିବାହ ଯେପରି ନହେବ ସେଥିପାଇଁ ରାଜା ସର୍ବଦା ଯତ୍ନକଲେ । କିନ୍ତୁ ସଂଯୋଗବଶତଃ ଅନ୍ୟ ଏକ ଦେଶର ରାଜା ଏ ରାଜ୍ୟକୁ ଆକ୍ରମଣ କଲେ ଏବଂ ରାଜ୍ୟ ଜୟ କରି ରାଜାଙ୍କୁ ବନ୍ଦୀ ଭାବେ ନେଇଗଲେ । ରାଜକୁମାର ବନ୍ଦୀଜୀବନ ଅତିବାହିତ କରୁଥିବା ସମୟରେ ଏକ ସୁନ୍ଦରୀ କନ୍ୟା ତାଙ୍କୁ ଖାଇବାକୁ ଦେବାକୁ ଆସୁଥିଲା ଓ ତାଙ୍କର ସେବା ଶୁଶ୍ରୂଷା କରୁଥିଲା । ଥରେ ରାଜକୁମାର ଅତ୍ୟଧିକ ଅସୁସ୍ଥ ହୋଇପଡ଼ିଲେ । ସେହି କନ୍ୟାଟି ଦିନରାତି ଏକାକାର ରାଜକୁମାରଙ୍କ ସେବା ଶୁଶ୍ରୂଷା କଲା । କୁମାର ସୁସ୍ଥ ହୋଇଯିବା ପରେ କୃତଜ୍ଞତାର ସହିତ କହିଲେ— "ସୁନ୍ଦରୀ ! ତୁମେ ମୋର ଜୀବନ ରକ୍ଷାକରିଛ । ଏଣୁ ମୋର ଜୀବନକୁ ତୁମଠାରେ ଅର୍ପଣ କରୁଛି ।"

ସେହି ଝିଅଟି କହିଲା—"ପ୍ରଭୋ ! ମୁଁ ଏକ ନର୍ତ୍ତକୀର କନ୍ୟା । ଆପଣଙ୍କ ଯୋଗ୍ୟା ନୁହେଁ ।" ସେତେବେଳେ କୁମାର ଜ୍ୟୋତିଷଙ୍କ ଭବିଷ୍ୟତ ବାଣୀ ମନେ ପକାଇଲେ । ସେ ଭାବିଲେ—ଭାଗ୍ୟକୁ କେହି ବଦଳେଇ ପାରିବ ନାହିଁ । ହଉ, ଜଉତିଷଙ୍କ ବଚନ ରହୁ ଏବଂ ମୋର ପ୍ରତିଜ୍ଞା ମଧ୍ୟ ପାଳିତ ହେଉ । ସେହି ବନ୍ଦୀ-ଶାଳାରେ ଦୁହିଁଙ୍କର ଗାନ୍ଧର୍ବ ବିବାହ ହୋଇଗଲା ଏବଂ ନର୍ତ୍ତକୀ ଚତୁରତାର ସହିତ ରାଜକୁମାରଙ୍କୁ ମୁକୁଳେଇ ନେଲା । ସେ ପୁଣି ସୈନ୍ୟ ସାମନ୍ତ ଠୁଳ କରି ନିଜ ରାଜ୍ୟ ଫେରାଇ ନେଲେ । ସେହି ନର୍ତ୍ତକୀକନ୍ୟାର ପୁତ୍ର ଶେଷରେ ରାଜା ହେଲା । ତେଣୁ ଭବିତବ୍ୟତା ଯାହା ନିର୍ଦ୍ଧାରିତ ହୋଇଥାଏ ସେ ଅନୁସାରେ ଯୋଗାଯୋଗ ଘଟେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସ୍ତ୍ରୀ ରୂପରେ ପରିବର୍ତ୍ତିତ ସୁଦ୍ୟୁମ୍ନଙ୍କୁ ଦେଖି ସୋମପୁତ୍ର ବୁଧ ତାଙ୍କୁ ବିବାହ କରିବା ଇଚ୍ଛାକଲେ । ବୁଧ ଯେପରି ସୁନ୍ଦର ସେହିପରି ବୁଦ୍ଧିମାନ୍ ଥିଲେ । ଇଳାଙ୍କ ସଖୀମାନଙ୍କୁ ପଚାରି ତାଙ୍କର ଏପର୍ଯ୍ୟନ୍ତ ବିବାହ ହୋଇନାହିଁ ବୋଲି ଜାଣି ବୁଧ ମନେ ମନେ ଖୁସି ହୋଇଗଲେ । ସେ ଇଳାଙ୍କ ପାଖକୁ ଯାଇ କହିଲେ—ସୁନ୍ଦରୀ ! ମୁଁ ଚନ୍ଦ୍ରଙ୍କ ପୁତ୍ର ବୁଧ । ହେ ସୁମୁଖି ! ତୁମେ ମୋ' ଆଶ୍ରମକୁ ଚାଲ ଏବଂ ସୁଖରେ ମୋ' ସହିତ ବିହାର କର ।"

ଇଳାଙ୍କ ମନ ବୁଧଙ୍କ ସୌନ୍ଦର୍ଯ୍ୟରେ ମୋହିତ ହୋଇ ସାରିଥିଲା । ସେ ବିନା ଦ୍ୱିଧାରେ ବୁଧଙ୍କ ସହିତ ଆଶ୍ରମକୁ ଚାଲିଲେ । ବୁଧ ଭାବିଲେ ଏତେ ସ୍ତ୍ରୀ ଲୋକଙ୍କୁ ନେଇ ଏଠାରେ ରହି, କ'ଣ କରିବ । ତେଣୁ ସ୍ତ୍ରୀରୂପେ ପରିବର୍ତ୍ତିତ ହୋଇଥିବା ସୈନିକମାନଙ୍କୁ

କିଂପୁରୁଷମାନଙ୍କ ହାତରେ ସମର୍ପଣ କରଦେଲେ ଏବଂ ନଜେ ଇଲାଙ୍କୁ ବିବାହ କଲେ । ଏହାପରେ ବୁଧ ଇଲାଙ୍କୁ ସାଙ୍ଗରେ ନେଇ ବନ, ଉପବନ, ସୁମେରୁ ପର୍ବତର ରମଣୀୟ ଶୃଙ୍ଗରେ ବିହାର କରବାକୁ ଲାଗିଲେ । ଉଭୟ ପରସ୍ପର ପ୍ରତି ଗଭୀରଭାବେ ଆସକ୍ତ ଥିଲେ । ସ୍ନେହ ଓ ପ୍ରେମପାଶରେ ଆବଦ୍ଧହୋଇ ଉଭୟ ଆତ୍ମହରା ହୋଇ-ପଡ଼ିଲେ । ଦନ ଓ ରାତ କେତେବେଳେ ଆସୁଛ ଓ ଯାଉଛ ତାହା ସେମାନେ ଜାଣିପାରଲେ ନାହିଁ । ଏହିପର ସୁଖଭୋଗରେ ତାଙ୍କର ଦନ କଟିବାକୁ ଲାଗିଲା ।

କଛି କାଳପରେ ଇଲାଙ୍କ ଗର୍ଭରୁ ପୁଅଟିଏ ଜନ୍ମହେଲା । ବୁଧ ନଜ ପୁଅର ନାମ ରଖିଲେ ପୁରୂରବା । ସେହି ପୁରୂରବା ଚନ୍ଦ୍ରବଂଶ ପ୍ରତିଷ୍ଠା କରିଥିଲେ ।

ମହାରାଜ ପରୀକ୍ଷିତ ପଚାରଲେ—"ଭଗବନ୍ ! ମହାରାଜ ସୁଦ୍ୟୁମ୍ନ କ'ଣ ସବୁଦନ ପାଇଁ ସ୍ତ୍ରୀହୋଇ ରହିଗଲେ ?"

ଭଗବାନ୍ ଶ୍ରୀ ଶୁକଦେବ କହିଲେ—"ନାଁ, ରାଜନ୍ ! ସେ ସ୍ତ୍ରୀହୋଇ ରହିଲେ ନାହିଁ କି ପୁରୁଷ ହେଲେନାହିଁ ଏବଂ ନପୁଂସକ ମଧ୍ୟ ହେଲେ ନାହିଁ । ସେ ଅର୍ଦ୍ଧମ୍ ଅର୍ଦ୍ଧ ହୋଇ ରହିଲେ ।"

ପରୀକ୍ଷିତ ପୁଣି ପଚାରଲେ—"ଭଗବନ୍ ଅର୍ଦ୍ଧମ୍ ଅର୍ଦ୍ଧ କଣ ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଅର୍ଦ୍ଧମ୍ ଅର୍ଦ୍ଧର ଅର୍ଥ ସେ କଛି ଦନ ସ୍ତ୍ରୀ ଓ କଛି ଦନ ପୁରୁଷ ହୋଇ ରହିଲେ । ପୁରୂରବାଙ୍କ ଜନ୍ମ ପରେ ବୁଧ ସତର୍କ ହୋଇଗଲେ । ସେ ଭାବଲେ—ପିଲାଛୁଆ ହେଲେ ମାୟା ବଢ଼ିଲା । ତେଣୁ ଅଧିକ ଦୂର ଅଗ୍ରସର ହେବା ଉଚିତ ନୁହେଁ । ଏହା ଭାବ ସେ ଶ୍ରାଦ୍ଧଦେବ ବୈବସ୍ୱତ ମନୁଙ୍କୁ ସବୁକଥା ଜଣାଇଦେଲେ । ଏହା ଶୁଣିବାମାତ୍ରେ ବୈବସ୍ୱତ ମନୁ ପୁରୋହିତଙ୍କୁ ସାଙ୍ଗରେ ନେଇ ବୁଧଙ୍କ ଆଶ୍ରମକୁ ଗଲେ । ସେଠାରେ ବହୁ ମୁନଋଷି ଆସି ପହଞ୍ଚିଲେ । ସମସ୍ତେ ବିଚାର କଲେ, ଏବେ କଣ କରବା । ସୁଦ୍ୟୁମ୍ନ ପୁରୁଷ ହେବେ କପର ?"

ବୈବସ୍ୱତ ମନୁ ବଶିଷ୍ଠଙ୍କୁ କହିଲେ—"ମହାରାଜ ! ଆପଣ ସେହି ପୁରୁଣା ମନ୍ତ୍ର ପଢ଼ି ଇଲାକୁ ସୁଦ୍ୟୁମ୍ନ କରଦଅନ୍ତୁ ।"

ମହର୍ଷି ବଶିଷ୍ଠ କହିଲେ—"ରାଜନ୍ ! ବର୍ତ୍ତମାନ ସେହି ମନ୍ତ୍ରଦ୍ୱାରା ଆଉ କାର୍ଯ୍ୟସିଦ୍ଧି ହେବନାହିଁ । ସେ ଏବେ ପାର୍ବତୀ ପତିଙ୍କଦ୍ୱାରା ଅଭିଶପ୍ତ ହୋଇ ସାରଛନ୍ତି । ତେଣୁ କୃପାସାଗର ସେହି ବୃଷଭଧ୍ୱଜଙ୍କୁ ସ୍ମରଣ କରବା ବ୍ୟତୀତ ଅନ୍ୟ

ଉପାସ୍ୟ ନାହିଁ । ଏହାକହି ବଶିଷ୍ଠ ମନ୍ତ୍ର ଓ ସ୍ତୁତିପାଠଦ୍ୱାରା ଆଶୁତୋଷ ଶଙ୍କରଙ୍କ ଉପାସନା କଲେ । ମହର୍ଷି ବଶିଷ୍ଠଙ୍କ ଉପାସନାରେ ସନ୍ତୁଷ୍ଟ ହୋଇ ଭଗବାନ୍ ଶଙ୍କର ସାକ୍ଷାତ ଦେଇ କହିଲେ—"ମୁନିବର ! ରାଜା ସୁଦ୍ୟୁମ୍ନଙ୍କୁ ପୁରୁଷ ରୂପେ ପରିବର୍ତ୍ତିତ କରିବା ବ୍ୟତୀତ ତୁମେ ଅନ୍ୟ ଯେ କୌଣସି ବର ପ୍ରାର୍ଥନା କର ।"

ଦୁଃଖପୂର୍ଣ୍ଣ ହୃଦୟରେ ବଶିଷ୍ଠ କହିଲେ—"ହେ ବିଶ୍ୱନାଥ ! ମହାରାଜ ସୁଦ୍ୟୁମ୍ନଙ୍କ ପୁରୁଷତ୍ୱ ଲାଭ ନିମିତ୍ତ ମୁଁ ଆପଣଙ୍କୁ ଆବାହନ କରିଛି । ସେହି ବର ପ୍ରାର୍ଥନା ପାଇଁ ଆପଣ ନିଷେଧ କରୁଛନ୍ତି । ତଦ୍‌ବ୍ୟତୀତ ମୋର ଆଉ କିଛି ମାଗିବାର ନାହିଁ ।"

ଭଗବାନ୍ ଶଙ୍କର କହିଲେ—"ମୁନିବର ! ମୋର ବଚନ ଅନ୍ୟଥା ହେବା ଉଚିତ ନୁହେଁ । ମୋ' ବାକ୍ୟ ଅନ୍ୟଥା ହେଲେ କିଛି ଦୁଃଖ ନାହିଁ, କିନ୍ତୁ ନିଜ ଭକ୍ତଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରେଁ । ଗିରିରାଜ-ନନ୍ଦିନୀ ମୋର ଭକ୍ତ, ମୋଠାରେ ଅନୁରକ୍ତ ଓ ମୋର ପ୍ରିୟ ସହଚରୀ । ସେ କହି-ଥିଲେ—ଆପଣ ତ ଭୋଳାନାଥ, ଯେ ଆପଣଙ୍କୁ ସ୍ତୁତିରେ ସନ୍ତୁଷ୍ଟ କରିବ ଆପଣ ତାକୁ ପୁଣି ପୁରୁଷ କରିଦେବେ । ତେବେ ଏପରି ଅଭିଶାପ ଦେବାର ମୂଲ୍ୟ କଣ ? ବର୍ତ୍ତମାନ ମୋର ଅର୍ଦ୍ଧାଙ୍ଗ ପାର୍ବତୀଙ୍କର ଓ ଅର୍ଦ୍ଧାଙ୍ଗ ମୋର । ସେ ପୁରୁଷ କରିବା ପାଇଁ ଅନୁମତି ଦେଉନାହାନ୍ତି । କିନ୍ତୁ ତୁମେ ତ ମୋର ଭକ୍ତ । ତୁମ ଉପାସନାରେ ମୁଁ ସନ୍ତୁଷ୍ଟ । ତୁମର ଅଭିଳାଷ ମଧ୍ୟ ପୂର୍ଣ୍ଣହେବା ଆବଶ୍ୟକ । ତେଣୁ ଅର୍ଦ୍ଧମ୍ ଅର୍ଦ୍ଧ ନ୍ୟାୟ ଏହାର ସମାଧାନ ହେଉ ।"

ବଶିଷ୍ଠ ପଚାରିଲେ—"ପ୍ରଭୋ ! ଅର୍ଦ୍ଧମ୍ ଅର୍ଦ୍ଧ କ'ଣ ?

ଶିବ କହିଲେ –"ଆଜିଠାରୁ ରାଜା ସୁଦ୍ୟୁମ୍ନ ମାସେ ସ୍ତ୍ରୀ ହୋଇ ରହିବେ ଏବଂ ମାସେ ପୁରୁଷ ହେବେ ।"

ମହର୍ଷି ବଶିଷ୍ଠ କହିଲେ—"ପ୍ରଭୋ ! ଏହା ତ ବର ନୁହେଁ ବରଂ ଅଭିଶାପ ହେଲା । ରାଜା ଯେତେବେଳେ ମନେ ପକାଇବେ ଯେ, ଆଗାମୀ ମାସ ସ୍ତ୍ରୀ ହେବାକୁ ପଡ଼ିବ ସେତେବେଳେ ଲଜ୍ଜାରେ ତାଙ୍କ ମୁଣ୍ଡ ତଳକୁ ହୋଇଯିବ ।"

ଭଗବାନ୍ ଭୋଳାନାଥ ସାନ୍ତ୍ୱନା ଦେଇ-କହିଲେ –"ନା ନା, ସେପରି ହେବନାହିଁ । ସେ ଯେତେବେଳେ ପୁରୁଷ ଅବସ୍ଥାରେ ରହିବେ ସେତେବେଳେ ସ୍ତ୍ରୀ ହେବାର ସ୍ମୃତି ଆସିବ ନାହିଁ । ସେହିପରି ସ୍ତ୍ରୀ ଅବସ୍ଥାରେ ଥିବାବେଳେ ତାଙ୍କର ପୁରୁଷତ୍ୱ କଥା ସ୍ମରଣ ହେବନାହିଁ ।"

ମହର୍ଷି ବଶିଷ୍ଠ ଭାବିଲେ—'ଠିକ୍ ଅଛି । ସବଂସ୍ୱ ଗଲାବେଳେ ବୁଦ୍ଧିମାନ୍ ପୁରୁଷ ଅର୍ଦ୍ଧେକ ପାଇଲେ ସନ୍ତୁଷ୍ଟ ହୁଏ । ତେଣୁ ଏ କ୍ଷେତ୍ରରେ ତାହାହିଁ ଗ୍ରହଣ କରିବା ଯୁକ୍ତିଯୁକ୍ତ ହେବ ।''

ଶ୍ରୀ ଶୁକଦେବ କହିଲେ—''ରାଜନ୍ ! ଶିବ ଏହିପରି ବର ପ୍ରଦାନ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଲୋକେ ସୁଦ୍ୟୁମ୍ନଙ୍କୁ ସାଙ୍ଗରେ ନେଇ ଗଲାବେଳେ ବୁଧ କହିଲେ—ମୁଁ ଏଇ ପିଲାଟିକୁ ବଣରେ ରଖି କିପରି ପାଳନ କରିବି ? ଏ ପିଲାକୁ ମଧ୍ୟ ସାଙ୍ଗରେ ନେଇଯାଅ । ବଶିଷ୍ଠଙ୍କ ଆଦେଶ ଅନୁସାରେ ସୁଦ୍ୟୁମ୍ନ ବାଳକ ପୁରୁରବାଙ୍କୁ ସାଙ୍ଗରେ ଆଣିଲେ । ଏହିପରିଭାବେ ସୁଦ୍ୟୁମ୍ନ ପୁରୁରବାଙ୍କ ମାତା ଓ ପିତା ଉଭୟେ ହେଲେ । ବୁଧଙ୍କ ସଂସର୍ଗରୁ ଜାତ ହୋଇଥିବାରୁ ପୁରୁରବା ଚନ୍ଦ୍ରବଂଶୀ କ୍ଷତ୍ରିୟରୂପେ ପରିଚିତ ହେଲେ । ତେଣୁ ପୁରୁରବା ହେଲେ ଚନ୍ଦ୍ରବଂଶର ପ୍ରତିଷ୍ଠାତା ।

ଏହି କଥା ଶୁଣି ମହର୍ଷି ସୂତଙ୍କୁ ଶୌନକ ପଚାରିଲେ—''ଭଗବାନ୍ ! ବୁଧ ଥିଲେ ପଣ୍ଡିତ, ଜ୍ଞାନୀ ଓ ତ୍ରିକାଳଜ୍ଞ । ସେ ତ ଜାଣିଥିବେ ଯେ ନାରୀ ରୂପଧାରୀ ରାଜା ସୁଦ୍ୟୁମ୍ନ ଜଣେ ପୁରୁଷ । ତାଙ୍କ ସହିତ ସମ୍ପର୍କ ରଖିବା ଉଚିତ ନୁହେଁ ବୋଲି ଜାଣି ମଧ୍ୟ ସେ କାହିଁକି ଏପରି କାର୍ଯ୍ୟ କଲେ ?''

ମହର୍ଷି ସୂତ କହିଲେ—''ମହାଶୟ ! ଏଥିରେ ଦୋଷ କେଉଁଠି ରହିଲା ? ପ୍ରଥମେ ସେ ପୁରୁଷ ଥିଲେ, ସେଥିରେ କ'ଣ ଅଛି । ପୂର୍ବ ଜନ୍ମରେ ଜୀବ କେତେ ପ୍ରକାର ଯୋନିରେ ଜନ୍ମଗ୍ରହଣ କରିଥାଏ । ବୁଧ ଯେତେବେଳେ ତାଙ୍କୁ ଦେଖିଲେ ସେତେବେଳେ ସେ ଥିଲେ ଜଣେ ନାରୀ । ସେ ପୁଣି ପରପତ୍ନୀ ନୁହନ୍ତି, ଅବିବାହିତା ଯୁବତୀ ଥିଲେ । ବୁଧ ଧର୍ମପୂର୍ବକ ତାଙ୍କୁ ବିବାହ କଲେ । ଆଉ ରହିଲା ଚିତ୍ତ ଚଞ୍ଚଳ ହେବାର କାରଣ । ସେ କଥା ମୁଁ କହିପାରିବି ନାହିଁ । ବଡ଼ଲୋକଙ୍କର ବଡ଼କଥା । ବଡ଼ଲୋକମାନେ ଯାହା କରନ୍ତି ତାହା ନ୍ୟାୟରୂପେ ଗୃହୀତ, ତାହାହିଁ ଧର୍ମ ଓ ତାହାହିଁ ଉଚିତ କର୍ମ । ଧର୍ମର ବ୍ୟତିକ୍ରମ କରିବା ପ୍ରଭୁଙ୍କର ସାହସରୂପେ ବିବେଚିତ ।''

ମହାଶୟ ! ସତକଥା ହେଉଛି, ନିର୍ଜନରେ, ଏକାନ୍ତରେ ସୁନ୍ଦର, ମଧୁର, ପରିପକ୍ୱ ଫଳ ଏବଂ ଅଗାଧ ସୁନ୍ଦରୀ. ଚାରୁହାସିନୀ, ପୀବରସ୍ତନୀ, ଘନଜଘନା ଯୁବତୀକୁ ଦେଖି ସମସ୍ତଙ୍କ ମନ ପ୍ରାୟ ଚଞ୍ଚଳ ହୋଇଉଠେ । ଏଥିରେ ମାତା ପିତାଙ୍କ ରଜ-ବୀର୍ଯ୍ୟର ଦୋଷହିଁ ପ୍ରଧାନ କାରଣ । ଯାହାର ମାତୃବଂଶ ଓ ପିତୃବଂଶ ବିଶୁଦ୍ଧ ଥିବ ସେପରି ପୁରୁଷ ବା ନାରୀର ମନ ଯେକୌଣସି ଅବସ୍ଥା ଆସିଲେ ମଧ୍ୟ ଆଦୌ ଚଞ୍ଚଳ

ହୁଏନାହିଁ । ବଡ଼ଲୋକେ ସାହସୀ ହୁଅନ୍ତି । ତାଙ୍କର ବିରୋଧାଚରଣ କେହି କରି-
ପାରେ ନାହିଁ । ଚନ୍ଦ୍ରପୁତ୍ର ବୁଧଙ୍କର ଉତ୍ପତ୍ତି ମଧ୍ୟ ସେହିପରି ଗୋଲମାଲିଆ ଅବସ୍ଥାରେ
ଘଟିଥିଲା । ତେଣୁ ମାତାପିତାଙ୍କ ଆଡ଼ୁ କିଛି ଚଞ୍ଚଳତା ଆସିଥିଲେ ମଧ୍ୟ ତାହା
କ୍ଷମଣୀୟ । ପୁଣି ଦେବତାମାନଙ୍କ ପାଇଁ ଲୌକିକ ନିୟମମାନ ଲାଗୁ ହୁଏନାହିଁ ।"

ଶୌନକ ପଚାରିଲେ—"ମହାଶୟ ! ଭଗବାନ୍ ବୁଧଙ୍କ ଉତ୍ପତ୍ତି କିପରି
ହେଲା ତାହା କହନ୍ତୁ ।"

ମହର୍ଷି ସୂତ କହିଲେ— ଠିକ୍ ଅଛି । ପ୍ରଥମେ ଚନ୍ଦ୍ରବଂଶର କଥା ପ୍ରସଙ୍ଗରେ
ବୁଧଙ୍କ ଉତ୍ପତ୍ତି ବିଷୟ ବର୍ଣ୍ଣନା କରିବି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍ପୟ

ପରୁରବା ସୁତ ଇଳା ପ୍ରିୟା ବୁଧକୀ ନେ କାୟେ ।
ନାରଦ ତେଁ ସୁନ ବୃତ୍ତ ପୁରୋହିତ ସଙ୍ଗ ମନୁ ଆୟେ ॥
କୀୟେ ଶିବ ସନ୍ତୁଷ୍ଟ ଦୟୋ ବର ଅଦଭୁତ ଶଙ୍କର ।
ଏକ ମାସ ନର ରହେ ନାରୀ ଦୂସର ମହଁ ମନହର ॥
ଲୈକେ ସୁତ ସୁଦ୍ୟୁମ୍ନ ସଂଗ, ପ୍ରତିଷ୍ଠାନ ପୁର ଚଲେ ମନୁ ।
ପୁରୁରବା ଅତିଶୟ ସୁଘର, ମାନୋ ଦୂସର ଚନ୍ଦ୍ର ଜନୁ ॥



## ବୁଧଙ୍କ ଉତ୍ପତ୍ତି

ତସ୍ୟ ଦୃଗ୍‌ଭ୍ୟୋଽଭବତ୍ ପୁତ୍ରଃ ସୋମୋଽମୃତମୟଃ କିଲଃ ।
ବିପ୍ରୌଷଧ୍ୟୁଡ଼ୁଗଣାନାଂ ବ୍ରହ୍ମଣା କଳ୍ପିତଃ ପତିଃ ।।
ସୋଽଯଜଦ୍ ରାଜସୂୟେନ ବିଜିତ୍ୟ ଭୁବନ ତ୍ରୟମ୍ ।
ପତ୍ନୀଂ ବୃହସ୍ପତେର୍ଦର୍ପାତ୍ ତାରାଂ ନାମ ହରଦ୍‌ବଳାତ୍ ।।

(ଭାଗ-୯-୧୪-୩, ୪)

### ଛପ୍‌ପୟ

ଭୟେ ବ୍ରହ୍ମସୁତ ଅତ୍ରି ଚନ୍ଦ୍ରମା ଜନମେଁ ତନ କେ ।
ବଧି କୀୟେ ପତ ସର୍ବ ଔଷଧିନ ଅରୁ ବିପ୍ରନ କେ ।।
ରାଜସୂୟ ମଖ କର୍‌ୟୋ ଗର୍ବତେ ସୁରଗୁରୁ ଦାରା ।
ବଳପୂର୍ବକ ହରି ଲଇ ବୃହସ୍ପତି ପତ୍ନୀ ତାରା ।।
ଦେବାସୁର ସଂଗ୍ରାମ ଅତି ଭୀଷଣ ତାରା ହିତ ଭୟୋ ।।
କମଳାସନ ପରି ବୀଚ ମହଁ, ନିର୍ଣ୍ଣୟ ତାକୋ କରି ଦୟୋ ।।

ଧନମଦ, ଯୌବନମଦ, ରୂପମଦ, ଅଧିକାର ମଦ ଆଦି ପୁରୁଷର ବିବେକ ଓ ବୁଦ୍ଧିକୁ ନଷ୍ଟ କରିଦିଅନ୍ତି । ଐଶ୍ୱର୍ଯ୍ୟ ଲାଭକଲେ ଅଧିକାର ଗର୍ବ ଓ କାମୁକତା ଅତ୍ୟଧିକ ବଢ଼ିଥାଏ । ଏହାଦ୍ୱାରା ମଣିଷ ନିଜର ବିବେକ ଓ କର୍ତ୍ତବ୍ୟ ଜ୍ଞାନ ହରାଇ-ବସେ । କାମୁକ ପୁରୁଷ ସମସ୍ତ ପ୍ରକାର ଅକାର୍ଯ୍ୟ ନିର୍ଭୟରେ କରିଯାଏ । ଅକାର୍ଯ୍ୟ ଜନିତ ଅପକୀର୍ତ୍ତିର ଫଳ ସେ ନିଜେ ଭୋଗକରେ ଏବଂ ତା'ପରେ ବଂଶ ପରମ୍ପରାକ୍ରମେ ସମସ୍ତେ ସେହି କୁଫଳ ଭୋଗ କରିବାକୁ ବାଧ୍ୟ ହୁଅନ୍ତି । ଶ୍ରେଷ୍ଠ ହେଉ ବା ବଡ଼ ହେଉ କୁକାର୍ଯ୍ୟର ଫଳ ସମସ୍ତେ ଭୋଗ କରନ୍ତି । ବଡ଼ ଲୋକ ଭୁଲ କଲେ ତାଙ୍କ ଆଗରେ କେହି କିଛି ନ କହିଲେ ମଧ୍ୟ ତାଙ୍କ ପଛରେ ସମସ୍ତେ ତାଙ୍କୁ ନିନ୍ଦା କରନ୍ତି । ପ୍ରଭାବ-ଶାଳୀ ଲୋକଙ୍କ ଦୋଷକୁ ସମାଜ କ୍ଷମା ଦେଇପାରେ, ସେଥିରେ କିଛି ଯାଏ ଆସେ

ନାହିଁ । କିନ୍ତୁ ଦୋଷ ଦୋଷହୋଇ ରହିବ, ତାକୁ ଗୁଣ ବୋଲି କେହି କହିବେ ନାହିଁ । ତେଣୁ ପରମ୍ପରା ଅନୁସାରେ ପରବର୍ତ୍ତୀ ପୁରୁଷଙ୍କଠାରେ ବଂଶକ୍ରମାଗତ ଦୋଷ ବା ଗୁଣ କିଛି ନା କିଛି ପ୍ରକାଶ ପାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବୁଧଙ୍କ ଜନ୍ମ ପ୍ରସଙ୍ଗ କହୁଛି, ଶୁଣନ୍ତୁ । ବ୍ରହ୍ମାଙ୍କ ଦଶ ମାନସ ପୁତ୍ର ମଧ୍ୟରେ ଅତ୍ରି ଥିଲେ ଅନ୍ୟତମ । ମହର୍ଷି ଅତ୍ରି ଓ ତାଙ୍କ ପତ୍ନୀ ଅନସୂୟାଙ୍କ ଉପରେ ସନ୍ତୁଷ୍ଟ ହୋଇ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତାଙ୍କର ପୁତ୍ରରୂପେ ଜନ୍ମ ହେବା ପାଇଁ ବର ଦେଇଥିଲେ । ସେ ଅନୁସାରେ ବିଷ୍ଣୁଙ୍କ ଅଂଶରୁ ଅବଧୂତ ଦତ୍ତାତ୍ରେୟ, ମହେଶ୍ୱରଙ୍କ ଅଂଶରୁ ପରମ କ୍ରୋଧୀ ଦୁର୍ବାସା ଋଷି ଏବଂ ବ୍ରହ୍ମାଙ୍କ ଅଂଶରୁ ଚନ୍ଦ୍ରମା ଜନ୍ମ ଗ୍ରହଣ କଲେ । ଚନ୍ଦ୍ର ଥିଲେ ସବୁଠୁ ସୁନ୍ଦର । ସଂସାରରେ ତାଙ୍କଠାରୁ ବଳି ସୁନ୍ଦର ଅନ୍ୟ କେହି ନଥିଲେ । ଚନ୍ଦ୍ର ନିର୍ଜନ ବନକୁ ଯାଇ ତପସ୍ୟା କଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଲୋକ ପିତାମହ ବ୍ରହ୍ମା ଉପସ୍ଥିତ ହେଲେ ଏବଂ ବର ମାଗିବା ପାଇଁ କହିଲେ ।"

ଅଞ୍ଜଳିବଦ୍ଧ ହୋଇ ଚନ୍ଦ୍ର କହିଲେ—"ପ୍ରଭୋ ! ଆପଣ ଯଦି ମୋ ଉପରେ ପ୍ରସନ୍ନ ହୋଇଛନ୍ତି ତେବେ ମୁଁ ଅମୃତମୟ ଯେପରି ହେବି ଏବଂ ଯେପରି ସମଗ୍ର ସଂସାରରେ ମୁଁ ଅଦ୍ୱିତୀୟ ଐଶ୍ୱର୍ଯ୍ୟଶାଳୀ ହେବି ସେହି ବର ଦିଅନ୍ତୁ ।"

ପ୍ରସନ୍ନଚିତ୍ତ ହୋଇ ବ୍ରହ୍ମା କହିଲେ—"ହେ ସୋମ ! ଆଜିଠାରୁ ତୁମେ ଅମୃତମୟ ହେବ ଏବଂ ସର୍ବଦା ତୁମଠାରୁ ଅମୃତ ଝରିବ । ତୁମେ ସମସ୍ତ ଔଷଧି, ନକ୍ଷତ୍ର ଓ ବ୍ରାହ୍ମଣଙ୍କର ରାଜା ହେବ । ତୁମେ ଅତୁଳ ଐଶ୍ୱର୍ଯ୍ୟଶାଳୀ ହେବ । ରୂପ, ସୌନ୍ଦର୍ଯ୍ୟ ଓ ତେଜରେ ତୁମ ସହିତ ଅନ୍ୟ କୌଣସି ଦେବତା ତୁଳନୀୟ ହୋଇ-ପାରିବେ ନାହିଁ ।"

ମହର୍ଷି ସୂତ କହିବାକୁ ଲାଗିଲେ—"ମୁନିଗଣ ! ବ୍ରହ୍ମା ଚନ୍ଦ୍ରଙ୍କୁ ବରଦାନ କରି ଅନ୍ତର୍ଦ୍ଧାନ ହୋଇଗଲେ । ଏହାପରେ ଚନ୍ଦ୍ରଙ୍କ ଗର୍ବର ସୀମା ରହିଲା ନାହିଁ । ନିଜ ଐଶ୍ୱର୍ଯ୍ୟର ଅଭିମାନ ଦେଖାଇବାପାଇଁ ଚନ୍ଦ୍ର ରାଜସୂୟ ଯଜ୍ଞ ଆରମ୍ଭ କଲେ । ନିଜ ବାହୁବଳରେ ଯେ ସମସ୍ତ ଲୋକକୁ ଜୟ କରିଛି କେବଳ ସେହି ରାଜସୂୟ କରିବା ପାଇଁ ଯୋଗ୍ୟ ହୁଅନ୍ତି । ବ୍ରହ୍ମାଙ୍କ ବର ପ୍ରଭାବରୁ ସମସ୍ତେ ଚନ୍ଦ୍ରଙ୍କ ଯଜ୍ଞ-କାର୍ଯ୍ୟରେ ସାହାଯ୍ୟ କଲେ । ଦେବତା, ଋଷି, ଗନ୍ଧର୍ବ, ଯକ୍ଷ, ରାକ୍ଷସ ସମସ୍ତେ ଯଜ୍ଞରେ ଉପସ୍ଥିତ ହେଲେ । ଅତୁଳ ସମ୍ପତ୍ତି, ସର୍ବାଧିକ ପଦପ୍ରତିଷ୍ଠା, ଅଦ୍ୱିତୀୟ ରୂପ ଓ ସୌନ୍ଦର୍ଯ୍ୟ ପାଇ ଚନ୍ଦ୍ର ଗର୍ବରେ ଅନ୍ଧ ହୋଇଗଲେ । ସେ ଉନ୍ମତ୍ତ ପ୍ରାୟ ଆଚରଣ

କଲେ । ସ୍ତ୍ରୀମାନେ ତାଙ୍କର ସୌନ୍ଦର୍ଯ୍ୟରେ ମୋହିତ ହୋଇ ଯାଉଥିଲେ । ଏହି ସୁଯୋଗ ନେଇ ଚନ୍ଦ୍ର ପରସ୍ତ୍ରୀ ହରଣ କରିବାରେ ଲାଗିଗଲେ । ତାଙ୍କର କାମଲିପ୍ସା ଏପରିଭାବେ ବୃଦ୍ଧି ପାଇଲା ଯେ, ଦେବଗଣଙ୍କ ଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ସେ ବଳପୂର୍ବକ ହରଣ କରିନେଲେ । ଏହା ଜାଣି ବୃହସ୍ପତି ଖୁବ୍ ଦୁଃଖିତ ହେଲେ । ବୃହସ୍ପତି ଇନ୍ଦ୍ରାଦି ଦେବଗଣଙ୍କ ମାଧ୍ୟମରେ ବହୁଭାବରେ ଅନୁରୋଧ ଜଣାଇଲେ ମଧ୍ୟ ଚନ୍ଦ୍ର ତାରାଙ୍କୁ ଫେରାଇଲେ ନାହିଁ । କଥାଟା ଖୁବ୍ ବଡ଼ ଆକାର ଧାରଣ କଲା । ଦେବତାମାନେ ଗୁରୁଙ୍କ ସମ୍ମାନ ରକ୍ଷା ପାଇଁ ଚନ୍ଦ୍ରଙ୍କ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେଲେ । ଅସୁର ଗୁରୁ ଶୁକ୍ରାଚାର୍ଯ୍ୟଙ୍କର ବୃହସ୍ପତିଙ୍କ ପ୍ରତି ଅସୂୟା ଭାବ ଥିଲା । ସେ ଏଇ ସୁଯୋଗରେ ଅକାରଣ ଶତ୍ରୁତା ସାଧନ ପାଇଁ ଚନ୍ଦ୍ରଙ୍କୁ ସମର୍ଥନ କଲେ । ଶିବ ଅଙ୍ଗିରା ମୁନିଙ୍କଠାରୁ ବ୍ରହ୍ମବିଦ୍ୟା ପଢ଼ିଥିଲେ । ତେଣୁ ବୃହସ୍ପତି ତାଙ୍କର ଗୁରୁଭାଇ । ସେଥିପାଇଁ ଶିବ, ବୃହସ୍ପତିଙ୍କ ପକ୍ଷ ସମର୍ଥନ କଲେ । ଦୁଇପକ୍ଷର ଯୋଦ୍ଧାମାନେ ରଣଭୂମିରେ ଉପସ୍ଥିତ ହୋଇ ନିଜ ନିଜର ବଳବିକ୍ରମ ଦେଖାଇବାକୁ ଲାଗିଲେ ।

ଲୋକ ପିତାମହ ବ୍ରହ୍ମା ଦେଖିଲେ ଯେ, ଜଣେ ସ୍ତ୍ରୀଲୋକ ପାଇଁ ସାରା ସଂସାର ନଷ୍ଟ ହେବାକୁ ଯାଉଛି । ସେ ଆଉ ସ୍ଥିର ରହିପାରିଲେ ନାହିଁ । ସେ ଦୌଡ଼ ଦୌଡ଼ ସମର କ୍ଷେତ୍ରରେ ଆସି ପହଞ୍ଚିଲେ । ବୃହସ୍ପତିଙ୍କ ପିତା ଅଙ୍ଗିରା ଦେବାସୁର ସଂଗ୍ରାମକୁ ବନ୍ଦ କରିବା ପାଇଁ ବ୍ରହ୍ମାଙ୍କୁ ନିବେଦନ କଲେ । ବ୍ରହ୍ମାଙ୍କୁ ସେ କହିଲେ – "ତୁମେ କାହିଁକି ଏପରି ଗୋଳମାଳ ସୃଷ୍ଟି କରୁଛ । ତୁମେ ଅସୁରମାନଙ୍କୁ ନିପାତ କରିବାପାଇଁ ପ୍ରତିଜ୍ଞା କରିଛ ନା କ'ଣ ?"

ବୃହସ୍ପତି କହିଲେ—"ମହାଶୟ ! ମୋର ତ କିଛି ଅପରାଧ ନାହିଁ । ମୋତେ ଏବେ ତାରାକୁ ଫେରେଇ ଦେଲେ ମୁଁ ଯୁଦ୍ଧ କରିବି କାହିଁକି ।"

ଏହା ଶୁଣି ବ୍ରହ୍ମା ଚନ୍ଦ୍ରଙ୍କୁ ଡକାଇଲେ ଓ ତାଗିଦ୍ କରି କହିଲେ— "ବାବୁ ! ତୁମେ ଏତେବଡ଼ ଜଗତ୍ର ପୂଜ୍ୟ ହୋଇ ଏପରି ଅନ୍ୟାୟ କାମ କରୁଛ କାହିଁକି ? ତୁମେ ଏପରି ମନ୍ଦ ଆଚରଣ କରି ଲଜ୍ଜା ଅନୁଭବ କରୁନାହଁ ? ଏସବୁ ବଡ଼ ଅନ୍ୟାୟ । ବର୍ତ୍ତମାନ ଗୁରୁପତ୍ନୀ ତାରାଙ୍କୁ ଆଣି ଫେରାଇଦିଅ ।"

ଚନ୍ଦ୍ର ବର୍ତ୍ତମାନ କରିବେ କ'ଣ ? ବ୍ରହ୍ମା ତ ତାଙ୍କ ପିତା । ତାଙ୍କ ଆଦେଶ ଅମାନ୍ୟ କରିବା ସମ୍ଭବ ନୁହେଁ । ତେଣୁ ଚନ୍ଦ୍ର ବାଧ୍ୟ ହୋଇ ତାରାଙ୍କୁ ଆଣି ବୃହସ୍ପତିଙ୍କୁ ଫେରାଇଦେଲେ ।

ବୃହସ୍ପତି ଦେଖିଲେ ତାରା ଗର୍ଭବତୀ ହୋଇଛନ୍ତି । ତାଙ୍କ ମନରେ ଭୀଷଣ କ୍ରୋଧଜାତ ହେଲା । ସେ ତାଂରାକୁ ଗାଳି ଦେଇ କହିଲେ—"ତୁମର ଗର୍ଭବତୀ ହେବାର କାରଣ କିଏ ? ମୁଁ ଏବେ ଅଭିଶାପ ଦେଇ ତୁମକୁ ଭସ୍ମ କରିଦିଅନ୍ତି । କିନ୍ତୁ ମୁଁ ଜାଣିଛି ତୁମ ପ୍ରତି ବଳାତ୍କାର କରାଯାଇଛି । ତେଣୁ ତୁମକୁ କ୍ଷମା ଦେଲି । ମୁଁ ମନ୍ତ୍ର ଓ ଔଷଧଦ୍ୱାରା ତୁମକୁ ବିଶୁଦ୍ଧ କରିଦେବି । ମୁଁ ନିଜେ ତୁମଦ୍ୱାରା ସନ୍ତାନ ଉତ୍ପନ୍ନ କରିବାକୁ ଚାହୁଁଛି । ତୁମେ ଅନ୍ୟଦ୍ୱାରା ସ୍ଥାପିତ ଗର୍ଭକୁ ପରିତ୍ୟାଗ କର ।"

ତାରା ଭୟଭୀତା ହୋଇପଡ଼ିଥିଲେ । ସେ ମନ୍ତ୍ରବଳରେ ତେଜପୁଞ୍ଜ ଗର୍ଭକୁ ସେଇଠି ତ୍ୟାଗ କଲେ । ସମସ୍ତେ ଦେଖିଲେ ଏକ ତେଜସ୍ୱୀ ବାଳ ନିଜ ତେଜରେ ଚତୁର୍ଦ୍ଦିଗକୁ ଆଲୋକିତ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ଆଡ଼କୁ ଚାହୁଁଛି । ଗର୍ଭରୁ ହିଁ ତା'ର ଜ୍ଞାନୋଦୟ ଘଟିଥିଲା । ସେ ଥିଲା ଏକ ଅସାଧାରଣ ବାଳକ । ଏଡ଼େ ସୁନ୍ଦର ପିଲାକୁ ଦେଖି ବୃହସ୍ପତିଙ୍କ ହୃଦୟ ମଧ ତରଳିଗଲା । ସେ ଭାବିଲେ—ମୋ' ଦ୍ୱାରା ସ୍ଥାପିତ ଗର୍ଭ ନ ହେଲେ ମଧ ଏହି ବାଳକ ମୋର କ୍ଷେତ୍ରଜ ପୁତ୍ର । ତେଣୁ ସେ ମୁହଁ ଖୋଲି କହିଲେ—"ଏହି ବାଳକ ସମ୍ଭବତଃ ମୋର ବୀର୍ଯ୍ୟରୁ ଉତ୍ପନ୍ନ ହୋଇଛି । ମୁଁ ଏହାର ପ୍ରକୃତ ଅଧିକାରୀ ।"

କିନ୍ତୁ ଚନ୍ଦ୍ର ବୃହସ୍ପତିଙ୍କ ଯୁକ୍ତିକୁ ପ୍ରତ୍ୟାଖ୍ୟାନ କରି ପୁତ୍ରକୁ ନିଜର ପୁତ୍ର ବୋଲି ଦାବି କଲେ । ବର୍ତ୍ତମାନ ଯୁଦ୍ଧ ଆରମ୍ଭ ହେବାଭଳି ଅବସ୍ଥା ଆସିଲା ତାରା ପାଇଁ ନୁହେଁ ତାରାର ପୁତ୍ର ପାଇଁ । ତାରା ଲଜ୍ଜିତା ହୋଇ ଏକ ପାଖରେ ଠିଆ ହୋଇ ରହିଲେ । ସେ ଚନ୍ଦ୍ର କି ବୃହସ୍ପତି କାହାର ସପକ୍ଷରେ କିଛି କହିପାରିଲେ ନାହିଁ ।

ଏହା ଦେଖି ବାଳକ ହୃଦୟରେ କ୍ରୋଧ ଜାତ ହେଲା । ସେ ଭାବିଲା ଏତେ ବଡ଼ ସମାଜରେ ଏପରି ବିବାଦଦ୍ୱାରା ମୋତେ ଅପମାନିତ କରାଯାଉଛି । ସମସ୍ତେ ମୋତେ ଦେଖି ହସୁଛନ୍ତି । ତେଣୁ ଅଧିକ ସମୟ ନୀରବ ନ ରହି ସେ କ୍ରୋଧପୂର୍ଣ୍ଣ ସ୍ୱରରେ କହିଲା—"ମା, ଏବେ ଲଜ୍ଜା କରିବାର ସମୟ ନାହିଁ । ତୁ କହିଦେ, ସତରେ ମୋର ଜନକ କିଏ ?"

ବ୍ରହ୍ମା ଥିଲେ ସମସ୍ତଙ୍କଠାରୁ ବୟସ୍କ ବ୍ୟକ୍ତି । ସେ ଦେଖିଲେ ପ୍ରସଙ୍ଗ ବଡ଼ ଗୁରୁତର ହେବାକୁ ଯାଉଛି । ସମସ୍ତଙ୍କ ସମ୍ମୁଖରେ ତାରା କିଛି କହିବା ପାଇଁ ଲଜ୍ଜାବୋଧ କରୁଛନ୍ତି । ତେଣୁ ତାରାକୁ ସେ ଅନ୍ୟ ଏକ ସ୍ଥାନକୁ ଡାକିନେଇ ପଚାରିଲେ—"ଝିଅ ! ସତ କହ, ସେ ବାଳକର ପିତା କିଏ ?"

ତାରା କହିଲେ—"ବାଳକର ଅଧିକାରୀ ହେଉଛନ୍ତି ଚନ୍ଦ୍ର ।"

ବ୍ରହ୍ମା ତାହାହିଁ ଘୋଷଣା କଲେ । ବ୍ରହ୍ମାଙ୍କ ନିଷ୍ପତ୍ତି ସର୍ବମାନ୍ୟ ଥିଲା । ସେଥିରେ କୌଣସି ପ୍ରଶ୍ନ ଉଠାଇବାର ସମ୍ଭାବନା ନ ଥିଲା । ପୁତ୍ରକୁ ପାଇ ଚନ୍ଦ୍ର ଖୁସି ହେଲେ । ଚନ୍ଦ୍ର ସେଇଠି ସମବେତ ଦେବଗଣଙ୍କୁ ପ୍ରାର୍ଥନା କରି କହିଲେ—"ପ୍ରଭୋ ! ଏପରି ଏକ ସୁନ୍ଦର ଅବସରରେ ଆପଣମାନେ ଏହି ବାଳକର ନାମକରଣ କରନ୍ତୁ ।"

ପିତାମହ ବ୍ରହ୍ମା କିଛି ସମୟ ଚିନ୍ତା କରି କହିଲେ—"ବାଳକ ବଡ଼ ବୁଦ୍ଧିମାନ୍ । ଜନ୍ମହେବା ପରେ ପରେ ତା'ର ବୁଦ୍ଧିର ପ୍ରଖରତା ପ୍ରକାଶ ପାଇଛି । ତେଣୁ ତା'ର ନାମ ହେଉ ବୁଧ ।"

ଏହା ଶୁଣି ସମସ୍ତେ ସାଧୁ ସାଧୁ କହି ବ୍ରହ୍ମାଙ୍କ କଥାକୁ ସମର୍ଥନ କଲେ । ସେହିଦିନଠାରୁ ଚନ୍ଦ୍ର ପୁତ୍ର ବୁଧ ନାମରେ ପରିଚିତ ହେଲେ । ବୁଧ ଚନ୍ଦ୍ରଙ୍କଠାରୁ ଅନୁମତି ନେଇ ସୁମେରୁ ପର୍ବତ ନିକଟକୁ ତପସ୍ୟା କରିବା ପାଇଁ ଚାଲିଗଲେ । ସେଠାରେ ସେ ତପସ୍ୟା କରୁଥିବା ସମୟରେ ମହାରାଜ ସୁଦ୍ୟୁମ୍ନ ନାରୀ ରୂପେ ପରିବର୍ତ୍ତିତ ହୋଇ ତାଙ୍କ ଆଶ୍ରମ ପାଖରେ ପହଞ୍ଚିଲେ । ତାଙ୍କୁ ଦେଖି ବୁଧଙ୍କ ମନ ଚଞ୍ଚଳ ହେଲା । ସେ ତାଙ୍କୁ ବିବାହ କଲେ ଏବଂ ତାଙ୍କଠାରୁ ପୁରୁରବା ନାମକ ପୁତ୍ର ଜନ୍ମଗ୍ରହଣ କଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ପ୍ରସଙ୍ଗକ୍ରମେ ବୁଧଙ୍କ ଜନ୍ମକଥା କହିଲି । ଏବେ ମୁଁ ସୂର୍ଯ୍ୟବଂଶର କଥା କହୁଛି ଏବଂ ପରେ ଚନ୍ଦ୍ରବଂଶର କାହାଣୀ କହିବି ।

## ଛପ୍ପୟ

ଗର୍ଭବତୀ ଗୁରୁ ନାରୀ ଗର୍ଭ ନିଜ ତ୍ୟାଗେ୍ୟା ତବହୀ ।
ମେରୋ ମେରୋ କରେଁ ଚନ୍ଦ୍ରଗୁରୁ ସୁତ ହିତ ଜବହୀଁ ।।
ବାଳକ ଡାଂଟୀ ମାତୁ ସତ୍ୟ କୁ ଚେଂୟା ନ ଜତାଓ୍ୱେ ।
ତାରା ବଧି ତେଁ କହୀ ସୋମ ହୀ ସୁତ କୁଁ ପ ଓ୍ୱେ ।।
ନିଶାନାଥ କୁଁ ସୁତ ଦୟୋ, ବୁଧ ବ୍ରହ୍ମା ନେ ନାମ ଧରି ।
ଚନ୍ଦ୍ରବଂଶ ଥାପିତ କର୍‌ୟୋ, ଇଲା ସଙ୍ଗ ସମ୍ବନ୍ଧ କରି ।।

●

ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ-୭୫୩୦୦୧

ଧର୍ମ, ଅହିଂସା ଓ ନୈତିକତାର ଅବତାର

ଭଗବାନ୍ ବୁଦ୍ଧ

ହିନ୍ଦୁ ସଂସ୍କୃତିର ସୁଗନ୍ଧମୟ ପ୍ରକାଶ

ବୌଦ୍ଧ ଧର୍ମ ଓ ବୌଦ୍ଧ ସଂସ୍କୃତି

ବୌଦ୍ଧ ସଂସ୍କୃତିର ସର୍ବକାଳୀନ ସର୍ବାଦୃତ ନୀତିଗର୍ଭିତ ଗଳ୍ପ ଗ୍ରନ୍ଥ

**ବୌଦ୍ଧ ଜାତକ ଗଳ୍ପ**

ଏହି ମହାନ ଗ୍ରନ୍ଥର ଅନୁବାଦ କରିଛନ୍ତି
ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ । ପ୍ରଥମ ଓ ଦ୍ୱିତୀୟ ଭାଗ ପ୍ରକାଶିତ;
ପ୍ରତ୍ୟେକ ଭାଗର ମୂଲ୍ୟ ବନ୍ଧାଇ ପଞ୍ଚତିରିଶ ଟଙ୍କା ମାତ୍ର ।